# ସାହିତ୍ୟ ସଞ୍ଚୟନ

ସଂଗ୍ରାହକ
ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ, ବି. ଏ.

କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର

# ସୂଚୀ

ବିଷୟ | ଲେଖକ | ପୃଷ୍ଠା

# ସାହିତ୍ୟ ସଞ୍ଚୟନ

## ବୁଦ୍ଧପ୍ରୀତ ଓ ନୀଚପ୍ରୀତ

### ୬ ବ୍ରଜନାଥ ବଡ଼ଜେନା

କ୍ଷେତ୍ରପାଳ ନାମେ ଏକ ଭୂମିଜ ଥିଲା । ସେ ଅତ୍ୟନ୍ତ ବଳବନ୍ତ ଅଟଇ । ତା ଧନୁରେ ଗୁଣ ଦେଇ ଆମଞ୍ଚନ କରିବାକୁ ସଂସାରେ କେହି ନ ଥିଲେ । ସେ ଶର ବିନ୍ଧିଲେ ମତ୍ତହସ୍ତୀ ପ୍ରାଣ ହରଇ । ସେ କ୍ଷେତ୍ରପାଳ ଅନ୍ତ୍ରପୁର ନାମେ ପର୍ବତରେ ଘର କରି ଥାଏ । ସେ ବାଟରେ ଯିବା ଆସିବା ମହାଜନ-ମାନଙ୍କଠାରୁ ଧନ ରତ୍ନ ଲୁଟ କରି ନେଇ ରାଜା ସମାନ ସମ୍ପଦ କରି ଥାଇ । ପଞ୍ଚାଶ ଲୋକ ଯାଉଥିଲେ ମୃଗ ପଲରେ ସିଂହ ପଶି ମାରିଲା ପ୍ରାଏ ଲୁଟ କରଇ । ଏରୂପେ ଅନ୍ୟାୟ କରିବାରୁ ସେ ପଥ ନ ଚଳିଲା । ବାଣିଜ୍ୟ ବନ୍ଦ ହେବାରୁ ମହାଜନମାନେ ବଡ଼ ଦୁଃଖ ପାଇଲେ । କିନ୍ତୁ ଜିନିଷ ନ ମିଳିବା ଯୋଗୁଁ ପ୍ରାଣୀ-ମାନଙ୍କର କାର୍ଯ୍ୟ ଅଚଳ ହେଲା । ସେ ତ ମଧ୍ୟସ୍ଥାନ । ଯେଉଁ ଦିଗରୁ ଆଇଲେ ସେହି ବାଟରେ ମିଳିବ । ଆନ ଦିଗରେ ଆତଯାତ ହେବାକୁ ସଜ ନୁହଇ । ଏମନ୍ତେ ସେ ବାଟେ ଗତାଗତ ହେବା ମହାଜନମାନେ ବସି ବିଚାର କଲେ, ଚାଲ କ୍ଷେତ୍ରପାଳ ସଙ୍ଗେ ଆମ୍ଭେ ପ୍ରୀତି କରିବା, ନୋହିଲେ ଚଳି ପାରିବା ନାହିଁ । ଏମନ୍ତେ ଦଶବିଂଶ ମହାଜନେ ସଙ୍ଗ ହୋଇ ତାଠାକୁ ଯାଇ କହିଲେ,

ହେ କ୍ଷେତ୍ରପାଳ ! ଆମ୍ଭେ ତୁମ୍ଭଠାରେ ମିଳିଲୁ, ତୁମ୍ଭେ ଯଉଁରୂପେ ବୋଲିବ, ସେରୂପେ ଧନ ଦେବୁଁ, ଆଉ ବାଟରେ ଆମ୍ଭ ଧନ ଲୁଟ କରିବ ନାହିଁ । ଏରୂପେ ନାନା ଉପହାର ଦ୍ରବ୍ୟଦାନ ଦେଇ କ୍ଷେତ୍ରପାଳ ସଙ୍ଗେ ପ୍ରୀତି କଲେ; ସେ ଯଉଁରୂପେ କହଇ, ସେହି-ରୂପେ ଧନ ସାରଣା କରି ବାଣ୍ଟି ଦିଅନ୍ତି । ସେହି ଦିନୁଁ ସେ ବାଟରେ ନିର୍ଭୟରେ ଜଣେ ଦୁଇଜଣ ଆତଯାତ ହୋଇ କାରବାର କଲେ । କ୍ଷେତ୍ରପାଳଠାରେ ବେଳୁଁ ବେଳ ଅଧିକ ପ୍ରୀତି କରି ଅପୂର୍ବ ପଦାର୍ଥ ମିଳିଲେ ଆଗ ତାକୁ ଦେଇ ପଛେ ଖାଆନ୍ତି; ଉପରେ ଇଷ୍ଟବନ୍ଧୁ ପ୍ରାଏ ତାଠାରେ ଭାବନା ରଖି ଥାଆନ୍ତି । ଏହାକୁ ଦୁଷ୍ଟ ପ୍ରୀତି କହି । କଲେ ଅକାର୍ଯ୍ୟ ହୁଅଇ, ନ କଲେ ଚଳି ନ ପାରଇ; ଏ ଯେଣୁ ଦୁଷ୍ଟଲୋକ ଥିବାଠାରେ ବାସ ନ କରିବ । ଯେବେ ଅନ୍ତର ହୋଇ ନ ପାରିବ; ତେବେ ଉପର ମନରେ ପ୍ରୀତି ରଖିଥିବ; ଏ ଦୁଷ୍ଟପ୍ରୀତି ଅଟଇ ।

ଏବେ ମିତପ୍ରୀତି ଯେରୂପେ ତାହା କହିବା ଶୁଣ । ଚନ୍ଦ୍ର-ଜ୍ୟୋତି ନାମେ ଏକ ରାଜହଂସ ଥିଲା ସେ ଯେ ଏକ ଦିନକରେ ମାନସ ସରୋବରରୁ ଗଙ୍ଗାକୁ ଆସୁଥିଲା । ବାଟରେ ଆସନ୍ତେ ଠାଏଁ ଦେଖିଲା ଏକ ଦିବ୍ୟ ପୁଷ୍କରିଣୀ ଅଛି । ବିଚାରିଲା ଏଠାରେ ମୃଣାଳ ଖାଇବି । ଏମନ୍ତେ ସେ ଜଳରେ ପଶି ମୃଣାଳମାନ ଆହରଣ କରନ୍ତେ କୃଶପାଦ (*) ନାମେ ଏକ ବକ ସେ ହଂସକୁ ଦେଖି ବିଚାର କରୁଛି ଏହା ଦେହ ଏଡ଼େ ସ୍ଥୂଳ କାହିଁକି ହେଲା, ମୁଁ କାହିଁକି ଏଡେ ଦୁର୍ବଳ ହେଲି । ବର୍ଣ୍ଣରେ ତ ମୁଁ ଏହାଠାରୁ ଉଜ୍ଜ୍ୱଳ, ଚକ୍ଷୁହିଁ ତ ମୋହୋର ସୁନ୍ଦର; ପକ୍ଷମାନେ ଅତି ଉତ୍ତମ, କେବଳ,

(*) ତୃଣପାଦ ପାଠାନ୍ତର ।

ଥିଲ୍ଲା ବେଳକ ପାଦ ଏମାନେ ଟିକିଏ ଟିକିଏ ସରୁ ସରୁ ବୋଲି ଗ୍ଭଲିବା ବେଳକୁ ମାନୁ ନ ଥିବ । ମୋଟ୍ଟା ଯେବେ ଏହାପରି, ଦେହ ମୋଟ ହେବ, ତେବେ ଏହାଠାରୁଁ ପ୍ରତିସୁନ୍ଦର ହେବ, ବକମାନଙ୍କ ଉପରେ ରଜା ପ୍ରାଏ ଦଶିବ । ଏବେ ଏହା ସଙ୍ଗେ ପ୍ରୀତି କରି ଏ ଯାହା ଖାଉଛନ୍ତି ମୁଁ ତାହା ଖାଇବି । ଏମନ୍ତ ବିଗ୍ଭରି ଡାକିଲା, ଆହେ ମଗଲବର, ତୁମ୍ଭେ ଏବେଗେ ଆସି ଜଳକେଳି କର; ତେଣେ ବ୍ୟାଧ ମାନେ ଫାଶ ବସାଇ ଥାନ୍ତି, ପକ୍ଷୀମାନଙ୍କୁ ଧରି ପ୍ରାଣ ନଅନ୍ତି, ଏବେ ସ୍ୱତ୍ୱର ହୋଇ ଏଣିକି ଆସ । ଏହା ଶୁଣି ଚନ୍ଦ୍ରଜ୍ୟୋତି ହଂସ କାତର ହେଲା । ବିଗ୍ଭରିଲା, ଏ ବକ ବଡ଼ ଦୟାଳୁ, ପ୍ରାଣୀ ଉପକାରୀ, ବଡ଼ ସଙ୍କଟରୁ ରକ୍ଷା କଲେ, ଏବେ ମୁଁ ଏହାଙ୍କ ସଙ୍ଗେ ପ୍ରୀତି କରିବି । ଏମନ୍ତ ବିଗ୍ଭରି କୃଶପାଦ ବକ ନିକଟକୁ ଆସି କହିଲା, ହେ ମହାତ୍ମା ବକରଜ, ତୁମ୍ଭେ ବଡ଼ ଦୟାଳୁ, ମୋତେ ପ୍ରାଣଦାନ ଦେଲ, ଏସକାଶୁଁ ତୁମ୍ଭ ମୋ ପ୍ରୀତିପଣ ହେଲା, ଏଥିରେ ଅନ୍ୟ ନାହିଁ । ବକ କହିଲା, ଏ ତ ମୋର ଭାଗ୍ୟ କଥା, ମାତ୍ର ମୁଁ ଯାହା ପଗ୍ଭରିବି ତାହା ନିର୍ମଳ କରି କହିବ । ଏହା ଶୁଣି ହଂସ ବୋଇଲା, ପଗ୍ଭରିବା ହେଉ । ବକ କହିଲା, ଆପଣ କି ଦ୍ରବ୍ୟ ଖାଅ ମୋତେ ତାହା କହ, ମୁଁ ଖାଇବି । ହଂସ କହିଲା ଆମ୍ଭେ ଯାହା ଖାଉଁ, ଏଠାରେ ସେ ପଦାର୍ଥମାନ କାହୁଁ ମିଳିବ ? କେବଳ ସୁରଗଙ୍ଗାରେ ସେ ଥାଏ । ଯେବେ ତୁମେ ଖାଇବାକୁ ଇଚ୍ଛା କଲ, ତେବେ ମୁଁ ଆଣି ଦେବି । ଏମନ୍ତେ ବକ ସଙ୍ଗେ ପ୍ରୀତି କରି ହଂସ ମେଲାଣି ହୋଇ ସେଠାରୁ ଚଳିଲା । ଗଙ୍ଗାରେ ପ୍ରବେଶ ହୋଇ କିଛି ଦିନ ବିହାର (*) କରି ଭକ୍ଷ୍ୟ ପଦାର୍ଥମାନ ଥଣ୍ଟରେ ଧରି କୃଶପାଦ ବକଠାକୁ ଅଇଲା । ଦେଖିଲା, ସେହି ପୁଷ୍କରିଣୀରେ ବକ ମୀନ

(*) ବେହାର—ପାଠାନ୍ତର

ଜଗିଛୁ, ହଂସ ପାଇଁ ତା ପାଖେ ପ୍ରବେଶ ହୋଇ ମାନ୍ୟ କଲା । କହିଲା, ତୁମ୍ଭପାଇଁ ଭକ୍ଷ୍ୟ ପଦାର୍ଥମାନ ଆଣିଛୁ । ଏହା ପାନ କର । ଏମନ୍ତେ ପତ୍ରକୁଣ୍ଡି ତଳେ ଥୋଇ ଚହ୍ଲାଇ ଦେଲା—

ଏ ମୃଣାଳ ରସ ଏ ପୁଷ୍କର ରସ,
ଏ କୁମୁଦ କନ୍ଦ ଏ କମଳ ମକରନ୍ଦ,
ଏ କନକ ପଙ୍କ ଏ ମୋତି ରଜକ ।

ଏ ନାମମାନ ହଂସଠାରୁ ଶୁଣି ମହା ଆନନ୍ଦ ହେଲା କୃଣପାଦ ନାମେ ବକ ।

ଏ ଅମଲ୍ୟ ଅଙ୍କରେ ହୋଇ ସେ ରସମାନ ଖାଇଲା, ବିଚାରିଲା ଏପରି ମୁଁ କିଛି ଭୁଲ ହେବ । ଏରୂପେ ହଂସ ପାଞ୍ଚ ସାତଥର ଆହାର ଆଣି ଦେଲା, ବକ ଯେତେ ଖାଇଲା ପ୍ରାଏ ଖାଉଥାଏ । ହଂସକୁ ଖାଇ ଦେଖି କହେ, ଏହି ଖାଉଥାଏ ମୁଁ ତ ମୋଟ ହେଲନାହିଁ । ହେ ଜନମାନେ ! ବିଚାର କର ବକ କ ହଂସ ପ୍ରାଏ ହୁଅନ୍ତା ! ଯହୁଁ ଦେହ ନ ବଢ଼ିଲା ବିଚାରିଲା ଏ ହଂସ ପ୍ରୀତିରୁ ମୋର କ କାର୍ଯ୍ୟଅଛି । କେତେବେଳ ପଙ୍କ ପଥର ଖିଲଗୁଡ଼ାଏ ମାତ୍ର ଖାଇଲା । ଏତିକ ହେଲା ସେ ହଂସ ଅଳିଠ ଖାଇଲା, ଖୁଣ୍ଟା ରହିଲା । ବକମାନେ ଶୁଣିଲେ ନିନ୍ଦା କରିବେ, ଅଜାଣି କରି ରଖିବେ, ଏବେ ହଂସକୁ ମୁଁ ଅଲଠା ଖାଇ ଭଲେ ସିନା ହେବ । ଏମନ୍ତେ ହଂସ ଏକାନ୍ତ ବନରେ ପ୍ରବେଶ ହୋଇ ଥିଲେ ଆହାର ତଳେ ରଖି ବକକୁ କୋଳ କଲା । ବକ କହିଲା, ହେ ମିତ୍ରବର, ତୁମ୍ଭ ଦ୍ରବ୍ୟ ତ ମୁଁ ବହୁତ ଖାଇଲିଣି । ତୁମ୍ଭକୁ କିଛି ଖୁଆଇ ନ ପାରିଲି । ଏ ବଡ଼ ଅସୁନ୍ଦର ହୋଉଛି । ପ୍ରୀତି ଦୁଇଆଡ଼ୁ ହେଲେ ସିନା ସୁନ୍ଦର; ମୁଁ ଯାହା ଦେବି ତୁମ୍ଭେ ତାହା ପାନ କରିବ । ହଂସ ବୋଇଲା କାହିଁକି ନ ଖାଇବ, ତେବେ

ଦଅ । ବକ କହିଲା, ମୁଁ ଯାଇ ଆଣେ, ତୁମ୍ଭେ ଦଣ୍ଡେମାତ୍ର ବସ । ଏହା କହି ଯାଇଁ ଗାଡ଼ିଆଠାରୁ ପଣି ଗେଣ୍ଡା, ଶାମୁକା, ଭେକ, ଜୋକ, ମୀନ ଏରୂପେ ମରି ଚହ୍ନୁଁ ଖଣ୍ଡେ ଖଣ୍ଡେ ଖାଇ ଆଉ ଖଣ୍ଡମାନ ଥଣ୍ଟରେ ଧରି ହଂସ ପାଶେ ପ୍ରବେଶ ହେଲା । ଥଣ୍ଟରୁ କାଢ଼ି ତଳେ ଥୋଇ କହିଲା, ଏହା ତେବେ ପାନ କର । ହଂସ ସେ ଦୁର୍ଗନ୍ଧରୁ କହିଲା, ଏହା ପାନ କରି ନ ପାରିବ ପରା ! ବକ କହିଲା, ଏ ତ ଉତ୍ତମ ଦ୍ରବ୍ୟ, ମୋଠାରେ ଯେବେ ସୁଖ ଥିବ ତେବେ ଭୋଜନ କରିବ । ହଂସ ତ ମହା ସୁଜନ, ବକ କଥାରେ ବିଶ୍ୱାସ କରି ଚହ୍ନୁଁ ଖଣ୍ଡେ ଖଣ୍ଡେ ଗିଳି ଦିଅନ୍ତେ ପେଟରେ ପଡ଼ି ଦେହ ମଚ୍ଛି ହେଲା । ହଂସ ବଡ଼ ବିକଳ ହୋଇ ବାନ୍ତି କରି ପକାଇଲା । ମୀନ ଦୁର୍ଗନ୍ଧରେ ଅନ୍ତ ଘାଣ୍ଟି ହେଉଛି; ବକକୁ ବୋଇଲା ମୋ ପ୍ରାଣ ଗଲା, ଏ ବିକଳ ସହି ନୋହିବ । ସେଠାରୁ ବକ କହିଲା, ମୁଁ ତୁମ୍ଭ ଅଇଁଠା ଖାଇଲି, ଏ ବକକୁଳକୁ ବଡ଼ ଅସୁନ୍ଦର ହେଲା, ତୁମ୍ଭେ ମୋ ଅଇଁଠା ନ ଖାଇଲେ କିରୂପେ ଯାଆନ୍ତ ? ଏବେ ତୁମ୍ଭ ପ୍ରୀତିରୁଁ ମୋର କଷ୍ଟ ଫଳ ନାହିଁ । ବକ ଅଇଁଠା କେଡ଼େ ସୁଆଦ ଏହା ତ ଜାଣିଲୁ ! ବକମାନେ ଅଇଲେ ଖମ୍ପି ପକାଇବେଟି, ଏଠାରୁ ବେଗେ ପଳା । ଏହା ଶୁଣି ହଂସ କାତର ହୋଇ ପ୍ରାଣଭୟରେ ସେଠାରୁ ପଳାଇଲା ।

ଏରୂପେ ନୀଚ ଲୋକ ସଙ୍ଗେ ପ୍ରୀତି କଲେ ଉତ୍ତମ ଲୋକ ବିପଦରେ ପଡ଼ଇ ( * ) । ଏ ସକାଶୁଁ ନୀଚ ଲୋକ ସଙ୍ଗେ ପ୍ରୀତି ନ କରିବ ।

ଏହାକୁ ନୀଚପ୍ରୀତି କହି ।

---

(*) ନୀଚ ହୋଇ ଯାଇ—ପାଠାନ୍ତର ।

# ଉତ୍କଳର ଭୀଷଣ ଦୁର୍ଭିକ୍ଷ ( ୧୮୬୬ )

## ୬ ଫକୀରମୋହନ ସେନାପତି

ହାଲ୍ମ ସାହେବଙ୍କଠାରୁ ସହାନୁଭୂତି ପାଇ ସୁଖ, ଆନନ୍ଦ ଏବଂ ଉତ୍ସାହ ସହିତ ସ୍କୁଲର କାର୍ଯ୍ୟ କରୁଥାଏଁ । ସ୍କୁଲ ଛୁଟି ଉତ୍ତାରେ ଅନେକ ସମୟରେ ସାହିତ୍ୟ ବିଷୟରେ ତାଙ୍କ ସହିତ ଚର୍ଚ୍ଚା ହୁଏ । ମୁଁ ତାଙ୍କର ଅଧୀନସ୍ଥ କର୍ମଚାରୀ ହେଲେ ମଧ୍ୟ ଉକ୍ତ ମହାତ୍ମା ମୋ ସହିତ ପରମ ଆତ୍ମୀୟ ପରି ବ୍ୟବହାର କରୁଥିଲେ ।

ଏହି ସମୟରେ ଖ୍ରୀଷ୍ଟଧର୍ମାବଲମ୍ବୀ ସଂଖ୍ୟା ଦିନକୁଦିନ ବୃଦ୍ଧି ପାଉଥାଏ । ଏହି ବୃଦ୍ଧିର ଅନ୍ୟତମ ଅଥବା ବିଶେଷ କାରଣ ଉତ୍କଳର ଭୀଷଣ ଦୁର୍ଭିକ୍ଷ । ନ-ଅଙ୍କନରେ ( ସନ ୧୮୬୬ ମସୀହା ) ଏହି ଲୋମହର୍ଷଣ ବ୍ୟାପାର ଘଟିଥିଲା । ସେହି ଭୀଷଣ କାଣ୍ଡ ଆଜଯାଏଁ ଲୋକେ ଭୁଲି ପାରି ନାହାନ୍ତି । ସେହି ବର୍ଷ ମଧ୍ୟରେ ତିରିଶ ଲକ୍ଷ ଲୋକ ପ୍ରାଣତ୍ୟାଗ କରିଥିଲେ । ପ୍ରାୟ ଛପଣି ଲୋକଙ୍କ ବଂଶ ଉଚ୍ଛନ୍ନ ହୋଇ ଯାଇଛି । ଅନେକ ମୃତ, ଅବଶିଷ୍ଟ ଇତସ୍ତତଃ ହୋଇ ଯାଇଅଛନ୍ତି । ସେ ସମୟକୁ ମୋହର ବୟସ ୩୩ ବର୍ଷ । ବାଲେଶ୍ୱର ମିସନ୍ ସ୍କୁଲର ପ୍ରଧାନ ଶିକ୍ଷକ ଥିଲି । ଆଜକୁ ପଚିଶ ବର୍ଷ ଗତ ହୋଇଅଛି । ମାତ୍ର ସେ ସମୟର ଘଟଣାଗୁଡ଼ିକ ମୋ ହୃଦୟରେ ସ୍ପଷ୍ଟରୂପେ ଅଙ୍କିତ ହୋଇ ରହିଛି । ଭାଦ୍ରମାସ ଷୋଳ-ଦିନ ଖୁବ୍ ଟାଣ ଅସରାଏ ପାଣି ବରଷି ଛାଡ଼ିଗଲା । ଭାଦ୍ର ଉତ୍ତାରେ ଆଶିଣ ପ୍ରଥମରୁ ଲୋକେ ଜଳ ସକାଶେ କାତର ଭାବରେ ଆକାଶକୁ ଚାହିଁବାକୁ ଲାଗିଲେ । କାହାରି ମୁଖରୁ ଅନ୍ୟ କୌଣସି କଥା ଶୁଣିବାକୁ ନାହିଁ । କେବଳ—'ଜଳ ଜଳ ।' କାର୍ତ୍ତିକମାସ

ଆରମ୍ଭରୁ ଲୋକେ ଅତ୍ୟନ୍ତ ନିରାଶ ହୋଇପଡ଼ିଲେ । ଜଳ ହେଲେ ମଧ୍ୟ ଆଉ ରକ୍ଷା ନାହିଁ । ଧାନଗଛ ମରିବାକୁ ଲାଗିଲାଣି । ବାଲେଶ୍ୱର ଜିଲ୍ଲାରେ ଏକମାତ୍ର ଫସଲ ଧାନ । ସେହି ଫସଲ ଉପରେ ଲୋକଙ୍କର ଜୀବନ ନିର୍ଭର କରେ । ଧାନଗଛଗୁଡ଼ିକ ଶୁଖି କୁଟାପରି ହୋଇଗଲାଣି । କେତେକ ଧାନ ଅଧାଅଧି ବାହାରି କେତେକ ବା ସମ୍ପୂର୍ଣ୍ଣରୂପେ ବାହାରି ସାନ ସାନ ଧଳା ଧଳା ଅଣଖିଆ ଚଅଁର ପରି ଏପାଖ ସେପାଖ ଦୋହଲୁ ଥାଏ । ଲୋକେ ଗୋରୁ ଗାଈ ବିଲ ମଧ୍ୟରେ ଛାଡ଼ି ଦେଇଥାନ୍ତି । ମାତ୍ର ଗୋରୁଗୁଡ଼ାକ ଧାନଗଛ ସବୁ ଥରେ ଥରେ ଶୁଙ୍ଘି ଚାଲିଯାନ୍ତି, ଗଛ ଖାନ୍ତି ନାହିଁ ।

ମୋ ଘରଠାରୁ ଅର୍ଦ୍ଧ ମାଇଲ ଦକ୍ଷିଣକୁ ବାଲେଶ୍ୱର ସହରର ଲୋକ ବସତି ଶେଷ । ସେହିଠାରୁ ବଙ୍ଗୋପସାଗର ସୀମା ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଧାନ୍ୟକ୍ଷେତ୍ର । ମଧ୍ୟରେ ମଧ୍ୟରେ ସମୁଦ୍ର-ମଧ୍ୟ ଗତ ଦ୍ୱୀପ ସ୍ୱରୂପ ଗୋଟିଏ ଗୋଟିଏ ପୃଥକ୍ ପୃଥକ୍ ଗ୍ରାମ । ସେହି ସମୟରେ ପ୍ରତିଦିନ ପୂର୍ବାହ୍ଣ ନଅଘଣ୍ଟା ସମୟରେ ସ୍ନାନ କରି ଖଣ୍ଡିଏ କମ୍ବଳାସନ କାଖରେ ଯାକି, ଏକାକୀ ଧାନ ବିଲକୁ ଯାଏଁ । ବିଲ ମଧ୍ୟରେ ଆସନ ପାରି ବସି, ଈଶ୍ୱରଙ୍କଠାରେ ଲୋକମାନଙ୍କ ରକ୍ଷା ସକାଶେ ପ୍ରାର୍ଥନା କରେଁ ।

ଦିନ ମଜୁରିଆ ମୂଲିଆଗୁଡ଼ିକ କଂସା ପିତ୍ତଳ ଯାହା ଖଣ୍ଡେ ଖଣ୍ଡେ ଥିଲା; ବିକି ଦେଇ ଯେତେ ଦିନ ଚଳିଲେ । କାର୍ତ୍ତିକ ଶେଷ ସରିକି, ଯାହାକୁ ଯେଉଁ ବାଟ ଦିଶିଲା, ଘରୁ ବାହାରି ଚାଲିଗଲେ । ସ୍ତ୍ରୀ ପୁରୁଷ, ବାପ ପୁଅ କାହାରି ସଙ୍ଗତ କାହାରି ଭେଟ ନାହିଁ । ଦୁଆର ଦୁଆର ବୁଲି ବୁଲି ଭିକ ମାଗୁଥାନ୍ତି । କାହାଘରେ ଚାଉଳ ଅଛି ଯେ ଭିକ ଦେବ ।

ଚାଷୀଲୋକେ ଅବସ୍ଥାନୁସାରେ ପ୍ରଥମେ କଂସା, ପିତ୍ତଳ, ଗୋରୁଗାଈ, ସୁନାରୂପା ଯାହା ଘରେ ଯାହା ଥିଲା ବିକ ବିକ ମାଘ, ଫଗୁଣ ଯାଏ ଦାନ୍ତ କାମୁଡ଼ି, ଘରେ ପଡ଼ିରହିଲେ । ସେ ସମୟରେ ବଳଦ ଗୋଟାକର ଦାମ୍ ଧାନ ଗୌଣୀକଠାରୁ ପାଞ୍ଚ ଗୌଣୀ, ଗାଈଟାର ଦାମ୍ ଧାନ ଗୌଣୀଏ ଦୁଇ ଗୋଣୀ । ସୁନା ରୂପା ଓଜନ କରିବାକୁ ନିକ୍ତି ତୌଲ ନାହିଁ, ପୁଣି ନିକ୍ତି ଖୋଜିବାକୁ ତର ସହୁ ନାହିଁ । ଦରଦାମ୍ ବୁଝୁଛି କିଏ ? ଯେତେ ଗୌଣୀ ଧାନ ବା ଚାଉଳ ଦେବୁ—ଦେ । ଅନେକ ମଧ୍ୟବିତ୍ତ ଲୋକେ ଟଙ୍କା ଅଣ୍ଟାରେ ଖୋସି ଗାଁ ଗାଁ କରି ଧାନ ଚାଉଳ ଖୋଜି ବୁଲୁଥାନ୍ତି । ଧାନ ଢ଼ି ନାହିଁ; ଯାହାର ଯାହା ବା ଥିଲା, ଲୁଚାଇ ଦେଲେଣି ।

ଫଗୁଣ ସରିକ ଚାଷୀଲୋକ ଅଧିକାଂଶ, କାରିଗର ଶ୍ରେଣୀର ପ୍ରାୟ ସମସ୍ତେ ଛିନ୍ନଭିନ୍ନ ହୋଇ ଯେ ଯାହା ପାଇଲା ଚୋବାଉଥାଏ । ତେନ୍ତୁଳି ଗଛରେ କଅଁଳିଆ ପତ୍ର ବାହାରିବାରୁ ଗୋଟାଏ ଗୋଟାଏ ଗଛରେ ଦଶ କୋଡ଼ିଏ ଜଣ ଲେଖାଏଁ ଚଢ଼ି ମାଙ୍କଡ଼ ପରି ପତ୍ରସବୁ ଝିଣ୍ଟି ଝିଣ୍ଟି ଖାଉଥାନ୍ତି । ଯେଉଁ ଲୋକକୁ ଅନାଅ, ହାଡ଼ ଆଉ ଚମ, ଆଖି ଭିତରକୁ ପଶିଗଲାଣି । ଅନେକ ଭଦ୍ରଘର ଯୁବତୀ, ବୋହୂ, ଝିଅ ଦୁଇ ତିନି ହାତ ଲମ୍ବ ଶତ୍ଧେ ଗଣ୍ଠିଲା କନା ଖଣ୍ଡେ ଖଣ୍ଡେ ଅଣ୍ଟାରେ ଭିଡ଼ିଦେଇ ଦାଣ୍ଡେ ଦାଣ୍ଡେ ବୁଲୁଥାନ୍ତି । ସେମାନଙ୍କର ମାତୃଚିହ୍ନ ଚର୍ମ ଦୁଇଖଣ୍ଡ ଛାତିରେ ଝୁଲୁଥାଏ । କାହାରି କାହାରି କୋଳରେ ଅସ୍ଥିଚର୍ମମୟ ପିଲା ସେହି ଚର୍ମମୟ ସ୍ତନଟି ମୁହଁରେ ଦେଇ ଝୁଲି ପଡ଼ିଥାଏ । ଶିଶୁଟା ମୃତ କି ଜୀବିତ, ଚିହ୍ନି ହେଉ ନ ଥାଏ । ଚୈତ୍ରଠାରୁ ମୃତ୍ୟୁସଂଖ୍ୟା କ୍ରମଶଃ ବଢ଼ିବାକୁ ଲାଗିଲା । ଦାଣ୍ଡରେ, ଘାଟରେ, ବଣରେ, ପୋଖରୀ ତୁଠରେ ଯହିଁ ଦେଖିବ, ମଡ଼ା ପଡ଼ିରହିଥାନ୍ତି ।

ସେ ସମୟରେ ଉତ୍କଳର ପରମବନ୍ଧୁ ପରମ ସହାୟ ରେଭେନ୍‌ସା ସାହେବ ବୋଧହୁଏ ନୂତନ କମିଶନର ପଦରେ ନିଯୁକ୍ତ ହୋଇ ଆସିଥାନ୍ତି । ସେପ୍‌ଟେମ୍ବର କି ଅକ୍ଟୋବର ମାସରେ ଗବର୍ଣ୍ଣମେଣ୍ଟରୁ କମିଶନରଙ୍କ ପାଖକୁ ଚିଠି ଆସିଲା—ଅନାବୃଷ୍ଟି ହେତୁରୁ ଓଡ଼ିଶାରେ ଦୁର୍ଭିକ୍ଷ ଉପସ୍ଥିତ ହେବାର ଖୁବ୍ ସମ୍ଭାବନା । ପ୍ରଜାମାନଙ୍କ ରକ୍ଷା ନିମନ୍ତେ ଗବର୍ଣ୍ଣମେଣ୍ଟଙ୍କ ପକ୍ଷରୁ କୌଣସି ପ୍ରକାର ଉପାୟ ବିଧାନ କରାଯିବାର ଆବଶ୍ୟକ କି ନା ? ଯଦି ପ୍ରୟୋଜନ ହୁଏ,—କି ପ୍ରକାର ଉପାୟବିଧାନ କରାଯାଇ ପାରେ ? ଗବର୍ଣ୍ଣମେଣ୍ଟଙ୍କ ଚିଠିର ଉତ୍ତର ଦେବା ସକାଶେ କମିଶନର ସାହେବ କଚେରୀର ସମସ୍ତ ଅମଲାଙ୍କୁ ବସାଇ, ପରାମର୍ଶ କରିବାକୁ ଲାଗିଲେ । ସିରସ୍ତାଦାର ଦୁଇଜଣ କହିଲେ, "ଓଡ଼ିଶାରେ ଦୁର୍ଭିକ୍ଷ ପଡ଼ିବ—ପଡ଼ୁ; କିଛି ଚିନ୍ତା ନାହିଁ । ମଫସଲର ଜମିଦାର ମହାଜନଙ୍କ ଘରେ ଯଥେଷ୍ଟ ଧାନ ମହଯୁଦ୍ ଅଛି । ସେଥିରେ ବର୍ଷକ ଚଳି ଯାଇପାରେ ।" ସିରସ୍ତାଦାରମାନେ ଯେଉଁଠାରେ ଏକଥା କହି ସାରିଲେଣି, ସେମାନଙ୍କ ମନୋରଞ୍ଜନ ସକାଶେ ପେସ୍କାରମାନଙ୍କର ତ କିଛି ବଢ଼ାଇ କହିବା ଉଚିତ । କମିଶନରୀ ପେସ୍କାର କହିଲେ, "ଗୋପାଳପୁର ମୌଜାର ଜମିଦାର ଘରେ ଦଶହଟା ମରେଇରେ ପଚିଶ ହଜାର ଟଙ୍କାର ଧାନ ମହଜୁଦ୍ ଅଛି । ତାହାଛଡ଼ା ହଜାର ହଜାର ଟଙ୍କାର ଧାନ ଖଣି ପଡ଼ିଛି । ଖ୍ୟାମପୁର ଶାମସାହୁ ଘରୁ ନିକୁଛରେ ପଚାଶ ହଜାର ଟଙ୍କାର ଧାନ ବାହାରିବ । ଏହାଛଡ଼ା ଛୋଟବଡ଼ ମହାଜନମାନଙ୍କ ଘରେ ଧାନ ତ ପୂରି ରହିଛି । କେବଳ ଏମାନେ ମରେଇ ଫିଟାଇ ଦେଲେ, ଓଡ଼ିଶାକୁ ଦୁଇମାସ ସମ୍ଭାଳି ନେବେ ।" ପଲିଟିକେଲ ଇଲାକାର ପେସ୍କାରବାବୁ ପଚିଶ ହଜାର ଟଙ୍କାରୁ ଉଠି, ଲକ୍ଷଲକ୍ଷ ଟଙ୍କାର ଧାନ ଲୋକମାନଙ୍କ

ଘରେ ଥିବାର ହିସାବ ଦେଲେ । ଆଉ ଚଳ ଅମଲମାନେ ଯେଉଁ ହିସାବ ଦେଲେ, ସେଥିରୁ ଜଣାଗଲା; ଓଡ଼ିଶାରେ ଅସୀମ ଧାନ ମହଜୁଦ୍ ଅଛି, ସେଥିରେ ବର୍ଷକ ରକ୍ଷା ପାଇପାରେ । କମିଶନର ସାହେବ ଗବର୍ଣ୍ଣମେଣ୍ଟଙ୍କୁ ଲେଖିଲେ—ଓଡ଼ିଶାରେ ଦୁର୍ଭିକ୍ଷ ପଡ଼ିପାରେ; ମାତ୍ର ଦେଶମଧ୍ୟରେ ଅନେକ ଧାନ ମହଜୁଦ୍ ଅଛି; ସେଥିରେ ବର୍ଷକ ଚଳିପାରିବ ।

କମିଶନର ସାହେବ ବଡ଼ ଭୁଲ କଲେ । ଓଡ଼ିଶାରେ ପ୍ରକୃତ ଏତେ ଧାନ ମହଜୁଦ୍ ଅଛି କି ନାହିଁ, ପୁଣି ଯେଉଁମାନଙ୍କ ଘରେ ଧାନ ମହଜୁଦ୍ ଅଛି, ସାଧାରଣ ସଙ୍କଟ ସମୟରେ ସେମାନେ ସେହି ଧାନ ବିକ୍ରୟ ବା ବିତରଣ କରିବେ କି ନାହିଁ, କଥାଟା ଭଲରୂପେ ତଦନ୍ତ କରି ଗବର୍ଣ୍ଣମେଣ୍ଟଙ୍କୁ ଜଣାଇବା ଉଚିତ ଥିଲା । ମାତ୍ର ଉତ୍କଳରୁ ୩୦ ଲକ୍ଷ ପର୍ଯ୍ୟନ୍ତ ମହାପ୍ରାଣୀ ବିନାଶ ଯିବା ଏବଂ ଲଣ୍ଡଭଣ୍ଡ ହେବାର ବିଧିର ବିଧାନ । ଏ ସ୍ଥଳେ କମିଶନରଙ୍କୁ ସୁବୁଦ୍ଧି ଆସିବ କାହୁଁ ?

ଫଗୁଣ ଆରମ୍ଭଠାରୁ ଲୋକ ମରିବାର ଆରମ୍ଭ ହେଲା । ମୃତ୍ୟୁସଂଖ୍ୟା ଦିନକୁଦିନ ବଢ଼ିବାକୁ ଲାଗିଲା । ବାଟ, ଘାଟ, ଛକ, ପଡ଼ିଆ, ଅରଣ୍ୟ—ଯେଉଁଠାକୁ ଯାଅ, ସେଠାରେ ମଡ଼ା ପଡ଼ିଥିବାର ଦେଖିବ । କ୍ରମଶଃ ମୃତ-ଶରୀରରେ ଦେଶଟା ଯେମନ୍ତ ଛାଇ ହୋଇଥିଲା ।

ଚାଉଳର ଦର ହୋଇଗଲା, ଟଙ୍କାକୁ ଦଶ ସେର । କେବଳ ତିନି ଚାରିଦିନ ସକାଶେ ଟଙ୍କାକୁ ୩ ସେର ହୋଇଥିଲା; ତାହା ମଧ୍ୟ ସହର ମଧ୍ୟରେ ମିଳିଲା ନାହିଁ । ୩।୪ ଦିନ ଉତ୍ତାରେ ରେଙ୍ଗୁନରୁ ଚାଉଳ ଆସିବାରୁ ଯେଉଁ ଦରକୁ ସେହି ଦଶ ସେର ହୋଇଗଲା ।

ଦୁର୍ଭିକ୍ଷ ପୂର୍ବବର୍ଷ ଧାନ ଟଙ୍କାକୁ ବାଲେଶ୍ୱର ଓଜନରେ ପ୍ରାୟ ଦେଡ଼ଶ ସେର ଏବଂ ଚାଉଳ ଟଙ୍କାକୁ ଦେଡ଼ ମହଣ ଥିଲା । ସେହି ଚାଉଳ ଦୁର୍ଭିକ୍ଷ ବର୍ଷ ଟଙ୍କାକୁ ୧୦ ସେର ହିସାବରେ ବିକି ହେବାରୁ ଏପରି ଦୁର୍ଯୋଗ ଘଟିଲା । ସହର ମଧ୍ୟରେ ଚାଉଳ ଯାହା କିଛି ମିଳୁଥିଲା; କିନ୍ତୁ ମଫସଲରେ ଏକାବେଳକେ ଅପ୍ରାପ୍ୟ । ମଫସଲରେ ଯେଉଁ ଯେଉଁ ଲୋକଙ୍କ ଘରେ ଧାନ ଚାଉଳ ଥିଲା, ସେମାନେ ଲୁଚାଇ ଦେଲେ, ଅଧିକାଂଶ ଲୋକ ଘର ମଧ୍ୟରେ ଗାତ ଖୋଳି ପୋତି ପକାଇଲେ ।

ମାର୍ଚ୍ଚ ବା ଏପ୍ରେଲ ସରିକି କମିଶନର ସାହେବ ଓଡ଼ିଶାର ଉପସ୍ଥିତ ପ୍ରକୃତ ଅବସ୍ଥା ଜଣାଇ, ଯଥେଷ୍ଟ ପରିମାଣରେ ଧାନ ଚାଉଳ ପଠାଇ ଦେବା ସକାଶେ ଗବର୍ଣ୍ଣମେଣ୍ଟଙ୍କୁ ପ୍ରାର୍ଥନା କଲେ । ଗବର୍ଣ୍ଣମେଣ୍ଟ, ବୋଧକରୁଁ, କମିଶନର ସାହେବଙ୍କ ପୂର୍ବ ରିପୋର୍ଟ ସ୍ମରଣ କରି ଟେଲିଗ୍ରାମ କଲେ, "ତୁମ୍ଭେ ଚାଉଳ ପଠାଇବା ସକାଶେ ଟେଲିଗ୍ରାମ କରିଅଛ; ମାତ୍ର ଟେଲିଗ୍ରାମରେ ତ ଚାଉଳ ପଠାଯାଇ ନ ପାରେ ।"

ବର୍ତ୍ତମାନ କଲିକତାଠାରୁ ପୁରୀ ପର୍ଯ୍ୟନ୍ତ ଯେଉଁ ସୁନ୍ଦର ଟ୍ରଙ୍କ-ରୋଡ଼ ବା ଦାଣ୍ଡ ଦେଖୁଅଛ, ସେ ସମୟରେ ସେଥିର ଚିହ୍ନ ମାତ୍ର ଗୋହିରି ସ୍ୱରୂପ ଥିଲା । ତାହା ପୁଣି ଅରଣ୍ୟମୟ ଏବଂ ଚୋର ଡକାୟତରେ ପରିପୂର୍ଣ୍ଣ । ସୁତରାଂ ସ୍ଥଳପଥରେ ଧାନ ଚାଉଳ ଆସିବାର ଉପାୟ ନ ଥିଲା । ନିମକମାହାଲ ଉଠିଯାଇଥିବାରୁ ବାଲେଶ୍ୱର ସାମୁଦ୍ରିକ ଜାହାଜର ବଂଶ ବିଲୁପ୍ତ ହୋଇଥିଲା । ବାଲେଶ୍ୱରବାସୀ କଳ-ଜାହାଜର ନାମ ମାତ୍ର ଶୁଣିଥିଲେ, ସ୍ୱଚକ୍ଷୁରେ କେବେ ଦେଖି ନ ଥିଲେ । ତଥାପି ଗବର୍ଣ୍ଣମେଣ୍ଟ କଲିକତାରୁ ବଡ଼ ବଡ଼ ମନୋହର ଜାହାଜ ଭଡ଼ା କରି ରେଙ୍ଗୁନ ଓ ବଙ୍ଗଦେଶରୁ ଚାଉଳ

ପଠାଇବାକୁ ଲଗିଲେ । ସ୍ଥାନେ ସ୍ଥାନେ ଅନ୍ନ-ଛତ୍ର ସରକାର ତରଫରୁ ଫିଟାଗଲା ।

ଅନ୍ନ-ଛତ୍ରର ନାମ ମଫସଲରେ ପ୍ରଚାରିତ ହେବା ମାତ୍ରକେ ଅନ୍ନ-କ୍ଲିଷ୍ଟ କାଙ୍ଗାଳମାନେ ସହରକୁ ଧାଇଁଲେ । ପନ୍ଦର କୋଡ଼ିଏ ଦିନ ପୂର୍ବରୁ ଅନ୍ନ ସହିତ ସେମାନଙ୍କର ଭେଟ ନାହିଁ, କଅଁଳ ପତ୍ର ଏବଂ ଅଖାଦ୍ୟ ଫଳମୂଳ ଖାଇ ବଞ୍ଚି ରହିଥିଲେ । ଅନ୍ନାଶାରେ ସହରକୁ ଧାଇଁଲେ; ମାତ୍ର ଏତେ ଦୂରକୁ ଆସି ପାରିବେ କପରି ? ଦଶ ବାର ପଣ ଲୋକ ତ ବାଟରେ ମଲେ । ଯେଉଁମାନେ ଅନ୍ନ-ଛତ୍ର ଯାଏଁ ଆସି ପାରିଲେ, ସେମାନେ କେବଳ ବଖତେ ବଖତେ ଅନ୍ନ ଖାଇ କେହି ଝାଡ଼ା ବାନ୍ତିରେ, କେହି ଆମାଶୟରେ ମଲେ । ସେମାନଙ୍କ ପେଟ ତ ଶୁଖି ରହିଥିଲା । ଭାତ ଦେଖି ଯେ ଯେତେ ପାଇଲା ପେଟେ ପେଟେ ଖାଇ ପକାଇଲା । ହଜମ ଶକ୍ତି ବିଲୁପ୍ତ — ଏତେ ଭାତ କ'ଣ ପେଟ ସମ୍ଭାଳି ପାରିବ ?

ଶୁଷ୍କ-ପେଟ-କାଙ୍ଗାଳମାନଙ୍କ ଚିକିତ୍ସା ସକାଶେ ଡାକ୍ତର ଉପସ୍ଥିତ । ସରକାର ବସ୍ତା ବସ୍ତା ସାଗୁ-ଦାନା କଲିକତାରୁ ଅଣାଇ ଅନ୍ନଛତ୍ର ଗୋଦାମରେ ଜମା କରି ରଖିଲେ । କାଙ୍ଗାଳ ମାନଙ୍କୁ ପ୍ରଥମେ କେତେଦିନ ଯାଏ ସାଗୁଦାନା ଦିଆଯିବାର ବ୍ୟବସ୍ଥା କରାଗଲା । ମାତ୍ର କାହିଁରେ କିଛି ହେଲା ନାହିଁ । ପ୍ରାୟ ସବୁଗୁଡ଼ାକ ମଲେ ।

ଅନ୍ନ-ଛତ୍ରର ଚତୁର୍ଦ୍ଦିଗରେ ଏବଂ ସହରର ଅନ୍ୟାନ୍ୟ ସ୍ଥାନ ଦାଣ୍ଡରେ, ଘାଟରେ ଯେଉଁସବୁ ଲୋକ ମରିପଡ଼ି ରହିଥାନ୍ତି, ସକାଳୁ ମେହନ୍ତରମାନେ ସେମାନଙ୍କୁ ଉଠାଇ ଶଗଡ଼ରେ ପୂରାଇ ନଦୀକୁ ଫୋପାଡ଼ି ଦିଅନ୍ତି । ମାସେ କି ଦେଢ଼ମାସ ପର୍ଯ୍ୟନ୍ତ ମେହେନ୍ତର-ମାନେ ପ୍ରତିଦିନ ତିନି ଚାରିଖଣ୍ଡି ମଡ଼ା-ବୋଝାଇ ଶଗଡ଼ ନଦୀଆଡ଼କୁ ନେଇ ଯାଉଥିବାର ଲେଖକ ପ୍ରତ୍ୟକ୍ଷ ଦେଖିଅଛି ।

ସରକାର ଯେଉଁ ଗହମ ବିଦେଶରୁ ଅଣାଇଥିଲେ, ଅନ୍ନ-ଛତ୍ର ଖରଚ ବାଦେ ଟଙ୍କାକୁ ଦଶସେର ଦରରେ ସାଧାରଣରେ ବିକ୍ରୟ କରିବାର ମଧ୍ୟ ବ୍ୟବସ୍ଥା କରାଇଥିଲେ । ମାତ୍ର ଯାହାକୁ ଇଚ୍ଛା ତାହାକୁ କିମ୍ବା ଯେତେ ଇଚ୍ଛା ସେତେ ବିକ୍ରୟ କରିବାର ବ୍ୟବସ୍ଥା ନ ଥିଲା । ରିଲିଫ୍‌କମିଟି-ନିଯୁକ୍ତ ମେମ୍ବରମାନେ ଲୋକ ଦେଖି ସେରେଠାରୁ ଟଙ୍କାକ ପର୍ଯ୍ୟନ୍ତ ଗହମ ଦେବାର ଟିକଟ ଦେଲେ, ସେହି ଟିକଟ ଦେଖାଇ ଲୋକେ ଗୋଦାମରୁ ଗହମ ନେଉଥିଲେ ।

ପୃଥିବୀରେ କିଛି ଚିରସ୍ଥାୟୀ ନୁହେ ! ଦୁର୍ଭିକ୍ଷ ତ ଚାଲିଗଲା ! ଦୁର୍ଭିକ୍ଷ ପରବର୍ତ୍ତେ କେତେଗୁଡ଼ାଏ ବାଳକ ବାଳିକା ଏବଂ ମନୁଷ୍ୟ ଦାଣ୍ଡେ ଦାଣ୍ଡେ ବୁଲୁଥିଲେ । ସେମାନେ ଛତ୍ରଖିଆ ବୋଲି ହିନ୍ଦୁ ସମାଜ ସେମାନଙ୍କୁ ଛାଡ଼ିଦେଲା । ମାତ୍ର ଖ୍ରୀଷ୍ଟୀୟ ମିସନରିମାନେ ସେମାନଙ୍କୁ ଆଦର ପୂର୍ବକ କୋଳକୁ ଟେକି ନେଇ ପୁତ୍ର ପରି ପ୍ରତିପାଳନ କଲେ ଏବଂ ଶିକ୍ଷିତ ଓ ଉପଯୁକ୍ତ କରାଇବାକୁ ଲାଗିଲେ । ଏହି ଅନ୍ୟାୟ ବର୍ଜ୍ଜନ ପାଇଁ ହିନ୍ଦୁଧର୍ମ ଦାୟୀ ନୁହେ କି ? କାରଣ, ଦୁରବସ୍ଥାରେ ପଡ଼ି ପ୍ରାଣରକ୍ଷା ନିମନ୍ତେ ଅତି ନୀଚ ଅସ୍ପୃଶ୍ୟ-ଜାତି ସ୍ପୃଷ୍ଟ ଅନ୍ନ-ଗ୍ରହଣ କରିବା ଦୂଷଣୀୟ ନୁହେ ବୋଲି, ହିନ୍ଦୁ ପୁରାଣ ଶାସ୍ତ୍ରମାନଙ୍କରେ ସ୍ପଷ୍ଟ ଉଲ୍ଲେଖ ଅଛି । ରାଜର୍ଷି-ବିଶ୍ୱାମିତ୍ର ଏକଦା ପ୍ରାଣରକ୍ଷା ନିମନ୍ତେ ଚଣ୍ଡାଳଦ୍ୱାରା ପାକ ହୋଇଥିବା କୁକ୍କୁର ମାଂସ ଭକ୍ଷଣ କରି ପୁନର୍ବାର ମହର୍ଷିମଣ୍ଡଳରେ ସ୍ଥାନ ଲାଭ କରିଥିବା ବିଷୟ ମହାଭାରତରେ ଉଲ୍ଲେଖ ଅଛି । ଅବିବେକୀ ସମାଜ ଏହି ବର୍ଜ୍ଜନ ପାଇଁ ଦାୟୀ ଅଟେ ।

---

# ସାହିତ୍ୟଚର୍ଚ୍ଚା

## ୬ ବିଶ୍ୱନାଥ କର

ଜଗତରେ ସମସ୍ତେ କାହିଁକି ସୁକବି ହୁଅନ୍ତି ନାହିଁ ? ଏ ପ୍ରଶ୍ନର ଉତ୍ତର ଅତି ସହଜ—ସମସ୍ତଙ୍କର ସେ ଶକ୍ତି ନ ଥାଏ । ବାସ୍ତବିକ ଉଚ୍ଚ ଶ୍ରେଣୀର କାବ୍ୟପ୍ରଣୟନ ବିଶେଷ ଶକ୍ତିସାପେକ୍ଷ । ସେ ଶକ୍ତି ଈଶ୍ୱରଦତ୍ତ, ମନୁଷ୍ୟର ସ୍ୱୋପାର୍ଜିତ ନୁହେ । ବିଧାତାଙ୍କର ଯେଉଁ ବିଧାନରେ ଖ୍ରୀଷ୍ଟ, ବୁଦ୍ଧ, ଚୈତନ୍ୟଙ୍କର ଜନ୍ମ, ସେହି ବିଧାନରେ କାଳିଦାସ, ଭବଭୂତି, ସେକ୍‌ସପିୟର, ମିଲ୍‌ଟନଙ୍କର ଆବିର୍ଭାବ । ବିଧାତା ବିଶେଷ ଶକ୍ତି ପ୍ରଦାନ କରି ବିଶେଷ ବିଶେଷ ମନୁଷ୍ୟଙ୍କୁ ଜନ୍ମ ଦିଅନ୍ତି, ଏ କଥା ସ୍ୱୀକାର କରିବାକୁ ଅନେକେ ରାଜି ନୁହନ୍ତି । ସେମାନଙ୍କ ମତରେ ବିଶେଷ ବିଶେଷ ଅବସ୍ଥାରେ ପଡ଼ିଲେ ମନୁଷ୍ୟ ନିଜ ଚେଷ୍ଟାଦ୍ୱାରା ମହତ୍ତ୍ୱ ଲାଭ କରେ । ମାନବ-ଜୀବନରେ ଅବସ୍ଥାର ପ୍ରଭାବକୁ ଆମ୍ଭେମାନେ ଉଡ଼ାଇ ଦେଉ ନାହୁଁ; ବରଂ ଅବସ୍ଥାକୁ ମହାପୁରୁଷମାନଙ୍କ ଅଭ୍ୟୁତ୍‌ଥାନର ପୂର୍ବବର୍ତ୍ତୀ କାରଣ ବୋଲି ବିଶ୍ୱାସ କରୁଁ; କିନ୍ତୁ ମହାପୁରୁଷମାନେ ହସ୍ତପ୍ରସାରଣ କରି ଅବସ୍ଥା-ବୃକ୍ଷରୁ ଫଳ ତୋଳି ଆଣି ମହାପୁରୁଷ ହୁଅନ୍ତି ନାହିଁ । ତାହାହେଲେ ଯେ ଇଚ୍ଛା ସେ ମହାପୁରୁଷ ହୋଇ-ଥାଆନ୍ତା । ଅନ୍ତତଃ ଏହା ସ୍ୱୀକାର କରିବାକୁ ହେବ ଯେ, ସେ ଫଳ ତୋଳିବାର ଶକ୍ତି ବ୍ୟକ୍ତିବିଶେଷଙ୍କୁ ପ୍ରଦତ୍ତ ହୋଇଥାଏ । ଉପାର୍ଜିତ ଜ୍ଞାନ ଓ ପ୍ରତିଭା ଏ ଦୁହେଁ ସ୍ୱତନ୍ତ୍ର ପଦାର୍ଥ । ଜ୍ଞାନ ସାଧାରଣ ଭାବରେ ସମସ୍ତେ ଉପାର୍ଜନ କରି ପାରନ୍ତି; କିନ୍ତୁ ପ୍ରତିଭା ଉପାର୍ଜନ କରିବାର ଶକ୍ତି କାହାରି ନାହିଁ । ପ୍ରତିକୂଳ ଅବସ୍ଥା

ସାଧାରଣ ମନୁଷ୍ୟକୁ ଶକ୍ତିହୀନ କରି ଦିଏ, କିନ୍ତୁ ପ୍ରତିଭା ଯେତେ ସଂଘର୍ଷଣ ପାଏ, ସେତେ ଅଧିକ ଫୁଟି ଉଠେ । ଯେଉଁମାନେ "ଅବସ୍ଥା ଅବସ୍ଥା" ବୋଲି ଦିବାରାତି ବିକଳ ହୁଅନ୍ତି, ସେମାନେ ନିତାନ୍ତ କ୍ଷୁଦ୍ର ମନୁଷ୍ୟ । ଦାନ୍ତେ ଏବଂ ସେକ୍‌ସପିୟର ଇଉରୋପର ଦୁଇଜଣ ଶ୍ରେଷ୍ଠ କବି, ଏମାନେ କି ଅନୁକୂଳ ଅବସ୍ଥାରେ ପଡ଼ି କବି ହୋଇଥିଲେ ? ପୃଥିବୀର ଇତିହାସରେ ସକଳ ବିଭାଗରେ ଏପରି ଦୃଷ୍ଟାନ୍ତ ବହୁଳ ଦୃଷ୍ଟ ହୁଏ ।

ମାନବଜାତି ମଧ୍ୟରେ କବି ସ୍ପର୍ଶମଣି, ସେ ଯହିଁରେ ହାତ ଦେବେ, ସେ ସୁନା ହେବ । ଆମ୍ଭେମାନେ ଯାହାକୁ ମାକଡ଼ା ପଥର ବୋଲି ଗୋଡ଼ରେ ଆଡ଼େଇ ଦେଉଁ, କବି ଯେବେ ସେଥିରେ ଥରେ ଅଙ୍ଗୁଳି ସ୍ପର୍ଶ କରନ୍ତି, ତେବେ ସେହି ପୁଣି ଆମ୍ଭମାନଙ୍କ ନିକଟରେ ମରକତମଣି ହୋଇ ଉପସ୍ଥିତ ହୁଏ । ଆମ୍ଭେମାନେ ଦେଖି ଅବାକ୍ ହେଉଁ, ଯେ ଏହା କରି ପାରେ, ସେହି ଉଚ୍ଚ ଶ୍ରେଣୀର କବି । କବି ଏ ସଂସାରରେ ଜନ୍ମନ୍ତି ସୌନ୍ଦର୍ଯ୍ୟ ଦେଖିବାକୁ ଏବଂ ତାହା ଜଗତକୁ ଦେଖାଇବାକୁ । ସାଧାରଣ ମନୁଷ୍ୟର ଚକ୍ଷୁରେ ଯେଉଁ ପଦାର୍ଥର କିଛିମାତ୍ର ସୌନ୍ଦର୍ଯ୍ୟ ନାହିଁ, କବିର ଚକ୍ଷୁ ସେଠାରେ ଅତୁଳ ଶୋଭା ସନ୍ଦର୍ଶନ କରି ବିମୋହିତ ହୁଏ । ପୁଣି ଜଗତକୁ ତାହା ନ ଦେଖାଇଲେ ତାହାର ପ୍ରାଣ ତୃପ୍ତ ହୁଏ ନାହିଁ । ଆଉ ଗୋଟିଏ କଥା ଏହି ଯେ କବିର ଦୃଷ୍ଟି ଅନ୍ତର-ଭେଦୀ । ଆମ୍ଭମାନଙ୍କ ଚକ୍ଷୁ ଯେଉଁଠାରେ ଜଡ଼ ଦେଖେ କବି ସେଠାରେ ଚୈତନ୍ୟ ଦେଖନ୍ତି । ଆମ୍ଭେମାନେ ପଦାର୍ଥର ବହିର୍ଭାଗ ଦେଖୁଁ, କବି ବହିରାବରଣ ଭେଦ କରି ନିଗୁଢ଼ତମ ପ୍ରଦେଶର ସମ୍ବାଦ ଆଣି ଲୋକଙ୍କ ନିକଟରେ ପ୍ରକାଶ କରନ୍ତି । ଜଣେ ସୁପ୍ରସିଦ୍ଧ ଲେଖକ କହିଅଛନ୍ତି,—"ମନୁଷ୍ୟର କୌଣସି ଚିନ୍ତା ବା କୌଣସି ଭାବ ଲୁଚି

ଉଦ୍ଭାପରେ ନାହିଁ, ତାହାର ଆକାର ପ୍ରକାର ସମସ୍ତ ପ୍ରକାଶ କର ହିଏ ।" ଏ କଥା କବି ପକ୍ଷରେ ସମ୍ପୂର୍ଣ୍ଣ ସତ୍ୟ ବୋଲି ବୋଧହୁଏ । ଆମ୍ଭେମାନେ କେବଳ ବର୍ତ୍ତମାନ ରାଜ୍ୟର କେତୋଟି ସ୍ଥୂଳ ସ୍ଥୂଳ କଥା ଦେଖୁଁ; କିନ୍ତୁ କବି ଅଦୃଷ୍ଟ ଅତୀତ ଓ ଭବିଷ୍ୟତର ଗର୍ଭରେ ପ୍ରବେଶ କରି ସେ ପ୍ରଦେଶର ସମ୍ବାଦ ଜନସମାଜରେ ପ୍ରକାଶ କରନ୍ତି । ଆମ୍ଭମାନଙ୍କୁ ବୋଧ ହେଉଅଛି, ଦେବତା ଏବଂ ରାକ୍ଷସମାନେ ସମୁଦ୍ର ମନ୍ଥନ କରିବା ପୂର୍ବରୁ କୌଣସି କବି ସେ ଲୁକ୍କାୟିତ ରତ୍ନରାଜିର ସମ୍ବାଦ ସେମାନଙ୍କ ନିକଟରେ ପ୍ରକାଶ କରିଥିଲେ । ପଣ୍ଡିତବର କାର୍ଲାଇଲ୍ (Carlyle) କବିଙ୍କୁ ଧର୍ମ-ପ୍ରବର୍ତ୍ତକ (Prophet) ସଙ୍ଗେ ତୁଳନା କରିଅଛନ୍ତି, ଉଭୟେ ଈଶ୍ୱରଙ୍କ ମହିମା ପ୍ରଚାରକ ।

ଏ ତ ଗଲା ଉଚ୍ଚ ଶ୍ରେଣୀର କବିମାନଙ୍କ କଥା । ଏପରି କବିମାନଙ୍କ ସଂଖ୍ୟା ପୃଥିବୀରେ ଅଳ୍ପ । ସମୟବିଶେଷରେ ଜଣେ ଅଧେ ଜନ୍ମି ଜଗତକୁ ଆଲୋକ ପ୍ରଦାନ କରନ୍ତି । ଦ୍ୱିତୀୟ ଶ୍ରେଣୀର କବିମାନେ ଉଚ୍ଚାଙ୍ଗର କାବ୍ୟ ଲେଖି ପାରନ୍ତି । ଏମାନଙ୍କର ଉଦ୍ଭାବନୀ ଶକ୍ତି ମଧ୍ୟ ଅଳ୍ପ ନୁହେ; କିନ୍ତୁ ସୂକ୍ଷ୍ମରୂପେ ଆଲୋଚନା କଲେ ଏହି ଦୁଇ ଶ୍ରେଣୀ ମଧ୍ୟରେ ଗୋଟିଏ ବିଶେଷ ପ୍ରଭେଦ ଲକ୍ଷିତ ହେବ । ପ୍ରଥମ ଶ୍ରେଣୀର କବିମାନଙ୍କ ଜୀବନ ଓ କାବ୍ୟ ମଧ୍ୟରେ ସାମଞ୍ଜସ୍ୟ ଥାଏ । ସେମାନେ କବିତା ଲେଖନ୍ତି ସୌନ୍ଦର୍ଯ୍ୟ ବିକାଶ ନିମନ୍ତେ, ଅଥଚ ତାହାର ଭିତରୁ ଅନନ୍ତ ଜୀବନସ୍ରୋତ ପ୍ରବାହିତ ହେଉଥାଏ, ସତ୍ୟର ଉଜ୍ଜ୍ୱଳ ଜ୍ୟୋତି ବିକୀର୍ଣ୍ଣ ହେଉଥାଏ । ସେମାନଙ୍କ କବିତା ହୃଦୟକୁ ବିମୋହିତ କରେ, ଅଥଚ ଜୀବନର ତନ୍ତ୍ରୀକୁ ସ୍ପର୍ଶ କରେ । ଦ୍ୱିତୀୟ ଶ୍ରେଣୀର କବିମାନେ କେବଳ ସୌନ୍ଦର୍ଯ୍ୟସୃଷ୍ଟିରେ ବ୍ୟସ୍ତ । ସେଥି ନିମନ୍ତେ ଯେବେ ବାଜେ

କଥାର ପ୍ରୟୋଜନ ହୁଏ, ତେବେ ସେମାନେ ତାହାର ଆଶ୍ରୟ ଗ୍ରହଣ କରିବାକୁ କୁଣ୍ଠିତ ନୁହନ୍ତି

ଆଉ ଏକ ଶ୍ରେଣୀର କବି ଦେଖାଯାନ୍ତି । ସେମାନଙ୍କ ମଧ୍ୟରେ ଏ ଦୁଇ ଶ୍ରେଣୀର ଭାବ ମିଶାମିଶି ହୋଇଥାଏ । କଳ୍ପନା ଓ ଶିକ୍ଷା ଏ ଦୁହିଁଙ୍କ ସମ୍ମିଶ୍ରଣରୁ ଏମାନଙ୍କ କବିତା ପ୍ରସୂତ ହୁଏ । ଏ ତିନି ଶ୍ରେଣୀର କବି ବିଶେଷ ପ୍ରଭେଦସତ୍ତ୍ୱେ ପ୍ରକୃତ କବିନାମର ଯୋଗ୍ୟ । ପରିମାଣ ଅନୁସାରେ ମୌଳିକତା ପ୍ରତ୍ୟେକ ଶ୍ରେଣୀ ମଧ୍ୟରୁ ଦୃଷ୍ଟ ହୁଏ; କିନ୍ତୁ ପୃଥିବୀର ସକଳ ଦେଶରେ ତୃତୀୟ ଶ୍ରେଣୀର କବିସଂଖ୍ୟା ଅଧିକ । ସେ ଯାହାହେଉ ପ୍ରତ୍ୟେକ ମନୁଷ୍ୟର ପ୍ରାଣରେ ଅଳ୍ପାଧିକ ପରିମାଣରେ କବିଶକ୍ତି ନିହିତ ଅଛି । ପ୍ରତ୍ୟେକ ମନୁଷ୍ୟ ଯେ ସୌନ୍ଦର୍ଯ୍ୟ ଉପଲବ୍ଧି କରିପାରେ, ଏହାହିଁ ତାହାର ଜ୍ୱଳନ୍ତ ପ୍ରମାଣ । ଘଷା ମଜା କଲେ ସବୁ ପଦାର୍ଥ ଉଜ୍ଜ୍ୱଳ ହୁଏ । ସାଧାରଣ ଶ୍ରେଣୀ ମଧ୍ୟରେ କାହାରି କାହାରି ଏପରି ଶକ୍ତି ଥାଏ ଯେ ସେମାନେ ବିଶେଷ ଯତ୍ନ କଲେ ସୁନ୍ଦର ସୁନ୍ଦର କବିତା ଲେଖିବାକୁ ସମର୍ଥ ହୋଇ ପାରନ୍ତି । କିନ୍ତୁ ଏହି ଶ୍ରେଣୀର କବି-ମାନଙ୍କ ମଧ୍ୟରେ ଅନୁକରଣ ଭାଗ ବେଶି । ତାହା ହେଲେ ସୁଦ୍ଧା ଏମାନେ କବି ଆଖ୍ୟାର ଯୋଗ୍ୟ । କିନ୍ତୁ ଅନେକଙ୍କ ପକ୍ଷରେ କବିତା ଲେଖିବାର ପ୍ରୟାସ ବିଡ଼ମ୍ବନା ମାତ୍ର । ଆମ୍ଭେମାନେ ବର୍ତ୍ତମାନ ଦେଖୁଅଛୁଁ ଯେ, ଉତ୍କଳଭୂମିରେ ଏହିପରି ଅନେକ କବି ହେବାକୁ ଲାଳାୟିତ । କବି-ଆଖ୍ୟା ସ୍ପୃହଣୀୟ; କିନ୍ତୁ ସୁଲଭ ନୁହେ । କବିର ଦୃଷ୍ଟିଶକ୍ତି ନ ପାଇଲେ କି ମନୁଷ୍ୟ କେବଳ କେତେଗୁଡ଼ାଏ ଶବ୍ଦଯୋଜନା କରି ମିତାକ୍ଷର ମିଳାଇ କବି ହୋଇ-ପାରେ । କବିର ପ୍ରଧାନ ଅସ୍ତ୍ର ବର୍ଣ୍ଣନ, ଯେ ଯେତେ ପରିମାଣରେ

ଦେଖି ପାରେ, ସେ ସେତିକ ପରିମାଣରେ କବି । ଲୋକେ କହନ୍ତି, "ମା ସାରଳେ; ମୋ କଣ୍ଠରେ ବସ; ମୁଁ କବିତା ଗାଇବି ।" ଆମ୍ଭେମାନେ କହୁଁ, କଣ୍ଠରେ ବସିଲେ ହେବ ନାହିଁ, ଚକ୍ଷୁରେ ବସିବା ଆବଶ୍ୟକ ।

କବିତା ସମ୍ବନ୍ଧରେ ଯାହା ସତ୍ୟ; ସର୍ବପ୍ରକାର ସାହିତ୍ୟ ସମ୍ବନ୍ଧରେ ସେ କଥା ସତ୍ୟ । ଅନୁଭବଶକ୍ତି ବିନା କେହି କୌଣସି ବିଷୟ ସମୀଚୀନରୂପେ ବ୍ୟକ୍ତ କରି ନ ପାରେ । ବିନା ସାଧନାରେ ସମସ୍ତେ ଗ୍ରନ୍ଥକାର ହେବାକୁ ପ୍ରୟାସୀ । ନାନା ବିଷୟରେ ଦେଖା-ଯାଉଅଛି, ଗୋଟାକେତେ ଅଭ୍ୟସ୍ତ କଥା ବ୍ୟବହାର କରି ଲୋକେ ଲେଖକ ନାମରେ ପରିଚିତ ହେବାକୁ ବସିଅଛନ୍ତି । ଉପଯୁକ୍ତ ଚିନ୍ତା ନାହିଁ, ପ୍ରଗାଢ଼ ପରିଶ୍ରମ ନାହିଁ, ଏଥିରେ ଲେଖା ଅଙ୍ଗଲଗ୍ନ ନ ହେବ କାହିଁକି ? ଭାଷାର ଅପବ୍ୟବହାର, ଭାବର ଅପବ୍ୟବହାର ! ଲେଖକର କାର୍ଯ୍ୟ କିପରି ଦାୟିତ୍ୱପୂର୍ଣ୍ଣ, ଅନେକେ ସେ କଥା ଅନୁଭବ କରିବାକୁ ଇଚ୍ଛା ସୁଦ୍ଧା କରନ୍ତି ନାହିଁ । ପୃଥିବୀରେ ମନୁଷ୍ୟ ଯେତେ ପ୍ରକାର କାର୍ଯ୍ୟ କରେ, ତନ୍ମଧ୍ୟରେ ଲେଖକର କାର୍ଯ୍ୟ ସର୍ବାପେକ୍ଷା ଗୁରୁତର । ସର୍ବାପେକ୍ଷା ଏହାର ପ୍ରଭାବ ଅଧିକ ଦୂର ପ୍ରସାରିତ । ଏହା ହୃଦୟଙ୍ଗମ ନ କରି ଯେଉଁମାନେ ଲେଖନୀ ଧାରଣ କରନ୍ତି, ସେମାନଙ୍କ ପ୍ରୟାସ ସମ୍ପୂର୍ଣ୍ଣରୂପେ ସଫଳ ହୁଏ ନାହିଁ । ଆଜିକାଲି ଉତ୍କଳର ଲେଖକ ଶ୍ରେଣୀରେ ଅନେକେ ଏହି ହେତୁରୁ ବିଫଳ ପ୍ରୟାସ । ମାତୃଭାଷାର ଉନ୍ନତିସାଧନ କରିବାର ଆକାଂକ୍ଷା ଅନେକଙ୍କ ମନରେ ଜାଗ୍ରତ ହୋଇଅଛି; କିନ୍ତୁ ଉପଯୁକ୍ତ ଶକ୍ତି ନାହିଁ, କି ଉପଯୁକ୍ତ ସାଧନା ନାହିଁ ।

ବଙ୍ଗଦେଶରେ ଉପର୍ଯ୍ୟୁପରି କେତେକ ଜଣ ଉନ୍ନତମନା ଚିନ୍ତାଶୀଳ ବ୍ୟକ୍ତି ଜନ୍ମଗ୍ରହଣ କରି ମାତୃଭାଷାର ଉନ୍ନତି କଲେ

ଜୀବନମନ ସମର୍ପଣ କରିବାକୁ ଆଜ ବଙ୍ଗଭାଷା ଏପରି ଗୌରବାନ୍ୱିତ ହୋଇଅଛି । ତଥାପି ବଙ୍ଗଭାଷାରେ ଆବର୍ଜନା ଅଳ୍ପ ନୁହେ । 'କାଲମୃଗ', 'ମଡେଲ ଭଗିନୀ', 'ହେମଲତାର ଗୁପ୍ତକଥା' ପ୍ରଭୃତି କୁରୁଚିପୂର୍ଣ୍ଣ ପୁସ୍ତକ ଅଳ୍ପଜ୍ଞ ଓ ଚିନ୍ତାଶୂନ୍ୟ ନରନାରୀଙ୍କ ପ୍ରାଣକୁ ଦୂଷିତ କରୁଅଛି । ଏହି ଶ୍ରେଣୀର ପୁସ୍ତକମାନ ଉତ୍କଳର ଅନେକ ଭଦ୍ର ଗୃହସ୍ଥଙ୍କ ପୁତ୍ରକନ୍ୟାମାନଙ୍କ ହସ୍ତରେ ଶୋଭା ପାଉଅଛି । ସେ ଯାହାହେଉ, ବଙ୍ଗପ୍ରଦେଶ ପରି ଉତ୍କଳରେ ପ୍ରକୃତ ସାହିତ୍ୟସେବକ ଏପର୍ଯ୍ୟନ୍ତ କେହି ଦୃଷ୍ଟ ହୋଇ ନାହାନ୍ତି । ପ୍ରଥମାବସ୍ଥାରେ ବଙ୍ଗଭାଷାରେ ପୁସ୍ତକ ଅନୁବାଦ କରି କେତେକ ଜଣ ଏ ଦେଶରେ ଗ୍ରନ୍ଥକାର ବୋଲି ପରିଚିତ ହୋଇଥିଲେ । ତାହା ମଧ୍ୟ ଅର୍ଥୋପାର୍ଜ୍ଜନ ଉଦ୍ଦେଶ୍ୟରେ । ବର୍ତ୍ତମାନ ସେ ସମସ୍ତ ଗଲାଣି । ସ୍କୁଲ ପାଠ୍ୟପୁସ୍ତକମାନ ଅନୁବାଦ ନ କରି କେହି କେହି ଅନ୍ୟ ଉପାୟରେ ସଂଗ୍ରହ କରିବାକୁ ପ୍ରବୃତ୍ତ ହୋଇଅଛନ୍ତି; କିନ୍ତୁ ସ୍କୁଲପାଠ୍ୟପୁସ୍ତକ ତ ସାଧାରଣ ସାହିତ୍ୟ ନୁହେ । ତହିଁରେ ପୁଣି ଖଣ୍ଡିକ ବଦଳରେ ଆଉ ଖଣ୍ଡେ ଚଳିବ, ସେଥିର ଉପାୟ ନାହିଁ । ନର୍ମାଲ ସ୍କୁଲରେ ଚଳିବା ଭଳି ଖଣ୍ଡେ ଗଦ୍ୟ ସାହିତ୍ୟ ଓଡ଼ିଆ ଭାଷାରେ ନାହିଁ । ଏଥିରୁ ସ୍ପଷ୍ଟ ବୁଝା ଯାଉଅଛି, ଓଡ଼ିଆ ଭାଷା କେଡ଼େ ଦରିଦ୍ର । ଯେଉଁ ଜଣେ ଦୁଇ ଜଣ ଖଣ୍ଡିକେତେ ପୁସ୍ତକ ପ୍ରକାଶ କରିଅଛନ୍ତି, ସେମାନେ ସୌଖୀନ ଲେଖକ । ତନ୍ମଧ୍ୟରୁ କେବଳ ଶ୍ରୀଯୁକ୍ତ ରାଧାନାଥ ରାୟଙ୍କ ପୁସ୍ତକମାନ ସ୍ଥାୟୀ ସାହିତ୍ୟପଦବାଚ୍ୟ । ନାନା କାରଣରୁ ଆମ୍ଭେମାନେ ତାଙ୍କଠାରୁ ଆଶାନୁରୂପ ଫଳ ପାଇ ପାରୁ ନାହୁଁ । ଆଉ ଯେ ଜଣେ ଅଧେ ସୁଲେଖକ ଦୃଷ୍ଟିର ସମକ୍ଷରେ ରହିଅଛନ୍ତି, ସେମାନେ ନୀରବ । ସାମୟିକ ସାହିତ୍ୟର ଅବସ୍ଥା ତତୋଽଧିକ ଶୋଚନୀୟ । ମାସିକ ପତ୍ରିକା କେତେ

ବାହାରଲାଣି, କେତେ ଗଲାଣି । ବର୍ତ୍ତମାନ 'ଉତ୍କଳପ୍ରଭା' ରାଜଗୃହରେ ଜନ୍ମ ହୋଇ ସୁଦ୍ଧା ବାନରର ହାତରେ ଶାଳଗ୍ରାମ ପଡ଼ିଲା ପରି ଦୁର୍ଦ୍ଦଶା ଲଭିଅଛି ।

ସାହିତ୍ୟର ପ୍ରୟୋଜନ କଣ ? ତାହା ପାଠ କରି ଲୋକେ ତାତ୍କାଳିକ ଆନନ୍ଦ ସମ୍ଭୋଗ କଲେ କି ଲେଖକଙ୍କ ମନୋରଥ ପୂର୍ଣ୍ଣ ହେଲା ? ନା, ତାହା ଛଡ଼ା ଆଉ କିଛି ଉଚ୍ଚତର ଲକ୍ଷ୍ୟ ଅଛି ? କାର୍ଯ୍ୟତଃ ଆମ୍ଭେମାନେ ଅଧିକ କିଛି ଦେଖି ପାରୁ ନାହୁଁ । ଯେତେ-ଗୁଡ଼ିଏ ଲେଖକଙ୍କ ସଙ୍ଗେ ଆମ୍ଭମାନଙ୍କର ପରିଚୟ ହୋଇଅଛି, ତନ୍ମଧ୍ୟରୁ ଅତି ଅଳ୍ପ ଲୋକଙ୍କ ଚିନ୍ତା ଓ କଳ୍ପନା ଉପରକୁ ଉଠିଅଛି । ସାଧାରଣ ଶିକ୍ଷା ଯେ ଲେଖକଙ୍କର ପ୍ରଧାନ କାର୍ଯ୍ୟ, ସେଥିପ୍ରତି କେତେ ଜଣ ଲେଖକଙ୍କ ଦୃଷ୍ଟି ଅଛି ? ଯେଉଁ ବିଷୟଟି ଲିଖିତ ହେଲା, ଜୀବନ ସଙ୍ଗେ ତାହାର କେତେଦୂର ସମ୍ବନ୍ଧ, କେତେ ଜଣ ତାହା ସୂକ୍ଷ୍ମରୂପେ ବିଚାର କରି ଦେଖନ୍ତି ? ଅନେକ ସମୟରେ ଏପରି ମଧ୍ୟ ଦେଖାଯାଏ ଯେ, ଆମ୍ଭେମାନେ ଲେଖୁଁ ସପ୍ତମସ୍ୱର୍ଗର କଥା, ବାସ କରୁଁ ପୃଥିବୀର ଧୂଳିରାଶି ମଧ୍ୟରେ । ଯେଉଁ ଦେଶରେ ବାସ, ସେହି ଦେଶର କଥା ଲେଖିଲେ ତାହା ସ୍ୱାଭାବିକ ହୁଏ । ଯେଉଁ ବ୍ୟକ୍ତି ପ୍ରକୃତିସ୍ଥ, ସେହି ଏକା ଉପଯୋଗୀ ବିଷୟ ସ୍ୱାଭାବିକ ଭାବରେ ଲେଖିପାରେ । ପୁଣି ତାହା ପାଠ କରି ରସାସ୍ୱାଦ କରିବାପାଇଁ ପାଠକର ମଧ୍ୟ ପ୍ରକୃତିସ୍ଥ ହେବା ଆବଶ୍ୟକ । ଏ ଦୁଇଟିର ଅଭାବରେ ସାହିତ୍ୟ ବିକାରଗ୍ରସ୍ତ ହେବ, ଏଥିରେ ବିଚିତ୍ର କଣ ଅଛି ?

ସାହିତ୍ୟସେବାର ପ୍ରଥମ ପ୍ରୟୋଜନୀୟ ବିଷୟ ପୁସ୍ତକପାଠ । ଆଜକାଲି ଏତେ ଗ୍ରାଜୁଏଟ୍, ଅଣ୍ଡର ଗ୍ରାଜୁଏଟ୍ ଓ ପଣ୍ଡିତ ବ୍ୟକ୍ତି ଥାଉଁ ଥାଉଁ ଆମ୍ଭେମାନେ ସେମାନଙ୍କୁ ପୁସ୍ତକ ପାଠକରିବାକୁ ପରାମର୍ଶ

ଦେଉଅଛନ୍ତି, ଏ କଥାଟା ଆପାତତଃ ଶୁଣିବାକୁ ଅଡୁଆ ଲଗିପାରେ । କିନ୍ତୁ ଏହା ଅତି ସତ୍ୟ କଥା ଯେ; ଉତ୍କଳୀୟ ଶିକ୍ଷିତଶ୍ରେଣୀ ମଧ୍ୟରେ ପୁସ୍ତକପାଠ ବଡ଼ କମ୍ । ଆଜି ଯେଉଁମାନଙ୍କ ମଧ୍ୟରେ କିଛି କିଛି ଦେଖାଯାଏ, ତାହା ପ୍ରକୃତ ପଦ୍ଧତି ଅନୁସାରେ ନୁହେ । ସ୍କୁଲ କଲେଜରେ ଯେଉଁ ପଢ଼ା, ସେ ତ 'ପାସ୍ ପଢ଼ା' । ସେ ପଢ଼ା ସଙ୍ଗେ ଜୀବନର ବିଶେଷ କିଛି ସମ୍ବନ୍ଧ ଅଛି, ଆମ୍ଭେମାନେ ଏପରି ମନେ କରୁ ନାହୁଁ । ଅନେକଙ୍କ ପକ୍ଷରେ ସେହି ପଢ଼ା ବନ୍ଦ ହେବା ସଙ୍ଗେ ସଙ୍ଗେ ପୋଥିରେ ଡୋରି ଦିଆ ହୁଏ । ଯେଉଁମାନଙ୍କର ତାହା ନ ହୁଏ, ସେମାନଙ୍କ ମଧ୍ୟରୁ କେହି କେହି କେବଳ ଇଂରାଜୀ ଭାଷାଟା ଭଲ କରି ଶିଖିବା ଉଦ୍ଦେଶ୍ୟରେ ( ଯେହେତୁ ସେଥିରେ ଅର୍ଥ ଅଛି ), କେହି କେହି ବା ଆମୋଦପ୍ରମୋଦରେ ସମୟ କଟାଇବା ପାଇଁ ପୁସ୍ତକର ଆଶ୍ରୟ ଗ୍ରହଣ କରନ୍ତି । ସୁତରାଂ ଏଥି ସଙ୍ଗେ ଜୀବନର ସମ୍ବନ୍ଧ ଘଟେନାହିଁ । ଏମାନଙ୍କର ପ୍ରଧାନ ପାଠ୍ୟପୁସ୍ତକ ନାଟକ, ଉପନ୍ୟାସ, ରହସ୍ୟ ଇତ୍ୟାଦି । ଉଚ୍ଚ ଶ୍ରେଣୀର ନାଟକ ଉପନ୍ୟାସାଦି ପ୍ରାୟ ହାତରେ ଧରନ୍ତି ନାହିଁ । ଆଉ ଯାହା ସବୁ ପଢ଼ନ୍ତି, ସେଥିରେ ତାହାର ଉଚ୍ଚ ଉଦ୍ଦେଶ୍ୟ ଆଡ଼କୁ ଆଦୌ ଦୃଷ୍ଟି ନ ଥାଏ, କେବଳ ବାହାରର ଗଳ୍ପଟାରେ କୌତୂହଳ ଚରିତାର୍ଥ କରନ୍ତି । ଏପ୍ରକାର ଅଧ୍ୟୟନର ଅବଶ୍ୟମ୍ଭାବୀ ଫଳ ଏହି ଯେ, ଆପଣାର ଚିନ୍ତାର ଗଭୀରତା କ୍ରମେ ବିଲୁପ୍ତ ହୁଏ । ଶେଷରେ ମନ ଏପରି ବିକାରଗ୍ରସ୍ତ ହୋଇପଡ଼େ ଯେ, କୌଣସି ପ୍ରକାର ଚିନ୍ତାପୂର୍ଣ୍ଣ ପୁସ୍ତକପାଠରେ ପ୍ରବୃତ୍ତି ଆଦୌ ରହେ ନାହିଁ । ଆମ୍ଭମାନଙ୍କର ଜଣେ ବିଖ୍ୟାତ ଉପନ୍ୟାସପାଠକ ବନ୍ଧୁ ନିଜର ରୁଚି ସମ୍ବନ୍ଧରେ ଏ କଥା ସ୍ପଷ୍ଟ ସ୍ୱୀକାର କରିଅଛନ୍ତି । ଶତ ଶତ ଉପନ୍ୟାସ ପାଠ କରି ତାଙ୍କର ଚିନ୍ତାଶକ୍ତି ବିନ୍ଦୁମାତ୍ର ଉନ୍ମେଷିତ ହୋଇ ନାହିଁ । ଆମ୍ଭେ-

ମାନେ ଅନେକଙ୍କ ଜୀବନରେ ଉଁଦେଖିଅଛୁଁ, ସେମାନେ ବୃଥା ଗଳ୍ପ, ହାସ୍ୟ, କୌତୁକରେ ୫ ଘଣ୍ଟା, ୧୦ ଘଣ୍ଟା ସମୟ କଟାଉଅଛନ୍ତି; କିନ୍ତୁ କୌଣସି ପ୍ରକାର ଗଳ୍ପ ଭିତରେ ଗୋଟିଏ ଉଚ୍ଚ ଚିନ୍ତାର କଥା ଉତ୍ଥାପିତ ହେଲେ ସେମାନଙ୍କର ସବୁ ପ୍ରଫୁଲ୍ଲତା ସେହିକ୍ଷଣି ସ୍ଥାନ ଛାଡ଼ି ପଳାଏ, ନଜେ ସେ ସ୍ଥାନ ଛାଡ଼ି ପଳାଇବାର ବାଟ ଖୋଜନ୍ତି । ଯେଉଁମାନେ ଅଳ୍ପଜ୍ଞ, ଇଂରେଜୀ ନଭେଲ ପ୍ରଭୃତିକୁ ଯେଉଁମାନଙ୍କ ହାତ ନ ପାଏ, ସେମାନେ ବଙ୍ଗଳାର ଆବର୍ଜନାମୟ ପୁସ୍ତକଗୁଡିର ଆଶ୍ରୟ ଗ୍ରହଣ କରନ୍ତି । ଉଭୟ ସ୍ଥଳରେ ଫଳ ସମାନ ।

ଉଚ୍ଚଶ୍ରେଣୀର ପୁସ୍ତକ ପାଠ ନ କଲେ ଜୀବନ ଉଚ୍ଚ ହେବ କିପରି ? ସାଧୁ ସଙ୍ଗରେ ସାଧୁତା ବଢ଼େ, ଏହା ସମସ୍ତେ ସ୍ୱୀକାର କରିବେ । ଉଚ୍ଚ ଶ୍ରେଣୀର ପୁସ୍ତକ ଏକ ପ୍ରକାର ସାଧୁସଙ୍ଗ । ମାନବ-ସମାଜ ମଧ୍ୟରେ ଯେତେବେଳେ ଚିନ୍ତାର ଗତି ବନ୍ଦ ହୋଇଯାଏ, ପ୍ରତିଭା ଖର୍ବ ହୋଇଯାଏ, ପୁସ୍ତକପାଠ ସେତେବେଳେ ମହୋ-ପକାର ସାଧନ କରେ । ସେ କେଉଁ ଶ୍ରେଣୀର ପୁସ୍ତକ ? ମହାତ୍ମା ଇମର୍ସନଙ୍କ କଥାରେ ଆମ୍ଭେମାନେ ଏ କଥାର ଉତ୍ତର ପ୍ରଦାନ କରିବୁଁ ।

'If our times are sterile in genius, we must cheer us with books of rich and believing men who had atmosphere and amplitude about them. Every good fable, every mythology, every biography from a religious age, every passage of love, and even philosophy and science when they proceed from an intellectual integrity and are not detached and critical, have the

imaginative element.' ଏହାର ସ୍ଥୂଳ ମର୍ମ ଏହି ଯେ, ଉନ୍ନତ ଯୁଗର ଉନ୍ନତମନା ସାଧୁହୃଦୟ ବ୍ୟକ୍ତିମାନଙ୍କ ପୁସ୍ତକ ଅଧ୍ୟୟନ କରିବା ଉଚିତ, ତଦ୍ଦ୍ୱାରା କଳ୍ପନା ବିକାଶପ୍ରାପ୍ତ ହୁଏ । କାବ୍ୟ, ଉପନ୍ୟାସ, ଲୋକଚରିତ, ଧର୍ମଶାସ୍ତ୍ର, ଦର୍ଶନ, ବିଜ୍ଞାନ, କାଳ୍ପନିକ ଗଳ୍ପ, ସମସ୍ତେ ଏ ପଥରେ ସହାୟତା କରନ୍ତି । ପ୍ରକୃତ ପକ୍ଷେ ଦୂଷିତ କଳ୍ପନାସମ୍ଭୂତ ଗ୍ରନ୍ଥ ମନକୁ ଦୂଷିତ ଓ ରୁଚିକୁ ବିକାରଗ୍ରସ୍ତ କରିଦିଏ ଏବଂ ଉନ୍ନତ ଚିନ୍ତାପୂର୍ଣ୍ଣ ଗ୍ରନ୍ଥମାନ ମନୁଷ୍ୟର କଳ୍ପନା ଓ ରୁଚିକୁ ଉନ୍ନତ ଏବଂ ମାର୍ଜିତ କରେ ।

ସାହିତ୍ୟସେବାର ଦ୍ୱିତୀୟ ଉପାଦାନ ଆଲୋଚନା । ଏହାଦ୍ୱାରା ଆମ୍ଭମାନଙ୍କର ଅପରିସ୍ଫୁଟ ଚିନ୍ତାଗୁଡ଼ିକ ସ୍ଫୁଟତର ହୁଏ; ଅନେକ ସମୟରେ ନୂତନ ଚିନ୍ତାର ଦ୍ୱାର ଫିଟିଯାଏ । କେଉଁ ଚିନ୍ତା କେଉଁ ସୂତ୍ରରେ ଜାଗ୍ରତ ହୁଏ, ତାହା ନିରୂପଣ କରିବା ସହଜ ନୁହେ । ପୁସ୍ତକପାଠରେ ହେଉ ବା ବନ୍ଧୁମାନଙ୍କ ସଙ୍ଗେ ଆଲୋଚନାଦ୍ୱାରା ହେଉ, ଯେତେବେଳେ ଗୋଟିଏ ଚିନ୍ତା ପ୍ରାଣରେ ଉଦିତ ହେବ, ସେତେବେଳେ ଯତ୍ନପୂର୍ବକ ତାହାର ଅନୁସରଣ କରିବା ଆବଶ୍ୟକ; ନଚେତ୍ ସେ ଚିନ୍ତା ସ୍ଥାୟୀ ହେବନାହିଁ । ସହସ୍ରପର ମନୁଷ୍ୟ ମନରେ କେତେ ଚିନ୍ତା ଦେଖାଦିଏ, ପୁଣି ଅଦୃଶ୍ୟ ହୋଇଯାଏ, ତାହା କିଏ ନିରୂପଣ କରିପାରେ ? ଆଲୋଚନାଦ୍ୱାରା ଅନେକ ସମୟରେ ସେହି ଅଦୃଶ୍ୟ ଚିନ୍ତା ନୂତନ ଆକାର ଧାରଣ କରି ଆମ୍ଭମାନଙ୍କ ମାନସ ସମକ୍ଷରେ ଉପସ୍ଥିତ ହୁଏ । ପୃଥିବୀର ବଡ଼ଲୋକମାନଙ୍କ କାର୍ଯ୍ୟ ଅନୁସନ୍ଧାନ କଲେ ଦେଖାଯାଏ, ସେମାନଙ୍କର ପ୍ରାୟ ଗୋଟିଏ ଲେଖାଏଁ ଦଳ ଥାଏ, ସେହି ଦଳ ସେମାନଙ୍କର ବଳ । ଦଳଗତ ବ୍ୟକ୍ତିମାନେ ପରସ୍ପର ସହାୟତାରେ ଉନ୍ନତର ଉଚ୍ଚତର ସୋପାନରେ ଅଧିରୂଢ଼ ହୁଅନ୍ତି । ବିଶେଷତଃ ପ୍ରତି ସଭ୍ୟ ଯୁଗରେ

ଓ ସଭ୍ୟ ଦେଶରେ ସାହିତ୍ୟସେବକମାନଙ୍କର ଏହିପରି ଦଳ ( circle ) ଦେଖାଯାଏ । ଆମ୍ଭେମାନେ କ୍ଷୁଦ୍ର ହେଲେ ହେଁ ଏହି ଉଚ୍ଚ ପଦ୍ଧତିର ଅନୁସରଣ କଲେ ବର୍ତ୍ତମାନ ଅପେକ୍ଷା ବହୁ ଗୁଣରେ ଉନ୍ନତ ହୋଇପାରୁଁ ଏବଂ ଯଥାର୍ଥରେ ସ୍ୱଦେଶରେ ଓ ମାତୃଭାଷାର କଲ୍ୟାଣ ସାଧନ କରିପାରୁଁ ।

ପୁସ୍ତକପାଠ ଏବଂ ଆଲୋଚନାର ଉପକାରିତା ବିଷୟରେ କାହାର ଦ୍ୱିରୁକ୍ତି ଥାଇ ନ ପାରେ । ସେ ଉପକାରିତା କେବଳ ଆମ୍ଭମାନଙ୍କର ଚିନ୍ତା ଓ କଳ୍ପନାକୁ ଜାଗ୍ରତ କରିଦେବା ଛଡ଼ା ଆଉ କିଛି ନୁହେ । ଆମ୍ଭେମାନେ ଯେଉଁ ଚିନ୍ତାକୁ ତୁଚ୍ଛ କରି ପରିତ୍ୟାଗ କରୁଁ, ସେହି ଚିନ୍ତା ପୁସ୍ତକରେ ବା ବିଜ୍ଞ ବନ୍ଧୁଙ୍କ କଥାରେ ସୁନ୍ଦରତର ଓ ଉଜ୍ଜ୍ୱଳତର ହୋଇ ପ୍ରକାଶିତ ହୁଏ; ତେତେବେଳେ ଆମ୍ଭେମାନେ ତାହାକୁ ପରମ ଆଦରରେ ଗ୍ରହଣ କରୁଁ । ପ୍ରତ୍ୟେକ ମନୁଷ୍ୟ ପକ୍ଷରେ ଏହା ସ୍ୱାଭାବିକ । କିନ୍ତୁ ଅନୁକରଣଠାରୁ ବଳି ଅନିଷ୍ଟକାରୀ ଆଉ କିଛି ନାହିଁ । ମହାତ୍ମା ଇମର୍ସନ ଅନୁକରଣକୁ "ଆତ୍ମହତ୍ୟା" ରୂପେ ନିର୍ଦ୍ଦେଶ କରିଅଛନ୍ତି । ବାସ୍ତବିକ ଅନୁକରଣଦ୍ୱାରା ଆମ୍ଭେମାନେ ନିଜର ବ୍ୟକ୍ତିତ୍ୱ ହରାଇ ପରର ଅନ୍ଧଅନୁସରଣକାରୀ ହୋଇ ବିଡ଼ମ୍ବିତ ହେଉଁ । ସୁତରାଂ ଆମ୍ଭମାନଙ୍କର ମନୁଷ୍ୟତ୍ୱ ଲାଭ ଅସମ୍ଭବ ଏବଂ ଗ୍ରନ୍ଥ ଲେଖିବା ବିଡ଼ମ୍ବନା ମାତ୍ର । ଚିନ୍ତା ହିଁ ସାହିତ୍ୟର ସର୍ବସ୍ୱ । ଚିନ୍ତାର ଗମ୍ଭୀରତା ଅନୁସାରେ ସାହିତ୍ୟର ମୂଲ୍ୟର ତାରତମ୍ୟ ହୁଏ । ଯେବେ ନିଜର କିଛି ଚିନ୍ତା ନ ଥାଏ, ତେବେ ଗ୍ରନ୍ଥ ଲେଖିବାର ପ୍ରୟୋଜନ କଣ ? ତାହାଦ୍ୱାରା ଜଗତରେ କାହାର କି ଉପକାର ହେବ ?

ଉପଯୁକ୍ତ ଚିନ୍ତାଦ୍ୱାରା ଯେଉଁ ଭାବ ନିଜର ହୋଇ ନାହିଁ, ତାହା ମନୁଷ୍ୟ କଦାଚ ସୁନ୍ଦରରୂପେ ବ୍ୟକ୍ତ କରି ନ ପାରେ ।

ପ୍ରାଣର ଭାଷା ପ୍ରାଣକୁ ସ୍ପର୍ଶ କରେ । ଜଣେ ପ୍ରସିଦ୍ଧ ଗ୍ରନ୍ଥକାର କହିଅଛନ୍ତି, "Look in the heart and write" ଆପଣାର ହୃଦୟ ପ୍ରତି ଦୃଷ୍ଟିନିକ୍ଷେପ କର ଏବଂ ଲେଖ । ପୃଥିବୀରେ କେତେ ଜଣ ଲୋକ ଏହି ପ୍ରଣାଳୀର ଅନୁସରଣ କରନ୍ତି ? ଯେବେ, ତୁମର ଲେଖା ତୁମକୁ ଜାଗ୍ରତ କରି ନ ପାରିଲା, ତୁମ ଜୀବନର ଗତିକୁ ପରିବର୍ତ୍ତିତ କରି ନ ପାରିଲା, ତେବେ ତାହା ଅନ୍ୟ ପ୍ରାଣରେ କାର୍ଯ୍ୟ କରିବ କିପରି ?

ବର୍ତ୍ତମାନ ଜିଜ୍ଞାସ୍ୟ ଏହି ଯେ, ଆମ୍ଭମାନଙ୍କ ଶିକ୍ଷିତଗଣ କି ପ୍ରକୃତପକ୍ଷେ ମାତୃଭାଷାର ଉନ୍ନତିପାଇଁ ମନ ବଳାଇଅଛନ୍ତି ? ଯେବେ ତାହା ହୋଇଥାଏ, ତେବେ କି ଉପଯୁକ୍ତ ପୁସ୍ତକପାଠ, ଆଲୋଚନା ଓ ଚିନ୍ତାଦ୍ୱାରା ନିଜ ଜୀବନକୁ ପ୍ରସ୍ତୁତ କରିଅଛନ୍ତି ? ତାହାର ପ୍ରମାଣ କାହିଁ ? ବଙ୍ଗଳା-ଭାଷାର କାରବାର ତ ଘରେ ଘରେ ! ବର୍ଷ ପରେ ବର୍ଷ ଅତୀତ ହୋଇ ଯାଉଅଛି, ଓଡ଼ିଆ-ଭାଷାରେ କେତେ ଖଣ୍ଡ ପୁସ୍ତକ ପ୍ରକାଶିତ ହେଉଅଛି ? ସମୟାଭାବର ଆପତ୍ତି ଅତି ଅସାର । 'ସମୟ ନାହିଁ', ଏକଥା ମୁହଁରେ ଧରିବା ଲଜ୍ଜାଜନକ ! 'ଅର୍ଥ ନାହିଁ,' ଏ କଥା ମଧ୍ୟ ଠିକ୍ ନୁହେ । ସମସ୍ତଙ୍କର ନ ଥାଇ ପାରେ, କେତେ ଲୋକଙ୍କର ତ ଅଛି; ସେମାନେ କି ସ୍ୱାର୍ଥ ପରିତ୍ୟାଗ କରି ବର୍ଷ ମଧ୍ୟରେ ଖଣ୍ଡେଅଧେ ପୁସ୍ତକ ପ୍ରକାଶ କରି ପାରନ୍ତେ ନାହିଁ ? ଏହିପରି କ୍ରମେ ଓଡ଼ିଆ ସାହିତ୍ୟ ପ୍ରତି ଲୋକଙ୍କର ଟିକିଏ ଆଦର ପ୍ରକାଶ ପାଇଲେ ଅନ୍ୟମାନଙ୍କର ସାହସ ବଢ଼ନ୍ତା ।

---

# ବୁଢ଼ାଲିଙ୍ଗ

## ୭ ଗ୍ରାମଣଙ୍କର ଗଳ୍ପ

ନବଗ୍ରାମର ପୂର୍ବକୁ କ୍ରୋଶେକ ଦୂରରେ ମହାନଦୀର ଦକ୍ଷିଣ-ତୀରସ୍ଥ ବାଲୁକାମୟ ଭୂମିଖଣ୍ଡରେ ବୁଢ଼ାଲିଙ୍ଗ ମହାଦେବ ବିରାଜିତ ହୋଇଅଛନ୍ତି । ଭସ୍ମବିଭୂଷିତ ଶ୍ମଶାନ-ବିହାରୀ ଦିଗମ୍ବର ମହାଦେବ ସ୍ୱଭାବତଃ ଆଡ଼ମ୍ବରଶୂନ୍ୟ । ସ୍ଥାନବିଶେଷର ତାଙ୍କଠାରେ ନାହିଁ । ଚରାଚର ତାଙ୍କଠାରେ ସମଭାବସମ୍ପନ୍ନ ! ନିବିଡ଼-ବନ-ସଙ୍କୁଳ-ପର୍ବତ-ଶିଖରସ୍ଥ କଳ-ନାଦିନୀ-ନିର୍ଝରିଣୀ-ସମାବୃତ ଭୂମିଖଣ୍ଡ ତାଙ୍କୁ ଯେପରି, ସୁଦୂରବିସ୍ତୃତ ବୃକ୍ଷଶୂନ୍ୟ ବାଲୁକାମୟ ଭୂମିଖଣ୍ଡ ମଧ୍ୟ ସେହିପରି । ଅତି ଦୁର୍ଗମ ବନ୍ୟଜନ୍ତୁସମାକୁଳ କାନ୍ତାର ପ୍ରତି ତାଙ୍କର ଯେପରି ଦୃଷ୍ଟି ଦିଗନ୍ତବ୍ୟାପୀ, ଛାୟା-ଜଳ-ହୀନ ଦୁସ୍ତର ପ୍ରାନ୍ତର ପ୍ରତି ମଧ୍ୟ ସେହିପରି ଦୃଷ୍ଟି । ସୁନ୍ଦର ଲୋକାଳୟ-ପୂର୍ଣ୍ଣ ବିସ୍ତୀର୍ଣ୍ଣ ଗ୍ରାମ-ମଧ୍ୟଗତ ସୁବିଶାଳମନ୍ଦିର ପ୍ରତି ତାଙ୍କର ଯେପରି ସ୍ନେହ, ନରଶିରଃ-ଶୋଭିତ ଅସ୍ଥିମୟ ଭୟଙ୍କର ଶ୍ମଶାନଠାରେ ସୁଦ୍ଧା ସେପରି ସ୍ନେହ । ଫଳତଃ ସମଦର୍ଶୀ ଉଦାରଚେତା ମହାନୁଭବ ମହାଦେବଙ୍କର ବିରାଜିତ ହେବାର ସ୍ଥାନବିଶେଷର ଆଦୌ ନାହିଁ । ଯେଉଁମାନେ କପିଳାସକନ୍ଦର, ମହାବିନାୟକ, ଲୋକନାଥ, ପରମହଂସ, ଭୁବନେଶ୍ୱର, ଅଥବା ବୁଢ଼ାଲିଙ୍ଗ ମହାଦେବଙ୍କର ଦର୍ଶନ କରି-ଅଛନ୍ତି, ସେମାନଙ୍କର ଏବିଷୟରେ ଆଉ ସନ୍ଦେହ ନାହିଁ । ପାଠକେ ! ମନୁଷ୍ୟ ହୋଇ ଏ ସମଦର୍ଶୀ ଭାବ କେହି କି ଲାଭ କରି ପାରେ ? ତାହା ହୋଇଥିଲେ ଆଜି ପାପମୟ ପୃଥିବୀ ପୁଣ୍ୟକ୍ଷେତ୍ର ବୈକୁଣ୍ଠଧାମରେ ପରିଣତ ହୋଇଥାନ୍ତା ।

ଆମ୍ଭେମାନେ କହୁଅଛୁଁ, ମହାଦେବ ବୁଢ଼ାଲିଙ୍ଗ ନନ୍ଦାଖଣ୍ଡରସ୍ଥ ବାଲୁକାମୟ ଭୂମିଖଣ୍ଡରେ ବିରାଜିତ ହୋଇଅଛନ୍ତି । ଏମନ୍ତ କି ନଦୀ ବଢ଼ିଲେ ମହାଦେବ ବଢ଼ିପାଣିରେ ପ୍ରତିବର୍ଷ ଅବଗାହନ କରନ୍ତି । ସମ୍ମୁଖ ମଧ୍ୟରେ ଗୋଟିଏ ଧଳାଙ୍କୁ ବୃକ୍ଷ । ବୃକ୍ଷଟି କିମ୍ବଦନ୍ତୀରେ ମହାଦେବ ବିରାଜିତ ହେବା ସମୟରୁ ଏକଭାବରେ ମହାଦେବଙ୍କ ନିକଟରେ ଦଣ୍ଡାୟମାନ ହୋଇ କାଳର ଗ୍ରାସ୍ଥ ପ୍ରଦାନ କରି ଆସୁଅଛି । ସେ ବୃକ୍ଷର କ୍ଷତିବୃଦ୍ଧି କିଛି ନାହିଁ । ବହୁକାଳ ପୂର୍ବେ ଯେପରି ଭାବରେ ଥିଲା, ବର୍ତ୍ତମାନ ମଧ୍ୟ ସେହିପରି ଭାବରେ ରହିଅଛି । ଅତି ଅଳ୍ପ ଛଡ଼ାରେ ଗୋଟିଏ ପାଟଳୀ ବୃକ୍ଷ ଆହୁରି ନଦୀ ମଧ୍ୟକୁ ଥାଇ ନିଜ ପୁଷ୍ପୋପହାରରେ ଦେବଦେବ ମହାଦେବଙ୍କ ସେବାରେ ନିଯୁକ୍ତ ଅଛି । କିମ୍ବଦନ୍ତୀ ଏହାକୁ ମଧ୍ୟ ମହାଦେବଙ୍କ ସମକାଳୀନ ବୋଲି ମର୍ଯ୍ୟାଦା ପ୍ରଦାନ କରିଅଛି ଏବଂ ଧଳାଙ୍କୁ ବୃକ୍ଷ ପ୍ରାୟ ଏହାର କୌଣସି କାଳେ କିଛି କ୍ଷତିବୃଦ୍ଧି ଦେଖାଯାଇ ନାହିଁ । ଦୁହେଁ ମହାଦେବଙ୍କ ସେବାରେ ନିଯୁକ୍ତ । ଯେତେବେଳେ ଗୋଟିଏ ଧବଳପୁଷ୍ପବିଭୂଷିତ ହୋଇ ମହାଦେବଙ୍କ ପାର୍ଶ୍ୱରେ ବିରାଜିତ ଥିବା ସମୟରେ ଅପରଟି ମନୋରମରକ୍ତବର୍ଣ୍ଣ-ପୁଷ୍ପ-ଭାରରେ ମହାଦେବଙ୍କ ସମୀପରେ ଅବନତ ହୋଇଯାଏ, ସେତେବେଳେ ସେମାନଙ୍କର ଶୋଭା ବର୍ଣ୍ଣନାତୀତ ହୋଇପଡ଼େ । ନକ୍ଷତ୍ରମୟ ଆକାଶ ଚରାଚରର ଛତ୍ରରୂପେ ବିରାଜିତ ଅଛି । ଧବଳ ପୁଷ୍ପମୟ ଧଳାଙ୍କୁ ଚରାଚରବ୍ୟାପୀ ଦେବଦେବ ମହାଦେବଙ୍କର ନକ୍ଷତ୍ରମୟ ଛତ୍ରରୂପରେ ବିରାଜିତ ହୋଇ ତାହାଁର ନିଦର୍ଶନ ଦେଖାଇଦିଏ । ଭକ୍ତ ସେ ଭାବରେ ଗଦ୍‌ଗଦ ହୋଇ ତନ୍ମୟମୁକ୍ତ ଲଳିତାରେ ନିଜର ରକ୍ତୋତ୍ସର୍ଗଦ୍ୱାରା ଅପୂର୍ବ ଭକ୍ତିର ଚରମ ଉଦାହରଣ ଦେଖାଇଲା ପ୍ରାୟ ପାଟଳୀବୃକ୍ଷ ରକ୍ତାକ୍ତପୁଷ୍ପଭାରରେ

ଅବନତ ହୋଇ ଅଭୂତପୂର୍ବ ଶ୍ରୀ ଧାରଣ କରେ । ସେହି ପୁଷ୍ପର ପାଖୁଡ଼ାମାନ ଝରଝର ହୋଇ ଝୁଣ୍ଡି ପଡ଼ିବା ସମୟରେ ଭକ୍ତର ଗଳଦେଶରୁ ରକ୍ତଧାର ସ୍ରୁତ ହେଲପ୍ରାୟ ଯେଉଁ ଶୋଭା ହୁଅଇ ପାଠକେ ! ତହିଁରେ ନିତାନ୍ତ ପାଷାଣମନା ଲୋକ ସୁଦ୍ଧା ବିମୋହିତ ହୋଇଯିବ । ତୁମ୍ଭର ଉଦ୍ୟାନସ୍ଥ ପାଟଳୀ ବୃକ୍ଷ ଏ ଶୋଭା କାହୁଁ ପାଇବ ? ତୁମ୍ଭର ତୋଷାଗାରସ୍ଥ ଧଳାଙ୍କୁ ବୃକ୍ଷ ଏ ଶୋଭା କାହୁଁ ଜନ୍ମାଇବ ? ଅନ୍ତକାଳର ସ୍ରୋତୋମୟୀ ଗତିର ଜ୍ୱଳନ୍ତଉଦାହରଣ-ସ୍ଥଳୀୟା ମହାନଦୀର ତୀରରେ ଚରାଚରବ୍ୟାପୀ ସଂହାର ମୂର୍ତ୍ତି ଦେବଦେବ ସ୍ୱୟଂ ସ୍ୱୟମ୍ଭୂ ଶିବ କାଳ ନଦୀକୂଳରେ ବିରାଜିତ ଥିଲାପରି ଉପଲକ୍ଷିତ ହୋଇ ନିଜର ଶୋଣିତ ପର୍ଯ୍ୟନ୍ତ ଉତ୍ସର୍ଗ ନ କଲେ ମୁକ୍ତିଲାଭର ଆଶା ନାହିଁ ବୋଲି ଲୋକଙ୍କୁ ଶିକ୍ଷା ଦେଉଅଛନ୍ତି । ଆହା ! ଏହି ଅପୂର୍ବ ଭାବ ଯାତ୍ରୀକ ହୃଦୟରେ ଜାଗ୍ରତ କରିବା ଉଦ୍ଦେଶ୍ୟରେ କି ଦେବଦେବ ଲୋକୋପେକ୍ଷିତ ବାଲୁକାମୟ ଭୂମିଖଣ୍ଡର ମର୍ଯ୍ୟାଦା ବଢ଼ାଇ ସେଠାରେ ବିରାଜିତ ହୋଇଅଛନ୍ତି ? ଏହି ଭାବରେ ବିହ୍ୱଳ ହୋଇ ଗନ୍ଧବହ କି ଉଭୟ ବୃକ୍ଷର ଅପୂର୍ବ ଭାବମୟ-ପୁଷ୍ପ-ସୁଗନ୍ଧ ସହିତରେ ଚତୁର୍ଦ୍ଦିଗ ଉନ୍ମତ୍ତ କରାଇ ବିଚରଣ କରୁଅଛି ?

ବୁଢ଼ାଲିଙ୍ଗ ମହାଦେବଙ୍କୁ ସେଠାରେ କେହି ସ୍ଥାପନ କରିନାହିଁ । ସ୍ୱୟମ୍ଭୂ ମହାଦେବ ପାତାଳଫୁଟ ହୋଇ ସ୍ୱୟଂ ସେଠାରେ ପ୍ରକାଶମାନ ହୋଇଥିବା କିମ୍ବଦନ୍ତୀ ଅଛି । ଶକ୍ତ ପ୍ରକାଣ୍ଡ, ମାଂସ କଅଁଳ ଉଳପଡ଼ିଥିବା ଏବଂ ଉପରୁ କଅଁଳ ଫାଟି ଯାଇଥିବା ଦେଖାଯାଏ । ଏମନ୍ତ ଜନଶ୍ରୁତି ଅଛି ଯେ, ପୂର୍ବେ କୁଜଙ୍ଗର ଭୂସ୍ୱାମୀମାନେ ଉକାସ୍ଥିତ କରିବା କାରଣ ନବଗ୍ରାମ ଆଡ଼କୁ ଅନେକ ସମୟରେ ଆସି ନାନା ଧନଦ୍ରବ୍ୟ ଗ୍ରହଣ ଯୋନ ଯାଉଥିଲେ ।

ସେମାନଙ୍କର ବୃଦ୍ଧାଲିଙ୍ଗ ମହାଦେବଙ୍କଠାରେ ପ୍ରଭୂତ ଭକ୍ତି ଥିଲା ଏବଂ ଡକାଇତି କରିବାକୁ ଆସିଲେ ମହାଦେବଙ୍କୁ ଆଗେ ପୂଜା କରୁଥିଲେ । ସେହି ହେତୁରୁ ଡକାଇତିରେ ସେମାନଙ୍କର ଯେପରି ଉତ୍ତମ ଉପାର୍ଜ୍ଜନ ହେଉଥିଲା, ସେହିପରି ହାକିମହୁକୁମା ମଧ୍ୟ କେହି ତାଙ୍କୁ ଧରିପାରୁ ନ ଥିଲେ । କାଳକ୍ରମେ ଭକ୍ତିଭାବ ଅଧିକ ହେବାରୁ ପ୍ରକୃତିବଶରୁ ଭୂୟାଁମାନେ ମହାଦେବଙ୍କୁ ଆପଣା ରାଜ୍ୟକୁ ନେଇ-ଯିବାର ପରାମର୍ଶ ସ୍ଥିରକରି ଦିନେ ଅନ୍ଧକାରମୟ ରାତ୍ରରେ ମହାଦେବଙ୍କୁ ଖୋଳିବାକୁ ଆରମ୍ଭ କଲେ । ଶକ୍ତି ପାତାଳଫୁଟ । ଯେତେ ଖୋଳନ୍ତି ତଳ ମିଳଇ ନାହିଁ । ଏମନ୍ତ ସମୟରେ ମହାଦେବ ନିଜ ଶକ୍ତି ପ୍ରକାଶ କଲେ । ଅଳ୍ପ ଦୂରରେ ଗୋଟିଏ ଧୋବା ବାସ କରୁଥିଲା । ସେ ଧୋବାର ବଂଶଧରମାନେ ଅଦ୍ୟାପି ସେ ସ୍ଥାନରେ ବାସକରି ରହିଅଛନ୍ତି । ଧୋବାର ମହାଦେବଙ୍କଠାରେ ଅଗାଧ ଭକ୍ତି ଥିଲା । ମହାଦେବ ଭୂୟାଁଙ୍କର ଏ ବୁଦ୍ଧି ଦେଖି ତାଙ୍କୁ ତଡ଼ିଦେବା ନିମିତ୍ତ ନିଜର ଅବସ୍ଥା ଜଣାଇ ଧୋବାକୁ କୁରାଢ଼ି ଓ ମଶାଲ ନେଇ ଆସିବା କାରଣ ସ୍ୱପ୍ନାଦେଶ କଲେ । ଧୋବା ତତ୍‌କ୍ଷଣାତ୍ ଏକ ହସ୍ତରେ ମଶାଲ ଓ ଅପର ହସ୍ତରେ କୁରାଢ଼ି ନେଇ ଶକ୍ତି-ରକ୍ଷାର୍ଥେ ଧାବମାନ ହେଲା । ଭୂୟାଁମାନେ ଈଶ୍ୱର-ମାୟାରେ ଜଡ଼ିତ ହୋଇ ଗୋଟିଏ ଧୋବାକୁ ଶତାଧିକ ଲୋକ ଏକ ହସ୍ତରେ ମଶାଲ ଓ ଅପର ହସ୍ତେ କୁରାଢ଼ି ନେଇ ଦଉଡ଼ି ଆସିବାକୁ ଦେଖିଲେ । ଏପରି ଅବସ୍ଥାରେ ପ୍ରାଣ ନେଇ ପଳାଇବା ସମୟରେ ଭୂୟାଁମାନେ ମହାଦେବଙ୍କ ଶକ୍ତି ଉପରେ ଲୌହମୁଦ୍‌ଗରରେ ଏକ ପ୍ରହାର କରିଗଲେ । ସେହି ପ୍ରହାରରେ ଶକ୍ତି କଞ୍ଚିତ ତଳ ପଡ଼ି ଫାଟି ଯାଇଅଛି । ଯାହାହେଉ ଏଥିରୁ ଆଉ ଏକ ଫଳ ଏହି

ହୋଇଅଛି ଯେ, ସେହିଦନରୁ ଧୂମ୍ପୁମାନେ ନବଗ୍ରାମ ଅଞ୍ଚଳକୁ ଡକାଇତି କରିବାକୁ ଆସନ୍ତି ନାହିଁ ।

ପାଟଳୀବୃକ୍ଷର ତଳକୁ ମହାନଦୀର ଧାର । ସେଠାରେ ପାଣି ଏତେ ଜମା ଅଛି ଯେ କାତ ପାଇବ ନାହିଁ । ମୃଦୁମଧୁର ତାନରେ ନୀଳଜଳରାଶି କଳକଳ ଧ୍ୱନରେ ପ୍ରବାହିତ ହୋଇ ମହାଦେବଙ୍କ ସକାଶେ ବେଦାଧ୍ୟୟନ କଲପ୍ରାୟ ଜଣା ଯାଉଅଛି । ସ୍ୱଭାବର ଶୋଭା ଏରୂପରେ ଏ ସ୍ଥାନରେ ଅତୀବ ମନୋହାରିଣୀ ହୋଇଅଛି ଏବଂ ପଥିକ ଯେବେ ସେ ବାଟରେ ଯିବାବେଳେ ଏଥିରେ ବିହ୍ୱଳ ହୋଇ ମହାଦେବଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରି ସେଠାରେ ଦଣ୍ଡେ ବସିଯାଇ ଶୋଭାଶାନ୍ତିମୟୀ ଅମିୟ ପାନ କରେ, ତାହା କେବଳ ସ୍ୱାଭାବିକ । ଏହିଁରେ ଆଶ୍ଚର୍ଯ୍ୟ ହେବାର କଥା କିଛି ନାହିଁ, ମାତ୍ର ବର୍ତ୍ତମାନ ଆମ୍ଭମାନଙ୍କର ଆନକଟ ଏ ଶୋଭା ଅପହରଣ କରିଅଛି । ଏବେ ନୀଳଜଳରାଶି ବଦଳରେ ଧବଳବାଲୁକାରାଶି ଧୂ ଧୂ ହୋଇ ରହିଅଛି । ଡକାଇତମାନଙ୍କ ଡରେ ମଧ୍ୟ ନିକଟବର୍ତ୍ତୀ ଜଙ୍ଗଲରୁ ବ୍ୟାଘ୍ର ଆସିବା ଭୟରେ କେହି ଲୋକ ରାତ୍ରରେ ବୃଦ୍ଧାଳଙ୍କଙ୍କ ସମୀପରେ ନ ଥାନ୍ତି— ରହିବାର ସ୍ଥାନ ମଧ୍ୟ ନାହିଁ । ସେବକ ଦିନରୁ ପୂଜା ସାରି ଚାଲିଯାଏ । ସୁତରାଂ ରାତ୍ରକୁ ସେ ସ୍ଥାନ ନିତାନ୍ତ ନିର୍ଜନ ହୋଇପଡ଼େ ।

———

# ବସନ୍ତ

## ৺ ଶଶିଭୂଷଣ ରାୟ

ବସନ୍ତ ! ଜୟୋସ୍ତୁ । ତୁମ୍ଭଠାରେ କବିଗଣ ଋତୁରାଜ ଆଖ୍ୟା କାହିଁକି ଅର୍ପଣ କରିଅଛନ୍ତି ? କେବଳ ତାହା ନୁହେଁ, ଏହି ହିମାଦ୍ରି କିରୀଟିନୀ ଭାରତଭୂମିରେ ବହୁ ଶ୍ରେଣୀର କବିରତ୍ନ ଜନ୍ମ-ଗ୍ରହଣ କରି ସମସ୍ତେ ସହସ୍ରମୁଖରେ ତୁମ୍ଭର ଋତୁରାଜ-ବୈଭବର ଜୟ ଘୋଷଣା କରିଛନ୍ତି ଏବଂ ତୁମ୍ଭର ଦକ୍ଷିଣାନିଳବିହାରିଣୀ ମୋହିନୀ-ମୂର୍ତ୍ତିର ସୁମନସଙ୍କୁଳ ମଧୁରିମା ଯଥାର୍ଥରୂପେ ଆସ୍ୱାଦନ କରି—

"ନବପଲାଶପଲାଶବନଂ ପୁରଃ
ସ୍ଫୁଟପରାଗପରାଗତପଙ୍କଜଂ ।
ମୃଦୁଲତାନ୍ତଲତାନ୍ତମଲୋକୟତ୍
ସସୁରଭିଂ ସୁରଭିଂ ସୁମନୋହରୈଃ ।"

ଇତ୍ୟାଦି ଅମର ସଙ୍ଗୀତରେ ତୁମ୍ଭର ଉପଯୁକ୍ତ ସମ୍ଭାବନା କରିଅଛନ୍ତି । ଭାରତର ଅମର-ଅଭିଧାନରେ ତୁମ୍ଭେ ସୁରଭି ଏବଂ ମଧୁ ନାମରେ ଅଭିହିତ । ପ୍ରଚଣ୍ଡ ଶୀତ ଉତ୍ତରୁ ତୁମ୍ଭର ଶୁଭାଗମନର ଜଡ଼ତା-ବିମୁକ୍ତ ପ୍ରକୃତିର ହାସ୍ୟଚ୍ଛଟା କବିଜନଲୋଭନୀୟ ବୋଲି ତୁମ୍ଭର ସମାଦର ଜଗଦ୍‌ବ୍ୟାପୀ ହୋଇଅଛି । ବାସନ୍ତୀ, ମାଧବୀ, କାଞ୍ଚନ, ବକୁଳ, କୁରୁବକ ପ୍ରଭୃତି ଫୁଲସମୂହ ନୟନାନନ୍ଦ ସମ୍ପାଦନ କଲେଣି । ବାଡ଼ାପି ଫୁଲ ଚତୁର୍ଦ୍ଦିଗରେ ନିଜର ଅପୂର୍ବ ସୌରଭ ବିତରଣ କଲାଣି । [illegible]ହିନଖ୍ୟାତା ପଙ୍କଜିନୀ ଋତୁନାୟକର ଲଳିତ-କାନ୍ତ ଅବଲୋକନ ନିମିତ୍ତ ମଳୟାନିଳର ମନ୍ଦ ମନ୍ଦ ହିଲ୍ଲୋଳରେ କମ୍ପିତକଳେବର ହେଲାଣି । ମଧୁମକ୍ଷିକା ମଧୁଚକ୍ର ନିର୍ମାଣ ଲାଗି

ପ୍ରସ୍ତୁତ ହେଲେଣି । ସୌରକରପ୍ରଭାଫଳରେ କୋଟି କୋଟି ତାରାଣ୍ଡର ନୃତ୍ୟ ରଚିତ ନଭୋମଣ୍ଡଳବତ୍ ପ୍ରକାଶିତ । ଭୂମଣ୍ଡଳର ପର୍ବତ ଏବଂ ପରମାଣୁ ଏ ଉଭୟଙ୍କଠାରେ ପଦାର୍ଥଭିତ୍ତି ପ୍ରତିଷ୍ଠିତ । ନବ ବସନ୍ତ ସମାଗମରେ ପର୍ବତାବତଂସ ହିମାଳୟଠାରୁ କ୍ଷୁଦ୍ରତମ ପରମାଣୁ ପର୍ଯ୍ୟନ୍ତ ସଦାନନ୍ଦମୟ ଦୃଷ୍ଟ ହୁଏ । ସେହି ତ୍ରୈଲୋକ୍ୟଚିନ୍ତାମଣି ବ୍ରହ୍ମାଣ୍ଡନାଥଙ୍କର ବସନ୍ତ ଆଗମନ କି ସୁନ୍ଦର ଅପୂର୍ବ ବିଧାନ । ରୌଦ୍ରର ପ୍ରଖରତାସୂଚକ ସିନ୍ଦୂରମୁଣ୍ଡିର ରବ ଚତୁର୍ଦ୍ଦିଗରେ ଶୁଭିଲାଣି । ହଳଦୀବସନ୍ତ ଓ କୋକିଳ ମଧ୍ୟେ ମଧ୍ୟେ ବସନ୍ତାଭିନନ୍ଦନ ଆରମ୍ଭ କରି "ପଲ୍ଲବ ପାଟଳା" ବନଭୂମି ବିଧୂନିତ କଲେଣି ।

ବସନ୍ତର ରୂପ-ରସ-ଗନ୍ଧର ଡାଲି ପୃଥିବୀ ଉପରେ ଅଜାଡ଼ି ହୋଇ ପଡ଼ିଗଲା । ଗୋଖରୀକଣ୍ଟକିତ ସ୍ଥାନସମୂହ ଘାସର ହରିତ୍ ସ୍ରୋତ ଲୁଚିଦେଇ ନିଜର ଜୟପତାକା ଉଡ଼ାଇ ଦେଲା । କେତେ ଅଜାନିତ ଫୁଲର ହାସ୍ୟରେ ବସନ୍ତଦେବର ଅଭିନନ୍ଦନଲିପି ପ୍ରଚ୍ଛରିତ ହୋଇଥିଲା, ତାହା ଠିକ୍ କରିବା ଅସମ୍ଭବ । ହେମନ୍ତକ ରିକ୍ତତା, ଶୀତର ଧୂସର ବିବର୍ଣ୍ଣତାକୁ ଘୋଡ଼ାଇ ବସନ୍ତ ସୌନ୍ଦର୍ଯ୍ୟର ଅକ୍ଷୟଭଣ୍ଡାରରୂପ ସଜ୍ଜିତ ପ୍ରକୃତିଦେବୀ ସ୍ୱପ୍ରତିଷ୍ଠା ଅକ୍ଷୁଣ୍ଣ ରଖିଲେ ।

ଭଇଁଷ ଗଛସମୂହ ତାମ୍ରାଭ ଓ ପୀତବର୍ଣ୍ଣିଳ ହରିତ୍ପତ୍ରରେ ଶୋଭିତ ହୋଇ ଭ୍ରମରର ଶୁଭାଗମନର ସୂଚନା ଦେଉଅଛି । ଡିଳେଇର ଧଳା ଫୁଲ ଓ ଧାତକୀର ପାଟଳ ଫୁଲ ଉଭୟ ମିଶି ବନଭୂମିକୁ ଅପୂର୍ବ ରୂପରେ ଶବଳିତ କରିଅଛନ୍ତି । ସୁନାରି ଗଛର ପୀତ ପୁଷ୍ପ-ଗୁଚ୍ଛ ଓ ଅଶୋକର ରଙ୍ଗ-ପାଟଳ-ମିଶ୍ରିତ ପୁଷ୍ପସ୍ତବକସମୂହରେ ସ୍ଥାନବିଶେଷ ଅପୂର୍ବ ଶୋଭା ଧାରଣ କରୁଅଛି । କନିଆର ଗଛର ବୃହଦାକାର ପୀତ ଫୁଲସମୂହ ପ୍ରକୃତିଦେବୀଙ୍କ ହରିତ୍-ଶାଢ଼ୀରେ ସୁନା ଜରିର କାରୁକାର୍ଯ୍ୟ ପ୍ରାୟ ଶୋଭମାନ । ଧବଳସିକତାମୟୀ

ନଗର ମଳସ୍ରୋତଦର୍ପଣରେ ପ୍ରତିବମ୍ବିତ ପାରିଭଦ୍ର, ଇଙ୍ଗଳ, ଶିମୁଳ ଓ ପଲାସର ଶୋଭା ଆକାଶରେ ରକ୍ତ ଲୋକନଦ ପରି ଦୃଶ୍ୟମାନ । ଶୁଭ୍ର ଏବଂ ତାମ୍ରାଭ ଅଷାଢ଼ୁଆ ଫୁଲ ସମୀରଣରେ ଦୋହଲୁଅଛି । କେନ୍ଦୁ, ଜାମୁ, କୁସୁମ ଓ ଶାଳଗଛ ସମୂହର ପଲ୍ଲବାଙ୍କୁର ଆରକ୍ତ ଓ ତାମ୍ରାଭ ଦିଶିଲେଣି । ପୁଷ୍ପିତ ଶୋଭାଞ୍ଜନରେ ଫୁଲଚୂଇଁ ଡାକଲେଣି ।

ଭ୍ରମରର ଶୁଭାଗମନ ପ୍ରାରମ୍ଭରୁ କୁହୁଡ଼ ସଞ୍ଜାତ ହୋଇ ଆମ୍ର ମୁକୁଳ ନିର୍ଗତ ହୁଏ । ନବ ବସନ୍ତ-ସମାଗମର ପ୍ରାକ୍‌କାଳରୁ ପ୍ରଭାତ ସମୟ ଅତୀବ ରମଣୀୟ ବୋଧହୁଏ । ଏତେବେଳେ ପ୍ରକୃତି-ଦେବୀଙ୍କ ସୁଷମା ପ୍ରକୃତ ସୌନ୍ଦର୍ଯ୍ୟ, ଗାମ୍ଭୀର୍ଯ୍ୟ ଏବଂ ଗୁରୁତ୍ୱରେ ପରିପୂର୍ଣ୍ଣ ହୁଏ ବୋଲି ମାନବର ମୁକ୍ତ ପ୍ରାଣ ଶୀତକାଳର ଜଡ଼ିମା ପରିହାର କରି ବସନ୍ତ ପ୍ରଭାତର ଅନନ୍ତ ଶୋଭା-ସମୁଦ୍ରରେ ମଗ୍ନ ହୋଇଥାଏ । ପ୍ରଭାତରେ ଆମ୍ବ ତୋଟାରେ ବୃକ୍ଷସମୂହର କାଞ୍ଚନ-ବର୍ଣ୍ଣ ମକାନ୍ତ ନବ କିଶଳୟଗୁଡ଼ିକରୁ ହିମ-ମୁକ୍ତାହାର ଖସି ପଡ଼ୁଥାଏ । ନବୋଦିତ ସୌରକର-ପ୍ରତିଫଳିତ ହୋଇ ସେ ସମସ୍ତେ ନୟନମନର ଯଥାର୍ଥ ଆରାମଦାୟିନୀ ରଙ୍ଗଭୂମି ହୋଇ ଉଠନ୍ତି । ଗ୍ରାମ୍ୟ ଲୋକେ ଇକ୍ଷୁକ୍ଷେତରେ ମଧୁର ଇକ୍ଷୁରସ ପାନ କରୁଥିଲେ । ବର୍ତ୍ତମାନ ସେସବୁ ଅନ୍ତର୍ହିତ । ଆମ୍ବଚଣା ଓ ଆମ୍ବକଷି ଏ ସବୁର ସ୍ଥାନ ଅଧିକାର କଲେଣି । ବରକୋଳି ପାଚିଲେଣି । ପାଳଧୂଆ ପୁଷ୍ପରେ ଦିଙ୍‌ମଣ୍ଡଳ ଆଲୋକିତ । ପ୍ରାନ୍ତରସମୂହ ଭରତିଆରି ବିହଙ୍ଗ ପ୍ରତିଧ୍ୱନିତ କୂଜନରେ ଶବ୍ଦାୟମାନ ହେଲେଣି । କୌଶଲ୍ୟା-ଗଙ୍ଗା-ପଦ୍ମବନର ଉପରିଭାଗରେ ଉଡ୍‌ଡୀୟମାନ ଟିଟ୍ଟିଭୀର ରବ ଜଳଦେବୀଙ୍କ ନୂପୁର ନାଦ ପରି ଶୁଭିଲେଣି । ବିହାଙ୍ଗର ପୁଷ୍କରିଣୀ ଓ ଘାଟରେ ମଳଜଳରେ ହିଞ୍ଚଳର ମନୋହର ପ୍ରତିବିମ୍ବ ଏବଂ

ଜଳ ମଧ୍ୟରେ ରକ୍ତକଇଁଫୁଲର ଶୋଭା ଦୃଷ୍ଟି ଆକର୍ଷଣ କରୁଅଛି । ପୁରୀ ନିକଟବର୍ତ୍ତୀ ସମଗ୍ର ପାଟର୍ ଜାଲୋପରି ଧୂମାକାର ଅସଂଖ୍ୟ କ୍ଷୁଦ୍ର କ୍ଷୁଦ୍ର ପତଙ୍ଗ ବିଚିତ୍ର ନୃତ୍ୟ ଆରମ୍ଭ କଲେଣି । ଝୁଣ୍ଟିଅନା, ମୁଚୁକୁନ୍ଦ ଓ ପାଟଳୀର ପୁଷ୍ପୋଦ୍‌ଗମ ହେଲଣି । ଏତେବେଳେ ପାଲଲହଡ଼ା ରାଜ୍ୟର ବିରାଟ ମାଲ୍ୟଗିରିନିମ୍ନସ୍ଥ ପ୍ରକାଣ୍ଡ ନାଗେଶ୍ୱର-ବନ ଅପୂର୍ବ ଶୋଭା ଧାରଣ କରେ । ସମଗ୍ର ଉତ୍କଳରେ ଏହି ପ୍ରକାଣ୍ଡ ନାଗେଶ୍ୱରବନର ତୁଳନା ନାହିଁ । ପୁଷ୍ପିତ ନାଗେଶ୍ୱର ବୃକ୍ଷସମୂହ ବସନ୍ତ-ସମୀରଣରେ ଆନ୍ଦୋଳିତ ହୋଇ ଦିଗନ୍ତବ୍ୟାପୀ ସୌରଭ ବିକୀରଣରେ ସର୍ବଦା ବ୍ୟସ୍ତ ଏବଂ ବନ-ମଧ୍ୟସ୍ଥିତ ନିର୍ଝର ସ୍ୱଚ୍ଛ ନୀର ଉଦ୍‌ଗୀରଣରେ ମତ୍ତ । ଏହା ଦେଖିଲେ ବିଶ୍ୱସ୍ରଷ୍ଟା ଏବଂ କ୍ଷୁଦ୍ରାଦପି କ୍ଷୁଦ୍ର ମନୁଷ୍ୟ ମଧ୍ୟରେ ପ୍ରୀତି, ଶ୍ରଦ୍ଧା ଏବଂ ବିଶ୍ୱାସର ଅମଳ ଶତଦଳ ପ୍ରସ୍ଫୁଟିତ ହୁଏ ଏବଂ ମନରୁ ଅଶାନ୍ତି, ଉଚ୍ଛୃଙ୍ଖଳତା କଦାଗ୍ରହ ଏବଂ ଉଦ୍ଦାମ ଭାବ ସମ୍ପୂର୍ଣ୍ଣ ନିର୍ବାସିତ ହୋଇଯାଏ ।

"ବୀଣା-ପୁସ୍ତକ-ରଞ୍ଜିତ ହସ୍ତେ
ଭଗବତି ଭାରତି ଦେବି ନମସ୍ତେ ।"

ବସନ୍ତ-ପଞ୍ଚମୀ ଦିନ ବାଗ୍‌ଦେବୀ ସରସ୍ୱତୀଙ୍କ ଆରାଧନା ବସନ୍ତାରମ୍ଭର ପ୍ରଥମ ଉତ୍ସବ । ଏ ଦୃଶ୍ୟ ଅତୀବ ସୁନ୍ଦର ଏବଂ ମର୍ମ-ସ୍ପର୍ଶୀ । କିନ୍ତୁ ଏହି ପୂଜା କେବଳ ବିଦ୍ୟାର୍ଥୀ ବାଳକମାନଙ୍କ ମଧ୍ୟରେ ନିବଦ୍ଧ ନୁହେ ଘରେ ଘରେ ଏହି ପୂଜା ଅନୁଷ୍ଠିତ ହୋଇଥାଏ । ଯେତେବେଳେ ବାହ୍ୟ ପ୍ରକୃତି ମଳିନ-ମୌନଭାବ ପରିହାର କରି ମୁଖର-ଭାବ ଧାରଣ କରୁଅଛି, ଯେତେବେଳେ ସୁକଣ୍ଠ କୁଳକଣ୍ଠ ନବୋଦ୍‌ଗତ ଘନସନ୍ନିବିଷ୍ଟ ଆରକ୍ତ କିଶଳୟରାଜି ମଧ୍ୟରେ ନିଜର କୃଷ୍ଣବର୍ଣ୍ଣ ଦେହ ଲୁକାୟିତ ରଖି ପଞ୍ଚମ ତାନ ଧରୁଅଛି; ଯେତେ-ବେଳେ କୃଷ୍ଣକାୟ ଭ୍ରମର ନବ-ମୁକୁଳିତ ଚୂତମୁକୁଳ ସୌରଭରେ

ଆକୃଷ୍ଟ ହୋଇ ଗୁଞ୍ଜରୁଅଛି ଏବଂ ତହିଁ ସଙ୍ଗେ ହଳଦୀବସନ୍ତ, ମୁନିଆ ଓ ଭରତଆ ପ୍ରଭୃତିର ସ୍ୱର ମିଶି ସମଗ୍ର ବିଶ୍ୱରେ ଏକ ଅପୂର୍ବ ଶବ୍ଦ-ରାଜ୍ୟର ସୃଷ୍ଟି କରୁଅଛି, ସେହି ଶୁଭ ମୁହୂର୍ତ୍ତ ବାଗ୍‌ଦେବୀଙ୍କ ପୂଜାର ପ୍ରକୃତ ସମୟ । ବାହ୍ୟ ପ୍ରକୃତି ଯେତେବେଳେ ଶବ୍ଦମୟୀ ; ବାହ୍ୟ-ପ୍ରକୃତିରେ ଯେଉଁ ଭାବର ବିକାଶ, ଅନ୍ତଃପ୍ରକୃତି ମଧ୍ୟ ସ୍ୱତଃ ସେହିଭଳି ଭାବମୟୀ ହୋଇଥାଏ । ଯେତେବେଳେ ସନ୍ଧ୍ୟା-ଶିଶିର-ସିକ୍ତ ଅମଳ-ଧବଳ-ପ୍ରସୂନରାଜି ଶୀତାଂଶୁର ଅଂଶୁମାଳା ବକ୍ଷରେ ଧାରଣ କରି ହସି ହସି ଜଗଦ୍‌ବ୍ୟାପିନୀ ଏକ ଅପୂର୍ବ ଶୁଭ୍ର ସୁଷମାର ସୃଷ୍ଟିକରେ, ସେତେବେଳେ

"ମୁକ୍ତାକାନ୍ତନିଭାଂ ଦେବୀଂ ଜ୍ୟୋତ୍ସ୍ନାଜାଲବିକାଶିନୀମ୍ ।
ମୁକ୍ତାହାରଯୁତାଂ ଶୁଭ୍ରାଂ ଶଶିଖଣ୍ଡବିମଣ୍ଡିତାମ୍ ।"

ଦେବୀଙ୍କର ପୂଜା ହୋଇଥାଏ । ଧରିତ୍ରୀ ନିଜର ଜଡ଼ଭାବ ପରିତ୍ୟାଗ କରି ନବୀନ ଉଦ୍ୟମରେ ଉତ୍ତେଜିତା ହୋଇଉଠିଲେ ବୀଣାପାଣିଙ୍କର ପୂଜା ହୁଏ । ବସନ୍ତ-ପଞ୍ଚମୀ ଦିନ ପ୍ରକୃତିର ହରିଦ୍-ବନାନ୍ତରାଳ-ଶାୟିତ ମଳୟାନିଳ ସମ୍ଭୋଗ କରୁଁ କରୁଁ ମଧୁର ଏବଂ ମୃଦୁଳ ଭାବ-ସ୍ରୋତର ପ୍ରଥମ ଉଚ୍ଛ୍ୱାସ ଯୋଗୁଁ ସମସ୍ତେ ଶ୍ୱେତ-ପଦ୍ମାସନା ବାଗ୍‌ଦେବୀଙ୍କ ଆରାଧନା କରନ୍ତି ।

ଶିଶୁର ମନୋବୃତ୍ତି ଯେତେବେଳେ ନବୋଦ୍ଭିନ୍ନ କଳିକାବତ୍ କେବଳ ବିକାଶପଥରେ ଅଗ୍ରସର—ଯେପରି ଶୁଭ୍ରା ନବମଲ୍ଲିକା ସ୍ତରେ ସ୍ତରେ ଅମଳ-ଧବଳଦଳମାଳା ଅଳ୍ପେ ଅଳ୍ପେ ବିକଶିତ କରିବାର ଉପକ୍ରମ କରୁଅଛି—ଜୀବନର ସେହି ସ୍ନିଗ୍ଧୋଜ୍ଜ୍ୱଳ ସମୟରେ, ଶିଶୁହୃଦୟ ବ୍ୟାକୁଳତା-ବିହ୍ୱଳ ହୋଇ ବିଦ୍ୟାଦାୟିନୀ ବାଣୀଙ୍କ କୃପାଭିକ୍ଷା କରେ । ପୁଣି ଏହି ବାଣୀଙ୍କ ସାଧନାରେ ସିଦ୍ଧିଲାଭ କରି ଆଦିକବି ବାଲ୍ମୀକି କବୀନ୍ଦ୍ର-ପଦବୀ ଲାଭ କରିଥିଲେ । ସେହି

ଚତୁର୍ମୁଖ-କଣ୍ଠ-ଶୃଙ୍ଗାଟକ-ବିହାରିଣୀ ସରସ୍ୱତୀ ଭାରତୀୟ କବିକୁଳର ସର୍ବପ୍ରଧାନ ଆରାଧ୍ୟ ଦେବତା । ଏହି ବାକ୍ୟଦେବୀ ଏବଂ ବିଦ୍ୟା-ଦେବୀଙ୍କର ସୂକ୍ଷ୍ମ ସୂଚୀ ଏବଂ ବାକ୍‌ତତ୍ତ୍ୱତନ୍ତୁର ବିଚିତ୍ର ବିନ୍ୟାସଯୋଗୁଁ ଅନନ୍ତ ଜଗତ୍‌ପଟର ନିର୍ମାଣକାର୍ଯ୍ୟ ସୁକୌଶଳରେ ସମ୍ପନ୍ନ ହୁଏ । କାଳିଦାସ, ଭବଭୂତି ଏବଂ ଶ୍ରୀହର୍ଷ ପ୍ରଭୃତି ମହାକବିମଣ୍ଡଳୀ ଏହି ବାଗ୍‌ଦେବୀଙ୍କ ଆରାଧନାରେ ସିଦ୍ଧମନୋରଥ ହୋଇ ପୀୟୂଷ-ନିସ୍ୟନ୍ଦିନୀ-କବିତା-କୁଞ୍ଜର ସୃଷ୍ଟି କରି ଯାଇଅଛନ୍ତି । କଣାଦ, ଗୌତମ କଣ୍ୱ, ପାଣିନି, କାତ୍ୟାୟନ ପ୍ରଭୃତି ମହର୍ଷିଗଣ ଜଗତରେ ଜ୍ଞାନର ସ୍ନିଗ୍ଧ-ରଶ୍ମି ବିକୀର୍ଣ୍ଣ କରି ଯାଇଅଛନ୍ତି । ଅତଏବ ବସନ୍ତ-ପଞ୍ଚମୀ, ତୁମ୍ଭର ଶୁଭ୍ରାହରେ ବାଣୀଙ୍କର ଆରାଧନା କରି ଯେପରି କୃତାର୍ଥ ହେଉଥାଉଁ, ଏହି ଶିକ୍ଷା ଭିକ୍ଷା ଦେଉଥାଅ । ଏ ଦୀନହୀନ ଉତ୍କଳର ଘରେ ଘରେ ତୁମର ଅଭ୍ୟର୍ଥନା ହେଉ । ହେ ଶାରଦେନ୍ଦୁବଦନା, ଅରବିନ୍ଦାସନା ବାଣି ! ତୁମ୍ଭର କଞ୍ଚିତ୍ କରୁଣାକଲ୍ଲୋଳିନୀ ମନୁଷ୍ୟ-ସମାଜର ଚିରନିଖାତ ପୂତିଗନ୍ଧକୁ ସହଜରେ ଅପସାରିତ କରିଥାଏ । ଏହି ଦାରିଦ୍ର୍ୟନିପୀଡ଼ିତ ଉତ୍କଳର ଲଲାଟଲିଖିତ ନିଷ୍ଠୁରାକ୍ଷର ତୁମ୍ଭର କରୁଣାପାଙ୍ଗଦୃଷ୍ଟି ବ୍ୟତୀତ ଅପସୃତ ହେବାର ନୁହେ । ମାତଃ ବାଗୀଶ୍ୱରି ! ଏତିକ କେବଳ ଶ୍ରୀଚରଣରେ ଗୃହୀତ ହେଉ ।

କେନ୍ଦ୍ରାପଡ଼ା ବଳଦେବଜୀଙ୍କ ନିକଟରେ ଏହି ବସନ୍ତ-ପଞ୍ଚମୀ ଦିନ କାଞ୍ଚୀ-ଯୁଦ୍ଧଯାତ୍ରା ଏବଂ ମାଣିକ୍ୟ ଗଉଡୁଣୀର ଅଭିନୟ ଉତ୍କଳରେ ଗୋଟିଏ ପ୍ରଧାନ ଦ୍ରଷ୍ଟବ୍ୟ ବିଷୟ । ଯେଉଁମାନେ ଏହା ଦେଖି ନାହାନ୍ତି, ସେମାନେ ଥରେ ଦେଖି ଚରିତାର୍ଥ ହେଉନ୍ତୁ ।

ମାଘସପ୍ତମୀରେ କୋଣାର୍କ—ଚନ୍ଦ୍ରଭାଗାର ଓ ଖଣ୍ଡଗିରିର ମେଳା ଉତ୍କଳପ୍ରସିଦ୍ଧ । ଏହି ଦିନ ପ୍ରାତଃକାଳରେ ସମୁଦ୍ରକୂଳରେ ପୁଞ୍ଜୀଭୂତ ଦୂରାଗତ ଯାତ୍ରୀମଣ୍ଡଳୀର ଚକ୍ରବାଳରେଖା ଉପରେ

ସୂର୍ଯ୍ୟୋଦୟ ଦର୍ଶନ ଅତୀବ ବିସ୍ମୟକର ଏବଂ କୌତୂହଳଜନକ ହୋଇଥାଏ । ସୂର୍ଯ୍ୟୋଦୟ ଦେଖି ସମସ୍ତେ କହନ୍ତି, "ସୂର୍ଯ୍ୟ କଅଁଳା ବାଲୁଙ୍ଗା ପରି ଦେଖାଯାଉଛି ।" ଉଦୟମାନ ସୂର୍ଯ୍ୟାଲୋକରେ ସମୁଦ୍ରର ତପ୍ତକାଞ୍ଚନସଦୃଶ ଶୋଭା ସନ୍ଦର୍ଶନ କରି ପ୍ରତ୍ୟେକ ଯାତ୍ରୀ ମୋହିତ ହୁଅନ୍ତି ଏବଂ ବେଳାଭୂମିରୁ ସମୁଦ୍ରଫେଣ, ଶୁକ୍ତି ଓ ରବଣ ଲେଙ୍ଗା (ଏକ ପ୍ରକାର ସାମୁଦ୍ରିକ ଜୀବ) ଗୋଟାଇ ସ୍ମାରକଚିହ୍ନ-ସ୍ୱରୂପ ନେଇ ଆସନ୍ତି । କ୍ଷୁଦ୍ର କର୍କଟଶିଶୁର ଇତସ୍ତତଃ ଭ୍ରମଣ ଓ ବସା ପ୍ରତ୍ୟହ ଫେନିଳ ତରଙ୍ଗଦ୍ୱାରା ବିଧୌତ ହୋଇଯିବାର କମନୀୟ ଦୃଶ୍ୟ ଏଠାରେ ସୁଲଭ ।

ଖଣ୍ଡଗିରିର ଗୁପ୍ତଗଙ୍ଗାରେ ସ୍ନାନ ମାଘସପ୍ତମୀ ମେଳାର ପ୍ରଧାନ ଉଦ୍ଦେଶ୍ୟ । ଏଠାରେ ଯୁଗାନ୍ତର ପୂର୍ବର ଜୈନକୀର୍ତ୍ତିପ୍ରସୂତ ଗୁମ୍ଫାସମୂହ ଦେଖି ସମସ୍ତଙ୍କ ହୃଦୟରେ ପ୍ରତ୍ନତତ୍ତ୍ୱର ଅସ୍ପଷ୍ଟ ଆଭାସ ବିକଶିତ ହୁଏ । ଏହିସବୁ କୀର୍ତ୍ତିର ପ୍ରାଚୀନ ଶିଳ୍ପୀମାନେ ସୁର-ଲୋକରୁ ସେମାନଙ୍କର ପ୍ରଶଂସା ଧ୍ୱନି ଶୁଣି ସମବେତ ନରନାରୀଙ୍କର ମଙ୍ଗଳ କାମନା କରୁଥାନ୍ତି କି ନାହିଁ, କିଏ କହିବ ?

ମାଘସପ୍ତମୀ ଉତ୍ତାରୁ ଶିବରାତ୍ରି—କୃଷ୍ଣପକ୍ଷର ଚତୁର୍ଦ୍ଦଶୀ; ନିବିଡ଼ ଅନ୍ଧକାରରେ ବିଶ୍ୱଚରାଚର ଆବୃତ । ଅନ୍ଧକାରରାଶି ଘନୀଭୂତ ହୋଇ ଯେପରି ବିଶ୍ୱସଂସାରରେ ଅନ୍ଧକାରର ରାଜ୍ୟ ପ୍ରତିଷ୍ଠିତ କରିଅଛି । ତମିସ୍ରା ରଜନୀରେ ଏକ ପ୍ରକାର ଅନିର୍ବ-ଚନୀୟ ସୌନ୍ଦର୍ଯ୍ୟ ବିକଶିତ ହୁଏ । ପ୍ରଫୁଲ୍ଲତା, ଆଶା ଓ ସୁଖ-ପ୍ରବୃତ୍ତି ଯାହା ହୃଦୟରେ ଅଧିକ, ସେ ଆଲୋକଭକ୍ତ । ଯାହାଙ୍କ ହୃଦୟ ବିଷାଦ, ନିରାଶା ଏବଂ ଅତୃପ୍ତି ଉପାଦାନରେ ଗଠିତ, ସେ ଅନ୍ଧକାରର ଉପାସକ । ଅମାବାସ୍ୟାର ନିଶୀଥକାଳରେ ଘନୀଭୂତ ଅନ୍ଧକାରସ୍ତୂପ ମଧ୍ୟରେ ବସି ମନୁଷ୍ୟ ଯେତେବେଳେ ଅନନ୍ତ

ନୀଳିମାମୟ-ଶୂନ୍ୟଦେଶରେ ବିଗନ୍ତପ୍ରସାରିତ ଗାଢ଼ନୀଳିମାମୟ ଗଗନପଟରେ ଅନନ୍ତ ନକ୍ଷତ୍ରପୁଞ୍ଜର ଜ୍ୟୋତିର୍ମୟୀ ଶୋଭା ଅବଲୋକନ କରେ, ସେତେବେଳେ ଏକପ୍ରକାର ଅବକ୍ତବ୍ୟ ଭାବୋଚ୍ଛ୍ୱାସରେ ମନଃପ୍ରାଣ ଉଚ୍ଛଳ ପଡ଼େ । ସୃଷ୍ଟିରହସ୍ୟର ଗାମ୍ଭୀର୍ଯ୍ୟର ପରିଚୟ ଯଥାର୍ଥରୂପେ ତମୋମୟୀ ରଜନୀ । ପ୍ରକୃତିଗ୍ରନ୍ଥର ସ୍ରଷ୍ଟା ଅନନ୍ତ-ନକ୍ଷତ୍ରରୂପ ଜ୍ୟୋତିର୍ମୟ ଜ୍ୱଳନ୍ତଅକ୍ଷରାବଳୀରେ ଭ୍ରାନ୍ତ ପାର୍ଥିବ-ଦ୍ୱନ୍ଦ୍ୱ-କ୍ଳିଷ୍ଟ ମାନବ ନିମିତ୍ତ ଅନନ୍ତ ଜୀବନର ଆଶା ଲେଖି ରଖିଅଛନ୍ତି । ଏହି ଜ୍ଞାନ ସ୍ୱଭାବତଃ ମନୁଷ୍ୟ ହୃଦୟରେ ପ୍ରତିଷ୍ଠିତ ହୋଇଥାଏ । ଏହି ଶିବରାତ୍ରି ଉତ୍ସବର ଆଲୋକମାଳା ପୁରୀ ଲୋକନାଥଙ୍କ ଲଙ୍କା-ଆମ୍ର-କୁଞ୍ଜ-ପରିଶୋଭିତ ସିକତା-ଭୂମିଠାରେ, ଶ୍ୱାପଦ-ସଙ୍କୁଳ; ବନସ୍ପତିଗହନ କପିଳାସ ଏବଂ ମହାବିନାୟକ ପର୍ବତର ଗାତ୍ରରେ ଶୋଭା ପାଉଅଛି । ଶାସ୍ତ୍ରକାର କହିଛନ୍ତି, "ଜ୍ଞାନାନ୍ମୁକ୍ତିଃ"—ଜ୍ଞାନଦ୍ୱାରା ମୁକ୍ତିଲାଭ ହୁଏ । ଜ୍ଞାନ ହିଁ ହୃଦୟରେ ଅମାନିଶାର ଅନ୍ଧକାର ବିଲୁପ୍ତ କରି ଆପଣାର ପ୍ରଭାବ ପ୍ରତିଷ୍ଠିତ କରିପାରେ । ଅନ୍ଧକାର-ସ୍ତବ୍ଧ ରଜନୀ ଶିବୋପାସନାର ପ୍ରକୃଷ୍ଟ ସମୟ । ଏହି ଅନ୍ଧକାରରେ ଜ୍ଞାନବର୍ତ୍ତିକା ପ୍ରଜ୍ୱଳିତ କରି ( ଜାଗର-ଦୀପ ଜାଳି ) ପ୍ରତି ପ୍ରହରରେ ସେହି 'ସତ୍ୟଂ ଶିବଂ ସୁନ୍ଦରଂ'ଙ୍କୁ ଆରାଧନା କରିବାର ପ୍ରଣାଳୀ ଅତିଶୟ ହୃଦୟସ୍ପର୍ଶୀ ।

ବସନ୍ତ ! ତୁମ୍ଭ ରାଜତ୍ୱରେ କେତେ ପର୍ବ ଉତ୍କଳରେ ଭିନ୍ନ ଭିନ୍ନ ସ୍ଥାନରେ ଅନୁଷ୍ଠିତ ହୋଇ ସେହି ସବୁ ସ୍ଥାନର ଶୋଭା ସମ୍ପାଦନ କରେ ! ପୁରୀରୁ ଆରମ୍ଭ କରି ପ୍ରାୟ ପ୍ରତ୍ୟେକ ପ୍ରଧାନ ସ୍ଥାନ ଓ ଗ୍ରାମରେ ଦୋଳଯାତ୍ରା ଉତ୍ସବ—ମୃଦଙ୍ଗ କରତାଳ ଧ୍ୱନିରେ ଦିଗନ୍ତ ପ୍ରକମ୍ପିତ କରି "ଠାକୁର-ବିମାନ-ମେଳନ"

ଘୋଷଣା କରୁଥାଏ । ସହସ୍ର ସହସ୍ର ନରମୁଣ୍ଡ ଫଗୁରାଗରଞ୍ଜିତ ହୋଇ ଆସ୍ୟକମଳ ଉଲ୍ଲାସିତ ଏବଂ ପ୍ରଫୁଲ୍ଲରାଗରଞ୍ଜିତ ଦିଶୁଥାଏ । ସେହିପରି ଯାଜପୁରର ବୈତରଣୀ ତଟରେ ବାରୁଣୀ ମେଳା ଏବଂ ଭୁବନେଶ୍ୱରର ଅଶୋକାଷ୍ଟମୀ ମେଳାରେ ଅସଂଖ୍ୟ ନରନାରୀଙ୍କ ସମାଗମର ବିଶେଷ ଦୃଶ୍ୟ ! ଅଶୋକାଷ୍ଟମୀରେ ଶୋକନିବାରଣାର୍ଥ ଅଶୋକକଳିକା ସେବନରେ ସମସ୍ତଙ୍କର ଆଗ୍ରହପୂର୍ଣ୍ଣ ଉଚ୍ଛ୍ୱାସ ସଙ୍ଗେ ସଙ୍ଗେ "ବସନ୍ତଗୁଣ୍ଡିଚ୍ଚ"ରେ ଭୁବନେଶ୍ୱରଙ୍କ ରଥ ଟାଣିବାର ତତ୍ପରତା ମିଶି ଉଲ୍ଲାସର ପ୍ରବଳ ବିକାଶ ଦେଖାଇଦିଏ ।

ମଧୁ ପାର୍ବଣ ମଧ୍ୟରେ ରାମନବମୀ ଯାତ୍ରା ପ୍ରଧାନ ପ୍ରଧାନ ସ୍ଥାନରେ ଅନୁଷ୍ଠିତ ହୁଏ । ଏହା ଉପରୁ ଦମନକ ଚତୁର୍ଦ୍ଦଶୀ । ଏହି ଯାତ୍ରା କେବଳ ପୁରୀ ଅଞ୍ଚଳରେ ପ୍ରସିଦ୍ଧ । ଦସ୍ପା ନଦୀକୂଳ ଘୋରଡ଼ିହା ଗ୍ରାମରେ ଅନେକ ଦିନରୁ ଏହା ପ୍ରସିଦ୍ଧି ଲାଭକରିଅଛି ।

ବସନ୍ତର ଚୈତ୍ର ଶୁକ୍ଳ ଚତୁର୍ଦ୍ଦଶୀରେ ତାଳଚେର ରାଜ୍ୟ ଗୋପାଳପ୍ରସାଦ ଗ୍ରାମରେ ହିଙ୍ଗୁଳାଦେବୀଙ୍କର ଯାତ୍ରା ଉତ୍କଳପ୍ରସିଦ୍ଧ । ଗୋପାଳପ୍ରସାଦ ଗ୍ରାମରେ ପଥରକୋଇଲାର ଖଣି ଥିବାରୁ, ସେହି ଖଣିରେ ଅଗ୍ନି ସଂଯୁକ୍ତ ହୋଇ, ସ୍ୱତଃ ଉଦ୍ଭୂତ ହେଲାପରି ଦିଶେ । ଏଣୁ ସାଧାରଣ ଲୋକେ ଏହାକୁ ହିଙ୍ଗୁଳାଦେବୀଙ୍କର ଅଗ୍ନି କହିଥାନ୍ତି । ଦେବୀଙ୍କ ପୂଜା ସଙ୍ଗେ ସଙ୍ଗେ ଏହି ଅଗ୍ନିରେ ଜୀବନ୍ତ ଛାଗ, ମେଷ ଓ କୁକ୍କୁଟ ପ୍ରଭୃତି ନିକ୍ଷେପ ପ୍ରଥା ବହୁକାଳରୁ ଚଳି-ଆସୁଅଛି । ଏଣୁ ଏହାର ସମାଲୋଚନାରେ ଆମ୍ଭମାନଙ୍କର ଅଧିକାର ନ ଥିଲେହେଁ ଏତିକି କହିବାକୁ ବାଧ୍ୟ ଯେ, ଏହା ଗୋଟିଏ ନିତାନ୍ତ ନିଷ୍ଠୁର ପ୍ରଥା । ଏହି ଯାତ୍ରାରେ ବାମଣ୍ଡା, ଲହଡ଼ା, ଅନୁଗୁଳ, ଢେଙ୍କାନାଳ ପ୍ରଭୃତି ସ୍ଥାନମାନଙ୍କରୁ ୮।୧୦ ହଜାର ନରନାରୀ ରୁଣ୍ଡ ହୁଅନ୍ତି ।

ବସନ୍ତ ! ପୁରାତନକୁ ବିସର୍ଜନ କରି ତାହା ସ୍ଥଳରେ ନୂତନର ଆନୟନ ଋତୁର ଚିରନ୍ତନ ଅଭ୍ୟାସ । ପ୍ରକୃତିର ସମ୍ପଦଗୁଡ଼ିକର ପୁରାତନାଂଶ ଋତୁଟି ନେଇ ନୂତନ ପ୍ରଦାନ କରିଥାଏ । ପ୍ରାଣି-ରାଜ୍ୟରେ ମଧ୍ୟ ଋତୁର ଅପୂର୍ବ ଲୀଳାର ବ୍ୟତିକ୍ରମ ନାହିଁ ପରା ? ଋତୁର ଆଗମନରେ ସର୍ପମାନେ ନିଜର ଖୋଳ ପରିତ୍ୟାଗ କରନ୍ତି, ଗୋକ୍ଷୁର, ଚମ୍ପ ପ୍ରଭୃତି ବିଷାକ୍ତ ଭୁଜଙ୍ଗସମୂହ ନବକଞ୍ଚୁକବିଭୂଷିତ ହୋଇ ସ୍ୱୀୟ ସୌନ୍ଦର୍ଯ୍ୟ ବୃଦ୍ଧି ସଙ୍ଗେ ସଙ୍ଗେ ଉଦ୍ଦାମ ଓ ଭୀଷଣ ହୁଅନ୍ତି ।

———

( ଲେଖକଙ୍କ 'ଉତ୍କଳର ଋତୁଚିତ୍ର' ପୁସ୍ତକରୁ ଗୃହୀତ )

# ଓଡ଼ିଆ ଜାତି କିଏ ?

## ୰ ପଣ୍ଡିତ ଗୋପବନ୍ଧୁ ଦାଶ

ଓଡ଼ିଆ ଜାତି କିଏ ? ପୃଥିବୀରେ ସ୍ଥାନ ଅନୁସାରେ ଜାତିର ନାମକରଣ ହୋଇଥିବା ପ୍ରାୟ ସର୍ବତ୍ର ଦେଖାଯାଏ । ଏକ ସ୍ଥାନରେ ବାସ କରୁଥିବା ଲୋକମାନଙ୍କ ମଧ୍ୟରେ ସ୍ୱତଃ ମାୟା ମମତା ଜନ୍ମେ । ସେମାନଙ୍କର ଆଶା, ଅଭିପ୍ରାୟ, ଭାଗ୍ୟ ଓ ଭବିଷ୍ୟତ୍ ଏକ ଶ୍ରେୟଃ ସ୍ୱାର୍ଥରେ ଆବଦ୍ଧ । ସେମାନଙ୍କର କର୍ମଭୂମି ଏକ ଏବଂ ଅଭିନ୍ନ । ସେହି ଭୂମି ସେମାନଙ୍କ ପକ୍ଷରେ ପବିତ୍ର ଏବଂ ପ୍ରେମମୟ କ୍ଷେତ୍ର । ଏହା ସେମାନଙ୍କର ଜନ୍ମଭୂମି; ସେମାନଙ୍କ ଦୃଷ୍ଟିରେ 'ସ୍ୱର୍ଗାଦପି ଗରୀୟସୀ' । ସୁତରାଂ ଯେଉଁମାନେ ଏପରି ଏକ ନିର୍ଦ୍ଦିଷ୍ଟ ଭୂଖଣ୍ଡରେ ବାସକରନ୍ତି, ସେମାନେ ଏକ ଜାତି ଏବଂ ସେହି ଭୂଖଣ୍ଡର ନାମାନୁସାରେ ନାମିତ ହୁଅନ୍ତି । ଏହି ପ୍ରାକୃତିକ ବିଧାନରେ ଯେଉଁମାନେ ଉତ୍କଳ ବା ଓଡ଼ିଶାରେ ସମାନ ଆଶା, ଆକାଙ୍କ୍ଷା ଧରି ଜନ୍ମ ମରଣରେ, ସମାନ ଶ୍ରେୟଃ ସ୍ୱାର୍ଥରେ ବିଜଡ଼ିତ, ସେମାନେ ସମସ୍ତେ ଓଡ଼ିଆଜାତି ।

କେହି କେହି ପୁଣି ଉତ୍କଳ ଓ ଓଡ଼ିଆ ମଧ୍ୟରେ ପାର୍ଥକ୍ୟ ଦେଖନ୍ତି । ଯଥାର୍ଥରେ ଏ ଉଭୟ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ କିମ୍ବା ରହିବା ଉଚିତ ନୁହେଁ । ବଙ୍ଗଳାର ହୁଅନ୍ତୁ ବା ପଞ୍ଜାବର ହୁଅନ୍ତୁ, ମାରବାରର ହୁଅନ୍ତୁ ବା ମାନ୍ଦ୍ରାଜର ହୁଅନ୍ତୁ, ହିନ୍ଦୁ ହୁଅନ୍ତୁ ବା ମୁସଲମାନ ହୁଅନ୍ତୁ, ଆର୍ଯ୍ୟ ହୁଅନ୍ତୁ ବା ଆଦିମ ଅଧିବାସୀ ହୁଅନ୍ତୁ, ଯେ ଉତ୍କଳ ବା ଓଡ଼ିଶା ସଙ୍ଗେ ଆପଣାର ସମସ୍ତ ସ୍ୱତ୍ୱ ଓ ସ୍ୱାର୍ଥ ମିଳାଇ ଦେଇଅଛନ୍ତି, ଓଡ଼ିଶା ତାଙ୍କର ଏବଂ ସେ ଓଡ଼ିଶାର । ଆଜକାଲି ସମୟରେ ଏକ ସ୍ଥାନରେ ଯେ କେବଳ ଏକ ପ୍ରକାର

ଲୋକ ରହିବେ ତାହା ଅସମ୍ଭବ । ପୃଥିବୀରେ ଏପରି ପ୍ରାୟ ସ୍ଥାନ ନାହିଁ, ଯେଉଁଠାରେ ଭିନ୍ନ ଭିନ୍ନ ଜାତି ବା ସମାଜର ଲୋକ ଏକତ୍ର ବାସ କରୁ ନାହାନ୍ତି । ମାତ୍ର ସେମାନଙ୍କର ସ୍ୱାର୍ଥର କେନ୍ଦ୍ର ଏକ । ତେଣୁ କାଳକ୍ରମେ ଏକୀଭୂତ ହେବା ସେମାନଙ୍କ ପକ୍ଷେ ସ୍ୱାଭାବିକ ଏବଂ ଶ୍ରେୟସ୍କର । ଆମେରିକାର ୟୁନାଇଟେଡ୍ ଷ୍ଟେଟସ୍ ଏହି ଜାତୀୟତା ଗଠନ ବିଷୟରେ ଉଦାହରଣ ସ୍ଥଳ ।

ଭଗବାନ ଏକ ଏକ ଜାତି ନିମନ୍ତେ ସ୍ୱତନ୍ତ୍ର ଏକ ଏକ ଦେଶ ନିରୂପଣ କରିଥିଲା ପରି ଜଣାଯାଏ; ମାତ୍ର ଏକ ଦେଶ ବା ପ୍ରଦେଶର ଜାତିବିଶେଷ କାଳକ୍ରମେ ଅନ୍ୟ ଜାତିର ସଂସ୍ରବରେ ଆସିଲେ ସେହି ଦେଶର ଭାଷା, ଆଶା, ଶିକ୍ଷା, ସଭ୍ୟତାରେ ପରିବର୍ତ୍ତନ ଘଟିବା ସ୍ୱାଭାବିକ । ଏହି ନବପରିବର୍ତ୍ତିତ ସଭ୍ୟତା ସେ ଦେଶର ତଥା ସେ ଦେଶର ନୂତନ ଏବଂ ପୁରାତନ ଅଧିବାସୀଙ୍କର ସଭ୍ୟତା ହୁଏ ।

ପ୍ରାକୃତିକ ଅବସ୍ଥାନ ଦ୍ୱାରା ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ । ଆଜିକାଲି ରାଜନୈତିକ ଓଡ଼ିଶା ନୁହେଁ, ସ୍ୱାଧୀନ ଓଡ଼ିଶା ଯେଉଁ ପର୍ଯ୍ୟନ୍ତ ବିସ୍ତୃତ ଥିଲା, ଗଙ୍ଗାନଦୀଠାରୁ ଗୋଦାବରୀ ପର୍ଯ୍ୟନ୍ତ, ମହୋଦଧିଠାରୁ ମଧ୍ୟପ୍ରଦେଶର ପର୍ବତଶ୍ରେଣୀ ପର୍ଯ୍ୟନ୍ତ ସେହି ବିଶାଳରାଜ୍ୟ ଯେ ଏକ ସ୍ୱତନ୍ତ୍ର ପ୍ରାକୃତିକ ଭୂଖଣ୍ଡ ଏହା ଦେଖିବା-ମାତ୍ରେ ଯେ କେହି ସ୍ୱୀକାର କରିବାକୁ କୁଣ୍ଠିତ ହେବେ ନାହିଁ । ଓଡ଼ିଆମାନେ ଏଠାରେ ବାସ କରି ନିଜର ଏକ ସ୍ୱତନ୍ତ୍ର ସଭ୍ୟତା ଗଠନ କରିଥିଲେ । କାଳକ୍ରମେ ଅନ୍ୟାନ୍ୟ ଧର୍ମ ଓ ଜାତିର ଲୋକେ ସ୍ଥାନାନ୍ତରରୁ ଆସି ସେମାନଙ୍କ ସଙ୍ଗରେ ଏକତ୍ର ବାସ କରିଅଛନ୍ତି । ଏହି ବିଭିନ୍ନ ଶ୍ରେଣୀର ସମ୍ମିଳନରେ ଆଜି ଓଡ଼ିଆ ସଭ୍ୟତା ପ୍ରଭାବିତ ହୋଇଅଛି, ଏହା ବୋଲିବା ବାହୁଲ୍ୟ ।

ଭାଇ ଉତ୍କଳବାସୀ, ତୁମ୍ଭେ ଯେ ହୁଅ—ବଙ୍ଗାଳୀ, ଓଡ଼ିଆ, ତେଲଙ୍ଗା, ହିନ୍ଦୁସ୍ଥାନି, କୋନ୍ଧ, ହିନ୍ଦୁ, ଖ୍ରୀଷ୍ଟାନ, ମୁସଲମାନ ଯେ ହୁଅ, ଉତ୍କଳଭୂମି ତୁମକୁ ଆପଣା ଶରୀରରେ ବହି ତୁମର କେତେ ଅଳି ଅର୍ଦ୍ଦଳି ସହୁଛନ୍ତି । ତୁମର ହେଉ ବା ତୁମର ଶିଶୁସନ୍ତାନ-ମାନଙ୍କର ହେଉ, ଏହା ଶୈଶବର ଲୀଳାଭୂମି, ଯୌବନର କର୍ମକ୍ଷେତ୍ର, ବାର୍ଦ୍ଧକ୍ୟର ବିଶ୍ରାମ ସ୍ଥାନ ଏବଂ ଅନ୍ତିମକାଳର ଆଶ୍ରୟ । ଏ ଦେଶକୁ ଏପରି ଭାବରେ ଯେବେ ଗ୍ରହଣ କରୁଥାଅ, ଦେଶାନୁ-ରାଗରୁ ପବିତ୍ର-ସୂତ୍ରରେ ଏ ଦେଶର ଅନ୍ୟାନ୍ୟମାନଙ୍କ ସଙ୍ଗେ ସମ୍ବନ୍ଧ ଆବଦ୍ଧ କରିଥାଅ ଏବଂ ଏ ଦେଶର ଜାତୀୟଭାଷା, ଶିକ୍ଷା ଓ ସଭ୍ୟତାର ଆତ୍ମସମର୍ପଣ କରିଥାଅ, ତେବେ ଏ ଦେଶ ଅନୁସାରେ ତୁମର ଜାତି, ଏ ଦେଶର ଇତିହାସ ଓ ସଭ୍ୟତା ତୁମର, କାରଣ ଏ ଦେଶର ଅତୀତ ଇତିହାସର ଫଳ ଏବେ ତୁମ୍ଭେ ଭୋଗ କରୁଅଛ ଏବଂ ଏହାର ବର୍ତ୍ତମାନ ଓ ଭବିଷ୍ୟତ ଗଠନରେ ତୁମ୍ଭେ ଯୋଗ ଦେଉଛ । ସୁତରାଂ ତୁମ୍ଭେ ଓଡ଼ିଆ, ତୁମ୍ଭେ ଉତ୍କଳ; ଉତ୍କଳ ସମ୍ମିଳନୀରେ ତୁମ୍ଭ ନିମନ୍ତେ ପ୍ରଶସ୍ତସ୍ଥାନ ରହିଅଛି । ଉତ୍କଳମାତା ମଧ୍ୟ ତୁମର ସେବା ପୂଜା ଗ୍ରହଣ କରିବାକୁ ସତୃଷ୍ଣନୟନରେ ଅନାଇ ରହିଛନ୍ତି ।

ଭାରତରେ ଜାତୀୟତାଗଠନର ନାନା ଅନ୍ତରାୟ ରହିଅଛି । ନାନା ଭାଷା, ନାନା ଧର୍ମ, ନାନାବିଧ ଆଚାର ବ୍ୟବହାର ଯୋଗୁଁ ଭାରତୀୟମାନଙ୍କ ମଧ୍ୟରେ ଏତେ ପାର୍ଥକ୍ୟ ରହିଅଛି ଯେ ଭାରତ ଜାତୀୟତା ଏକାବେଳକେ କେହି କେହି ଅସମ୍ଭବ [illegible] କରନ୍ତି; ସେଥିରେ ପୁଣି କୌଣସି ଏକ ପ୍ରଦେଶ ବା ଅଞ୍ଚଳରେ ସେହି ପ୍ରକାର ଭେଦ ଘଟିଲେ ଭାରତ ଜାତୀୟ ସମସ୍ୟା ଅଧିକ ଦୁଃସାଧ୍ୟ ଏବଂ ଜଟିଳ ହେବ । ଏକ ପ୍ରଦେଶରେ ବାସକରି ସମସ୍ତ ଶ୍ରେୟଃ ସ୍ୱାର୍ଥ ମାୟାମମତା ତାହା ସଙ୍ଗେ ମିଶାଇ

ନ ଦେଇ ଯେଉଁମାନେ ସ୍ୱତନ୍ତ୍ର ସ୍ୱାର୍ଥ ଏବଂ ସ୍ୱତନ୍ତ୍ର ଦାବୀ କରନ୍ତି, ସେମାନେ ଯେ ପ୍ରଦେଶରେ ଉନ୍ନତିପଥରେ କଣ୍ଟକ । ନିଜର ସଙ୍କୀର୍ଣ୍ଣ ଆପାତ ସ୍ୱାର୍ଥ ଲାଗି ଅନ୍ୟ ଜାତିର ଉନ୍ନତିରେ ଅନ୍ତରାୟ ଏବଂ ଏକ ପ୍ରଦେଶ ମଧ୍ୟରେ ସ୍ୱାର୍ଥର ଅନୈକ୍ୟ ଘଟାଇବାଦ୍ୱାରା ଭାରତର ସମୂହ କଲ୍ୟାଣଶୂନ୍ୟ, ସୁତରାଂ ପରିଣାମରେ ଆତ୍ମଘାତୀ । ଅତଏବ ପ୍ରାକୃତିକ ଓଡ଼ିଶାରେ ଯେଉଁ ବିଭିନ୍ନ ଶ୍ରେଣୀ ସମ୍ପ୍ରଦାୟର ଲୋକେ ବାସକରି ଏହାକୁ ନିଜ ଦେଶ ବୋଲି ଗ୍ରହଣ କରିଅଛନ୍ତି, ସେ ସମସ୍ତଙ୍କ ସମ୍ମିଳନୀରେ ଯେଉଁ ଓଡ଼ିଆଜାତି ସଗଠିତ, ତାହାରି ଜାତୀୟତା ବିକାଶ ସମ୍ମିଳନୀର ଉଦ୍ଦେଶ୍ୟ ।

ସେ ଯେଉଁ ଜାତିର ହୁଅନ୍ତୁ, ସେ ସର୍ବପ୍ରଥମେ ମନୁଷ୍ୟ, ଈଶ୍ୱରଙ୍କର ସନ୍ତାନ । ଏହି ସମତା ଏବଂ ଭ୍ରାତୃଭାବ ପ୍ରତ୍ୟେକ ଜାତିର ଧର୍ମଶାସ୍ତ୍ରରେ ପ୍ରତିପାଦିତ ହୋଇଅଛି ଏବଂ ଏହା ହିଁ ଜାତୀୟ ଜୀବନର ମୂଳମନ୍ତ୍ର ହେବା ଉଚିତ । ମାନବସମାଜ କ୍ରମେ ବଢ଼ିବାକୁ ଲାଗିଲା । ଭିନ୍ନ ଭିନ୍ନ ଭୂଖଣ୍ଡରେ ବିଭିନ୍ନ ଦଳର ମନୁଷ୍ୟ ବାସକରି ସେଠାରେ ସେମାନେ କେତେଗୁଡ଼ିଏ ସ୍ୱାତନ୍ତ୍ର୍ୟ ଲାଭ କଲେ । ଏହି ସ୍ୱାତନ୍ତ୍ର୍ୟ ସେମାନଙ୍କର ଜାତୀୟ ଚରିତ୍ର । ଏହି ଜାତୀୟ ଚରିତ୍ର ଛଡ଼ା ପୁଣି ବ୍ୟକ୍ତି-ବିଶେଷର କେତେଗୁଡ଼ିଏ ସ୍ୱତନ୍ତ୍ର ପ୍ରବୃତ୍ତି, ଅଭ୍ୟାସ, ଇଚ୍ଛା, ଅନୁରାଗ ଅଭିପ୍ରାୟ ରହିବା ସ୍ୱାଭାବିକ । ଆମ୍ଭେମାନେ ବ୍ୟକ୍ତିଗତ ଭାବରେ ବା ଜାତିଗତ ଭାବରେ ଯାହା କରୁଁ, ତାହା ମାନବ ଧର୍ମର ଅନୁକୂଳ ନ ହେଲେ, ଉଦାର ମାନବଭାବର ପରିପୋଷକ ନ ହେଲେ, ଆମ୍ଭ-ମାନଙ୍କର ଅକର୍ତ୍ତବ୍ୟ । ମାନବଆତ୍ମାର କ୍ରମେ ବିକାଶ ହେଉଅଛି, ମାନବସମାଜ କ୍ରମେ ବିଧାତାଙ୍କର ସୃଷ୍ଟି ନିୟମର ନୂତନ ଅଧ୍ୟାୟ ଫିଟାଉ ଅଛି, ମାନବଜୀବନରେ କ୍ରମେ ଭଗବାନଙ୍କର ଇଚ୍ଛା ଅଧିକରୁ ଅଧିକତର ଭାବରେ ପରିସ୍ଫୁଟ ହେଉଅଛି, ମାନବଜାତିର ଏହି

କ୍ରମୋନ୍ନତ ଓ ମାନବଧର୍ମର ଏହି ଅଭ୍ୟୁଦୟ ଫଳରେ ପ୍ରତ୍ୟେକ ଜାତିର ଉନ୍ନତି । ସୁତରାଂ ଉଦାର ମାନବିକତା ପ୍ରତ୍ୟେକ ଜାତୀୟ ଅନୁଷ୍ଠାନର ଲକ୍ଷ୍ୟ ହେବା ଉଚିତ । ଅନେକ କ୍ଷୁଦ୍ର ଜଳପ୍ରବାହର ମିଳନରେ ନଦୀର ଉତ୍ପତ୍ତି, ପୁଣି ଏହିପରି ଅନେକ ନଦୀ ମିଶି ମହାନଦୀରେ ପରିଣତ ଏବଂ ପରିଶେଷରେ ସମସ୍ତ ମହାନଦୀର ପ୍ରବେଶ ସମୁଦ୍ରରେ । ଆମ୍ଭମାନଙ୍କର ବ୍ୟକ୍ତିଗତ ଏବଂ ଜାତିଗତ ଆତ୍ମାର ପୂର୍ଣ୍ଣ ପରିଣତି ମାନବ ଆତ୍ମାର ମିଳନରେ । ପ୍ରତ୍ୟେକ ବ୍ୟକ୍ତିର କାର୍ଯ୍ୟ ଏପରି ହେବା ଉଚିତ ଯେ ସମସ୍ତ ବ୍ୟକ୍ତିଗତ କାର୍ଯ୍ୟର ସମଷ୍ଟିରେ ସମ୍ପୂର୍ଣ୍ଣ ଜାତିର କଲ୍ୟାଣ ସାଧିତ ହେବ; ପୁଣି ଭିନ୍ନ ଭିନ୍ନ ଜାତିର କାର୍ଯ୍ୟ ଏବଂ ଗତି ପରିମାଣରେ ସମଗ୍ର ମାନବ ଜାତିର କଲ୍ୟାଣରେ ସହାୟ ହେବ । ଏହି ଲକ୍ଷ୍ୟରେ ଜାତୀୟ ଆକାଂକ୍ଷା ପରିଚାଳିତ ଏବଂ ନିୟମିତ ନ ହେଲେ ଜାତୀୟ ଉନ୍ନତି ଏବଂ ପୂର୍ଣ୍ଣତା ଦିଗରେ ଜାତିର ଗତି ଅସମ୍ଭବ ।

ସାର୍ବଜନୀନ ମାନବସମାଜ ଭଗବାନଙ୍କର ଅଭିବ୍ୟକ୍ତି । ମାନବସେବା ହିଁ ଭଗବତ୍‌ସେବା । ମାତ୍ର ବ୍ୟକ୍ତିବିଶେଷର ଶକ୍ତି କ୍ଷୀଣ, ବାହୁ କ୍ଷୁଦ୍ର, ଦୃଷ୍ଟି ସଙ୍କୀର୍ଣ୍ଣ, ଗତି ସୀମାବଦ୍ଧ, ସୁତରାଂ ବିଶ୍ୱଜନୀନ ସମଗ୍ର ମାନବସମାଜର ସେବା ତା' ପକ୍ଷରେ ଅସମ୍ଭବ । ସେ ଯେଉଁ ନିର୍ଦ୍ଦିଷ୍ଟ ଦେଶରେ ଏବଂ ନିର୍ଦ୍ଦିଷ୍ଟ ଜାତି ମଧ୍ୟରେ ବାସ କରନ୍ତି, ସେହି ଦେଶ ତାଙ୍କର ପୂଜାପୀଠ ଏବଂ ସେହି ଜାତିର ସେବାରେ ହିଁ ତାଙ୍କର ମାନବସେବା ।

'ସର୍ବଦେବନମସ୍କାରଃ କେଶବଂ ପ୍ରତିଗଚ୍ଛତି'

ଏହି ଉଦାର ମାନବିକତାକୁ ଲକ୍ଷ୍ୟକରି ଜାତୀୟ ଉନ୍ନତି ପଥରେ ଅଗ୍ରସର ହେବାକୁ ହେବ । ଏଥିରେ କୌଣସି ଭୟ ନାହିଁ; ଅକଲ୍ୟାଣ ନାହିଁ ।

'ନ ହି କଲ୍ୟାଣକୃତ୍ କଶ୍ଚିତ୍ ଦୁର୍ଗତିଂ ତାତ ଗଚ୍ଛତି'

ହୃଦୟରେ ଏହି ବିଶ୍ୱାସ ଜାଗ୍ରତ ଥିଲେ, ଏହି ଉଦାର ନୀତିରେ ଜୀବନର ଗତି ନିୟମିତ ହେଲେ, କ୍ଷୁଦ୍ର ପଲ୍ଲୀରେ ସୀମାବଦ୍ଧ କାର୍ଯ୍ୟକ୍ଷେତ୍ରରେ ରହି ମନୁଷ୍ୟ ସମଗ୍ର ମାନବ କଲ୍ୟାଣରେ ଆତ୍ମନିୟୋଗ କରିପାରେ । ଏହି ବିଶ୍ୱାସ, ଏହି ମହା ଲକ୍ଷ୍ୟ ବିଭିନ୍ନ ପ୍ରକୃତିର ବିଭିନ୍ନ ଜାତିର ଲୋକମାନଙ୍କୁ ଏକ ସୂତ୍ରରେ ଆବଦ୍ଧ କରି ସମଗ୍ର ମାନବସମାଜରେ ମଧୁମୟ ସମନ୍ୱୟ ସ୍ଥାପନ କରିବ । ଏହି ବିଶ୍ୱାସ ଦୃଢ଼ ନ ହେଲେ ମନୁଷ୍ୟ ନିଜ ଜାତିର ବୈଶିଷ୍ଟ୍ୟ ଦେଖିବ ନାହିଁ । ଉତ୍କଳ ଜାତିର ପବିତ୍ର ମୂର୍ତ୍ତି ଆମ୍ଭମାନଙ୍କର ଏହି ସମ୍ମିଳନୀ ଆମ୍ଭମାନଙ୍କର ଆରାଧ୍ୟ ଈଶ୍ୱର । ଏହି ସ୍ଥାୟୀ ଜ୍ଞାନ ହୃଦୟରେ ଜାଗ୍ରତ ରହିବ କେବଳ ଉଦାର ମାନବିକତା ଆଡ଼କୁ ଲକ୍ଷ୍ୟ ରଖି ଆମ୍ଭମାନଙ୍କର ଜାତୀୟ ଜୀବନ ଗଠନ କରିବାରେ ।

ଓଡ଼ିଆମାନେ ଯେ ଏହି ଉଦାର ମାନବ ଧର୍ମରେ ଚିରଦିନ ଦୀକ୍ଷିତ ଏବଂ ଭାରତ ସହିତ ଉତ୍କଳର ନିତ୍ୟ ସମ୍ବନ୍ଧ ଅନୁଭବ କରିଅଛନ୍ତି, ଓଡ଼ିଆଜାତିର ଇତିହାସ ଅଭ୍ରାନ୍ତ ଭାବରେ ଏହା ପ୍ରମାଣ କରୁଅଛି । ଓଡ଼ିଶାର ଯଥାର୍ଥ ଇତିହାସ ଏପର୍ଯ୍ୟନ୍ତ ଲେଖା ହୋଇ ନାହିଁ । ଏହାର ଗିରିବନକନ୍ଦରରେ ଯେ ସମସ୍ତ ଉପାଦାନ ବିକ୍ଷିପ୍ତଭାବରେ ପଡ଼ିରହିଅଛି; ଭଗ୍ନ ମନ୍ଦିରରେ ଯେ ସମସ୍ତ ସ୍ମୃତି ଏବଂ ସଂସ୍କାର ଜଡ଼ିତ ଏବଂ ପୁଣ୍ୟ ପର୍ବମାନଙ୍କରେ, ଏମନ୍ତ କି ଯେ ସମସ୍ତ ଅନୁଷ୍ଠାନ ଆଜି ଅନେକଙ୍କ ନିକଟରେ କୁସଂସ୍କାର, ତୁସେ ସବୁର ମଜ୍ଜାରେ ଯେ ସତ୍ୟସାର ନିହିତ ଅଛି, ପ୍ରବାଦ ପ୍ରବଚନ ପରମ୍ପରାରେ ଜୀବନର ଯେ ସମସ୍ତ ତଥ୍ୟ ପ୍ରକାଶ ପାଉଅଛି, ସେ ସବୁର ଭିତରକୁ ଦେଖିଲେ ଜଣାଯାଏ, ଓଡ଼ିଆ ଜାତି ଇତିହାସରେ କେବେ ସଂକୀର୍ଣ୍ଣ ସୀମାରେ ଆବଦ୍ଧ ନ ଥିଲେ । ନଦୀ ପର୍ବତଦ୍ୱାରା

ଓଡ଼ିଶାର ସୀମା ଆବଦ୍ଧ ହେଲେ ସୁଦ୍ଧା ଓଡ଼ିଆମାନେ ସର୍ବଦା ସେ ସୀମା ଅତିକ୍ରମ କରି ବିଶାଳତା ଆଡ଼କୁ ଗତି କରିଅଛନ୍ତି । ଜାତୀୟତାର ଲକ୍ଷ୍ୟ ଯେ ଉଦାର ମାନବିକତା, ସମଗ୍ର ଭାରତରେ ତାହା ଓଡ଼ିଆ ହିଁ ବୁଝିଥିଲେ । ବିଶ୍ୱପ୍ରୀତି ହିଁ ଓଡ଼ିଆର ଜାତୀୟତା, ପୂର୍ଣ୍ଣପ୍ରାଣ ଓଡ଼ିଆର ମନୁଷ୍ୟତା । ଓଡ଼ିଆର ଏ ଜାତୀୟତା ଦେଶାନୁରାଗ କେବେ ଜଡ଼, ନିର୍ଜୀବ, ନୀରସ ଓ ସ୍ୱାର୍ଥ ନୁହେଁ; ରାଜ୍ୟଲାଭ ବା ରକ୍ତପାତରେ ଏହାର ପ୍ରତିଷ୍ଠା ନୁହେଁ, ଗଭୀର ଧର୍ମଭାବ ଏବଂ ଦୃଢ଼ ବିଶ୍ୱାସ ଏହାର ଭିତ୍ତି; ସାମ୍ୟ, ମୈତ୍ରୀ, ସ୍ୱାଧୀନତା ଏହାର କେନ୍ଦ୍ର । ଓଡ଼ିଶାର ଏହି ଭାବ ନୀଳାଚଳ ଧାମରେ ପ୍ରକଟିତ; ତେଣୁ ଜଗନ୍ନାଥ ଓଡ଼ିଶାର ଜାତୀୟ ଦେବତା । ବଦ୍ରିନାଥ, ରାମନାଥ, ଦ୍ୱାରିକାନାଥ ସ୍ଥାନବିଶେଷର ନାଥ; ମାତ୍ର ଜଗତର ନାଥ ନୁହନ୍ତି । ପ୍ରାଚୀନ କାଶୀଧାମରେ ବିଶ୍ୱନାଥ ଅଛନ୍ତି । କିନ୍ତୁ ସମସ୍ତ ବିଶ୍ୱକୁ ଆଲିଙ୍ଗନ କରିବାର ଉଦାରତା ସେଠାରେ ନାହିଁ । କାଳକ୍ରମେ ଆମ୍ଭମାନଙ୍କ ଜାତୀୟ ଅଧୋଗତି ସଙ୍ଗେ ସଙ୍ଗେ ନୀଳାଚଳର ମୌଳିକ ଉଦାର ଭାବ ଆଜି ବହୁତ ସଙ୍କୁଚିତ ହୋଇଅଛି ସତ୍ୟ; କିନ୍ତୁ ଧର୍ମ ଜୀବନରେ ସାର୍ବଜନୀନ ଉଦାରତା ଯେ ଏକମାତ୍ର ସତ୍ୟ, ଏ ଭାବ ଓଡ଼ିଶାରୁ ଲୋପ ପାଇ ନାହିଁ । ନୀଳାଚଳର ନୀତିରେ କ୍ଷୁଦ୍ର ବୃହତ୍ ନାହିଁ, ରାଜା ପ୍ରଜା ନାହିଁ, ଚଣ୍ଡାଳ-ବ୍ରାହ୍ମଣ ନାହିଁ, ପାମରପ୍ରେମିକ ନାହିଁ, ଏମନ୍ତ କି ହିନ୍ଦୁବୌଦ୍ଧର ଭେଦ ନାହିଁ । ପରବର୍ତ୍ତୀ ଚୈତନ୍ୟ ଯୁଗରେ ମଧ୍ୟ ହିନ୍ଦୁମହମ୍ମଦୀୟ ଭେଦ ପର୍ଯ୍ୟନ୍ତ ଲୁଚି ଯାଇଥିଲା । ଏହି ଉଦାର ମାନବିକତା ଓ ମହାଭାରତ ଜାତୀୟତାର ବୀଜ ନୀଳାଚଳ ଧାମରେ ଅଛି ବୋଲି ତ କାଳେ କାଳେ ଭାରତର ବିଭିନ୍ନ ଦିଗନ୍ତରୁ ସିଦ୍ଧ ସାଧକ ମହାପୁରୁଷମାନେ ଆକୃଷ୍ଟ ହୋଇ ଆସିଅଛନ୍ତି । ଜଗନ୍ନାଥ ତ ସାକ୍ଷାତ

ବୌଦ୍ଧାବତାର । ଶଙ୍କରଙ୍କର ପ୍ରଧାନ ମଠ ପୁରୀରେ । ରାମାନୁଜଙ୍କର, ଏହା ପୁଣି ଏକ ପ୍ରଧାନ ଧର୍ମକେନ୍ଦ୍ର । ନାନକ ପୁରୀର ସାଗରସୈକତରେ ନିଜର ସର୍ବୋତ୍କୃଷ୍ଟ ମଧୁମୟ ସଙ୍ଗୀତ ଗାଇଥିଲେ । କବୀରଙ୍କର ମଧ୍ୟ ଆସ୍ଥାନ ଏହିଠାରେ । ଅବଶେଷରେ ପ୍ରେମର ଅବତାର ଭଗବାନ ଶ୍ରୀକୃଷ୍ଣଚୈତନ୍ୟ ଭାରତର ସମଗ୍ର ତୀର୍ଥ ଭୂମି ଏହି ସାର୍ବଜନୀନ ପ୍ରେମଧାମରେ ସ୍ଥାୟୀ ନିବାସ କରି ଗାଇଲେ, "ଜଗନ୍ନାଥ ସ୍ୱାମୀ ନୟନପଥଗାମୀ ଭବତୁ ମେ ।" ମୁସଲମାନ ଭକ୍ତ ହରିଦାସ, ଶାଲବେଗ ପ୍ରଭୃତିଙ୍କର ସମାଧି ମଧ୍ୟ ଏହି ପୁରୀରେ ପ୍ରତିଷ୍ଠିତ ।

ବାସ୍ତବିକ ଉତ୍କଳଭୂମି ସଙ୍କୀର୍ଣ୍ଣ ଭୂମି ନୁହେଁ । ଓଡ଼ିଆ କେବେ କ୍ଷୁଦ୍ରରେ ସୀମାବଦ୍ଧ ନୁହେଁ । ପୁରୀ, ଭୁବନେଶ୍ୱର, କୋଣାର୍କ-ମନ୍ଦିରର ବିଶାଳତା ଏହାର ପରିଚୟ । ମନୁଷ୍ୟହାତଗଢ଼ା ଏ ଶିଳ୍ପଛଟା ଓଡ଼ିଶାର ପାରମାର୍ଥିକ ବୈଷୟିକ ଓଡ଼ିଶାର ସେହି ବିଶାଳ ଭାବ ଓ ଉଦାରତାର ପ୍ରମାଣ । ଯେଉଁ ଦେଶର ଦେବତା ଜଗନ୍ନାଥ, ସେ ଦେଶର ନଦୀ ଗିରି ସାଗର ଶ୍ମଶାନରେ ଯେ ସେହି ମହାଉଦାର ଭାବ ବିକାଶ ପାଇବ, ତାହା ସ୍ୱାଭାବିକ । ଓଡ଼ିଶାର ନଦୀ ମହାନଦୀ, ସମୁଦ୍ର ମହୋଦଧି, ଗିରି ମହେନ୍ଦ୍ର, ବୃକ୍ଷ କଳ୍ପବଟ, ଏମନ୍ତ କି ଶ୍ମଶାନ ମାନବର ଅନ୍ତିମ ସ୍ଥାନ ନୁହେଁ, ବରଂ ଅନନ୍ତ-ଧାମର ପ୍ରବେଶଦ୍ୱାର, ସ୍ୱର୍ଗଦ୍ୱାର । ଏହି ନାମ ସବୁ କଣ ପ୍ରକାଶ କରୁଅଛି ? ଓଡ଼ିଆ ପ୍ରାଣ ଯେ ମହାଭାବ କଳ୍ପନା କରିଅଛି ଚତୁର୍ଦ୍ଦିଗରେ ତାହା ହିଁ ଦେଖିବାକୁ ପ୍ରୟାସୀ ହୋଇଅଛି । ଗୋଟିଏ ଗୋଟିଏ ଶବ୍ଦ ଏକ ଏକ ଜାତିର ଇତିହାସ ପଟ ଫିଟାଇ ଦେଇ ଅତୀତ ଅନ୍ଧାରରେ ଆଲୋକ ଦେଉଅଛି, ମହାନଦୀ ମହୋଦଧି

ପ୍ରକୃତ ଓଡ଼ିଆ ପ୍ରାଣର ବିଶାଳତା ଏବଂ ପବିତ୍ରତା କମନ୍ତେ ଓଡ଼ିଆ ହୃଦୟର ଆକାଙ୍କ୍ଷା ପ୍ରକାଶ କରୁ ନାହିଁକି ? ଶିଳ୍ପରେ ଏବଂ ଦେବମୂର୍ତ୍ତିରେ ଓଡ଼ିଆ ହୃଦୟ ଯେ ଭାବ ବ୍ୟକ୍ତ କରିଅଛି, ଏହାପରି ଗୋଟିଏ ଶବ୍ଦରେ ତାହାର ପ୍ରାଣର କବିତା ସେହି ଉଦାର ମହାଭାବ ପ୍ରକାଶ କରିଅଛି ।

———

("ସତ୍ୟବାଦୀ" ମାସିକ ପତ୍ରରେ ପ୍ରକାଶିତ ୧୯୧୯ ଖ୍ରୀଷ୍ଟାବ୍ଦର ଉତ୍କଳ ସମ୍ମିଳନୀରେ ପ୍ରଦତ୍ତ ସଭାପତି ଅଭିଭାଷଣର କିୟଦଂଶ । )

# ସଂଗ୍ରାମ ଓ ଜୀବନ

## ୬ ନନ୍ଦକିଶୋର ବଳ

"ଜୀବନ"—ଏହି ଶବ୍ଦଟି ଉଚ୍ଚାରିତ ହେବା ସଙ୍ଗେ ସଙ୍ଗେ "ସଂଗ୍ରାମ"—ଏହି ଶବ୍ଦଟି ମଧ୍ୟ ସୂଚିତ ହୁଏ । ଏହି ଦୁଇ ଶବ୍ଦ ଆମ୍ଭମାନଙ୍କର ମନରେ ଭାବସଙ୍ଗରୂପ ସୂତ୍ରଦ୍ୱାରା ଏକତ୍ର ଗ୍ରଥିତ । ଜଡ଼ଠାରୁ ଆରମ୍ଭକରି ଉଦ୍ଭିଜ୍ଜ ପଶୁପକ୍ଷ୍ୟାଦି ସମସ୍ତ ସୃଷ୍ଟ ବସ୍ତୁ ସଂଗ୍ରାମରେ ବ୍ୟସ୍ତ । ଯାହାର ସଂଗ୍ରାମ ନାହିଁ, ତାହାର ଅସ୍ତିତ୍ୱ ନାହିଁ; ଜୀବନ କଥା ଦୂରରେ ଥାଉ । ଏହି ଯେ ଜଡ଼ପଦାର୍ଥସକଳ—ଯେଉଁ-ମାନଙ୍କୁ ଆମ୍ଭେମାନେ ବାହ୍ୟତଃ ନିଶ୍ଚଳ ଏବଂ ସ୍ଥିର ଦେଖୁଁ, ସେମାନେ ସ୍ୱୀୟ ଅସ୍ତିତ୍ୱ ନିମିତ୍ତ ଚତୁର୍ଦ୍ଦିଗସ୍ଥ ପଦାର୍ଥମାନଙ୍କ ସହିତ ପ୍ରତି ମୁହୂର୍ତ୍ତ ଅବିରତ ଭାବରେ ସଂଗ୍ରାମଶୀଳ । ପ୍ରତ୍ୟେକ ପରମାଣୁ ବିଶ୍ୱସାଗରର ଅନ୍ୟାନ୍ୟ ତାବତ୍ତୀୟ ପରମାଣୁଦ୍ୱାରା ଆକର୍ଷଣ ଓ ବିପ୍ରକର୍ଷଣ ବଳରେ ଆକୃଷ୍ଟ ଏବଂ ବିତାଡ଼ିତ । କିନ୍ତୁ ସେମାନଙ୍କ ଆକର୍ଷଣ ବିପ୍ରକର୍ଷଣ ବଳର ସମତା ହେତୁ ପଦାର୍ଥମାନଙ୍କର ଦୃଶ୍ୟ-ମାନ ନିଶ୍ଚେଷ୍ଟତା ଉତ୍ପାଦିତ ହୁଏ । ଯେପରି ଦୁଇ ବ୍ୟକ୍ତି ପରସ୍ପରକୁ ଟାଣିଲେ ସେମାନଙ୍କ ଶକ୍ତି ଯେବେ ସମାନ ଥାଏ, ତେବେ ସେମାନେ ନିଜ ନିଜ ପୂର୍ବ ସ୍ଥାନରେ ନିଶ୍ଚେଷ୍ଟ ଭାବରେ ଦଣ୍ଡାୟମାନ ରହିଲପରି ବୋଧ ହୁଏ, କିନ୍ତୁ ବସ୍ତୁତଃ ସେମାନେ ସମସ୍ତେ ଶକ୍ତି ପ୍ରୟୋଗକରି ସଂଗ୍ରାମରେ ବ୍ୟସ୍ତ ଥାନ୍ତି; ସେହିପରି ଉଦ୍ଭିଦ-ଜଗତର କାର୍ଯ୍ୟକଳାପ ପର୍ଯ୍ୟବେକ୍ଷଣ କଲେ ଆମ୍ଭେମାନେ ଦେଖି ପାରିବୁଁ ସେଠାରେ ମଧ୍ୟ ନିୟତ ସଂଗ୍ରାମ ଲାଗିଅଛି । ବୀଜ ଭୂମିରେ ପ୍ରୋଥିତ ହେବା ମୁହୂର୍ତ୍ତଠାରୁ ତାହାକୁ କେତେ ବାଧାବିଘ୍ନ ଅତିକ୍ରମ କରି କେତେ ଶତ୍ରୁଙ୍କୁ ପରାସ୍ତ କରି ସ୍ୱୀୟ ଅସ୍ତିତ୍ୱ ରକ୍ଷା କରିବାକୁ ହେଉଅଛି । ପ୍ରାଣି-ଜଗତରେ କୀଟପତଙ୍ଗ, ପଶୁପକ୍ଷୀ ଜୀବଗଣଙ୍କୁ ମଧ୍ୟ ସ୍ୱ ସ୍ୱ

ଜୀବନର ରକ୍ଷା ନିମନ୍ତେ ନିରନ୍ତର ଘୋର ସଂଗ୍ରାମରେ ବ୍ୟାପୃତ ରହିବାକୁ ହେଉଅଛି । ଏହିପରି ସମସ୍ତେ ପ୍ରତିନିୟତ ଜୀବନ-ସଂଗ୍ରାମରେ ବ୍ୟସ୍ତ । ଏହି ସଂଗ୍ରାମରେ ଯୋଗ୍ୟତମର ଜୟ ଅବଶ୍ୟମ୍ଭାବୀ । ଦୁର୍ବଳ ପରାସ୍ତ ହୋଇ ପ୍ରବଳକୁ ପଥ ପ୍ରଦାନ କରୁଅଛି ଏବଂ ନିଜେ ପରିପିଷ୍ଟ ହୋଇ ଚରମରେ ବିନଷ୍ଟ ହୋଇଯାଉଛି । ଅପରନ୍ତୁ ଯାହାର ଜୀବନ ଯେତେ ଜଟିଳ ଏବଂ ଉତ୍କୃଷ୍ଟ, ତାହାର ଜୀବନ-ସଂଗ୍ରାମ ତେତେ କଠିନ ଏବଂ ଦୁରୂହ । ଏହିପରି ସୃଷ୍ଟିର ଯାବତୀୟ ବସ୍ତୁ ବା ପ୍ରାଣୀ ଯେତେବେଳେ ଯୁଦ୍ଧଦ୍ୱାରା ସ୍ୱୀୟ ଅସ୍ତିତ୍ୱ ରକ୍ଷା ବା ଜୀବନଧାରଣ କରୁଅଛନ୍ତି, ସୃଷ୍ଟିର ଶ୍ରେଷ୍ଠ ଜୀବ ମାନବ ପକ୍ଷରେ ସେହି ନିୟମର କାହିଁକି ବ୍ୟତିକ୍ରମ ହେବ ? ବରଂ ମାନବଜୀବନର ଯେତିକି ପରିମାଣରେ ଶ୍ରେଷ୍ଠତା, ତାହାର ସଂଗ୍ରାମ ତେତିକି କଠିନ ହେବାର ସମ୍ଭାବନା ଏବଂ ତାହା ହିଁ କାର୍ଯ୍ୟତଃ ଘଟୁଅଛି ।

ପଶୁପକ୍ଷ୍ୟାଦି ଇତର ପ୍ରାଣୀଗଣ ପ୍ରକୃତିଦତ୍ତ ପ୍ରବୃତ୍ତି ଦ୍ୱାରା ପରିଚାଳିତ ହୋଇ ସ୍ୱୀୟ ଜୀବନ ପରିଚାଳନ କରୁଅଛନ୍ତି । ବିହଙ୍ଗଶାବକ ପଶୁବତ୍ସ ଜନ୍ମର କିୟତ୍‌କ୍ଷଣ ଉତ୍ତାରେ ନିଜ ଚରଣୋପରି ଶରୀରର ଭାର ବିନ୍ୟସ୍ତ କରି ଧରଣୀ-ପୃଷ୍ଠରେ ଦଣ୍ଡାୟମାନ ବା ଶୂନ୍ୟମାର୍ଗରେ ଉଡ୍‌ଡୀୟମାନ ହେବାକୁ ସମର୍ଥ ହୁଏ; କିନ୍ତୁ ମାନବ ଶିଶୁ ପକ୍ଷରେ ଏହି କାର୍ଯ୍ୟ କେଡ଼େ କଠିନ ! ତାହା ପକ୍ଷରେ ଏହା ଶିକ୍ଷାସାପେକ୍ଷ ଏବଂ ଦୀର୍ଘକାଳବ୍ୟାପୀ ସାଧନର ଫଳ । ପଶୁ ନିମିତ୍ତ ପାନାହାର ପ୍ରସ୍ତୁତ ହୋଇ ରହିଅଛି । ଦିଗନ୍ତବିସ୍ତାରୀ ହରିତ୍‌-ପ୍ରାନ୍ତରଶ୍ରେଣୀ ସମ୍ମୁଖରେ ବିସ୍ତୃତ । କିନ୍ତୁ ମାନବର ଖାଦ୍ୟ ବହୁ ଆୟାସଲଭ୍ୟ । ପଶୁପକ୍ଷୀ ନିଜ ନିଜ ଅଙ୍ଗପ୍ରତ୍ୟଙ୍ଗ ସଂଚାଳନ କରି ଖାଦ୍ୟ ଗ୍ରହଣ କରନ୍ତି । ମନୁଷ୍ୟ ତନ୍ନିମିତ୍ତ ଅସ୍ତ୍ରଶସ୍ତ୍ର

ଆବଶ୍ୟକ କରେ । ପ୍ରତ୍ୟେକ ପଶୁର ଶିର ଶରୀର ତୁଳନାରେ ଅଳ୍ପ ଭାରବିଶିଷ୍ଟ । ସୁତରାଂ ସନ୍ତରଣ ସମୟରେ ଶିର ଜଳୋପରି ଭାସମାନ ହେବାରୁ ପଶୁ ପକ୍ଷରେ ସନ୍ତରଣ ସହଜ ଓ ସ୍ୱାଭାବିକ । କିନ୍ତୁ ମାନବ ମସ୍ତକ ଶରୀରର ତୁଳନାରେ ବିଶେଷ ଭାରବିଶିଷ୍ଟ । ତେଣୁ ମାନବ-ପକ୍ଷରେ ସନ୍ତରଣ ଆୟାସକର । ଏ ସୃଷ୍ଟିରେ ମାନବର ଅବସ୍ଥା ଭାବିଲେ ସ୍ତବ୍ଧ ହେବାକୁ ହୁଏ ।

× × × ×

ମାନବ ଅତି ଦୁର୍ବଳ, ତାହାର ଅଭାବ ସର୍ବାପେକ୍ଷା ଅଧିକ । କିନ୍ତୁ ତାହାକୁ ଜଗତ୍‌ସ୍ରଷ୍ଟା ଯେଉଁ ଅନନ୍ତ ଉନ୍ନତିଶୀଳ ମାନସିକ ଶକ୍ତି ପ୍ରଦାନ କରିଅଛନ୍ତି ତନ୍ନ୍ ସାହାଯ୍ୟରେ ଏହିସବୁ ଅସୁବିଧା ସତ୍ତ୍ୱେ ସେ ଯେ କେବଳ ତାହାର ଜୀବନର ଅଭାବ ସକଳ ମୋଚନ କରି ପାରିଅଛି ତାହା ନୁହେଁ, ଅଧିକନ୍ତୁ ତାହାର ଅତୁଳ୍ୟ ଉନ୍ନତି ସାଧନପୂର୍ବକ ଜଡ଼ୀୟ ଏବଂ ପାଶବ-ଜଗତ ଉପରେ ଆଧିପତ୍ୟ ସଂସ୍ଥାପନକରିଅଛି । ଉନ୍ନତି-ପରାୟଣତା ହିଁ ମାନବତ୍ୱ ଏବଂ ଅନନ୍ତ ଉନ୍ନତି ଅର୍ଥ ଅନନ୍ତ ସଂଗ୍ରାମ ।

କିନ୍ତୁ ଏହାହିଁ କି ମାନବର ଶ୍ରେଷ୍ଠତା ? ବୈଷୟିକ ବୁଦ୍ଧି, ବାହ୍ୟ ଅଧିପତ୍ୟ ଇତ୍ୟାଦି ଉନ୍ନତିଶୀଳ ମାନବକୁ ମାନବେତର ପ୍ରାଣିଗଣଙ୍କ ମଧ୍ୟରେ ପ୍ରାଧାନ୍ୟ ପ୍ରଦାନ କଲେ ସୁଦ୍ଧା ତାହାର ସ୍ୱାତନ୍ତ୍ର୍ୟ ଏବଂ ଶ୍ରେଷ୍ଠତାର କାରଣ ବାହାରେ ନୁହେଁ, ଭିତରେ । ଅନନ୍ତ ଉନ୍ନତିଶୀଳ ମାନବ ମନ ହିଁ ତାହା ପକ୍ଷରେ ବିଶ୍ୱ-ବିଧାତାଙ୍କର ଶ୍ରେଷ୍ଠ ଆଶୀର୍ବାଦ । ଏହି ଦୈବଦାନ ହିଁ ମାନବର ଗୁରୁତ୍ୱ ସଙ୍ଗେ ସଙ୍ଗେ ଦାୟିତ୍ୱ ବର୍ଦ୍ଧିତ କରିଅଛି । ମହାଜନୋକ୍ତି ଅଛି— ଯାହାକୁ ବିଶେଷ ଶକ୍ତି ପ୍ରଦତ୍ତ ହୋଇଅଛି, ତାହାର ବିଶେଷ ଦାୟିତ୍ୱ ଅଛି ।

ମନୁଷ୍ୟ ମଧ୍ୟରେ ପାଶବ, ମାନବୀୟ ଏବଂ ଦୈବ—ଏହି ତ୍ରିବିଧ ଭାବର ସମାବେଶ । ଯେଉଁ ମନୁଷ୍ୟଗଣ କେବଳ ଆହାର, ବିହାର ଓ ନିଦ୍ରାବିଦରେ ଜୀବନ ଅତିବାହିତ କରନ୍ତି, ସେମାନେ ମାନବ-ଦେହଧାରୀ ପଶୁ ମାତ୍ର । ପାନାହାର ନିମନ୍ତେ ପଶୁପକ୍ଷୀ ମଧ୍ୟ ବନପର୍ବତରେ ସଂଗ୍ରାମ କରନ୍ତି । ଏଥିରେ ମନୁଷ୍ୟର ପ୍ରାଧାନ୍ୟ ଥାଇପାରେ; କିନ୍ତୁ ସ୍ୱାତନ୍ତ୍ର୍ୟ ନାହିଁ । ଏ ବିଷୟରେ ମନୁଷ୍ୟକୁ ପ୍ରଧାନ ପଶୁ ବୋଲିଯାଇ ପାରେ । ମାନବର ମାନବତ୍ୱ ମନରେ, ଅନ୍ତର ସଂଗ୍ରାମରେ । ମାନବ-ମନ ଜ୍ଞାନ, କର୍ମ ଏବଂ ପ୍ରେମର ହେତୁଭୂତ ବୁଦ୍ଧି ଇଚ୍ଛା ଓ ଭାବର ସମାବେଶ ।

ଜୀବନ୍ତି ତରବୋଽପି ହି ଜୀବନ୍ତି ମୃଗ ପକ୍ଷିଣଃ
ସ ଜୀବତି ମନୋ ଯସ୍ୟ ମନନେନ ହି ଜୀବତି ।

ଜଗତର ଇତିହାସ ପାଠକଲେ ଦେଖାଯାଏ ଯେ, ଜ୍ଞାନପିପାସୁ ମାନବ କେତେ ବାଧାବିଘ୍ନ, ଦୁଃଖଦାରିଦ୍ର୍ୟ ପ୍ରତିକୂଳ ଅବସ୍ଥା ସଙ୍ଗରେ ସଂଗ୍ରାମ କରି ଅସାଧ୍ୟ ସାଧନ କରି ଯାଇଅଛନ୍ତି । ଇଂଲଣ୍ଡର ସୁସନ୍ତାନ ଜନ୍ସନ୍ ଏବଂ ସାଭେଜ ଯେତେବେଳେ ଏକ ସଙ୍ଗରେ ଲଣ୍ଡନ ନଗରୀକୁ ଆଗମନ କରିଥିଲେ, ସେମାନଙ୍କୁ ଉକ୍ତ ମହାନଗରୀରେ ମସ୍ତକ ରଖିବାକୁ ସ୍ଥାନ ମିଳି ନ ଥିଲା । ଦୁଇବନ୍ଧୁ ସମସ୍ତ ରଜନୀ ରାଜପଥରେ ଭ୍ରମଣ କରି ରାଜପଥର ଆଲୋକ ସାହାଯ୍ୟରେ ଗ୍ରନ୍ଥ ଅଧ୍ୟୟନ କରି ପ୍ରାଣର ଅଦମ୍ୟ ଜ୍ଞାନପିପାସା ନିବାରଣ କରିଥିଲେ ।

ଆମ୍ଭମାନଙ୍କର ଏହି ଦେଶରେ ବିଦ୍ୟାସାଗର ଦାରିଦ୍ର୍ୟ ଓ ପ୍ରତିକୂଳ ଅବସ୍ଥା ବିରୁଦ୍ଧରେ ମହାସମର ଘୋଷଣା କରିଥିଲେ । ତାହାର ତୂର୍ଯ୍ୟନିନାଦ ଏପର୍ଯ୍ୟନ୍ତ ଏହି ଦେଶବାସୀର

କର୍ଣ୍ଣପଟରେ ପ୍ରତିଧ୍ୱନିତ ହେଉଅଛି । ଏହିପରି ଜ୍ଞାନପିପାସୁ ମାନବ ନିରନ୍ତର ସେହି ଅସୀମ ଜ୍ଞାନାକାଶର ଚକ୍ରବାଳ ନିକଟକୁ ଅଗ୍ରସର ହେଉଅଛି । କିନ୍ତୁ ତାହାର ସୀମା ନାହିଁ । ମନୁଷ୍ୟ ଯେତେ ଅଗ୍ରସର ହେଉଅଛି, ଜ୍ଞାନରାଜ୍ୟର ପରିସର ସେତେ ବର୍ଦ୍ଧିତ ହୋଇ ଯାଉଅଛି ଏବଂ ସଂଗ୍ରାମ ଖିତ୍ତଣତର ଆକାର ଧାରଣ କରୁଅଛି ।

ଅପରନ୍ତୁ ଜଗତର ଇତିହାସରେ କେତେ ହାନିବଲ, ସିଜର, ଫର୍ମି ସେକନ୍ଦର, ଶୃଲିମାନ, ନେପୋଲିୟନ ଆବିର୍ଭୂତ ହୋଇ ଅଭୂତ ସଂଗ୍ରାମ କରି ଯାଇଛନ୍ତି । ଜଗତରେ ଯଶୋପାର୍ଜନ ସେମାନଙ୍କର ଉଦ୍ଦେଶ୍ୟ ଥିଲା । ଏମାନେ ମହା ଯଶସ୍ୱୀ ହେଲେ ମଧ୍ୟ ଏମାନଙ୍କ ଶକ୍ତି ନିକଟରେ ଆମ୍ଭେମାନେ ବିସ୍ମୟାବିଷ୍ଟଚିତ୍ତରେ ସ୍ତମ୍ଭୀତ ହୋଇ-ପାରୁ; କିନ୍ତୁ ଏମାନଙ୍କୁ ହୃଦୟର ଭକ୍ତି ଶ୍ରଦ୍ଧା ଅର୍ପଣ କରି ପାରୁ ନାହିଁ । ଏ ଜଗତରେ ଧର୍ମଯୁଦ୍ଧ ଓ ଅଧର୍ମଯୁଦ୍ଧ ଦୁଇ ପ୍ରକାର ସଂଗ୍ରାମ ଅଛି । ପକ୍ଷାନ୍ତରେ ଏହି ପୃଥିବୀରେ କେତେ କର୍ମବୀର ସ୍ୱଦେଶପାଇଁ ଧରାପୃଷ୍ଠରେ ସତ୍ୟ, ନ୍ୟାୟ, ଶାନ୍ତି ଏବଂ ସ୍ୱାଧୀନତା ପ୍ରତିଷ୍ଠିତ କରିବା ପାଇଁ ନିଜ ନିଜର ଧନ ମାନ, ସ୍ୱାସ୍ଥ୍ୟ ସାମର୍ଥ୍ୟ ଏମନ୍ତ କି ଜୀବନପର୍ଯ୍ୟନ୍ତ ବିସର୍ଜନ ଦେଇ ଯାଇଅଛନ୍ତି । ଗାରିବଲ୍ଡି, ହାମ୍‌ଡେନ୍, ଇଲିଅଟ୍, ଓ୍ୱାଶିଂଟନ୍ ଆଦି ବୀରମାନଙ୍କ ପ୍ରତି ଆମ୍ଭମାନଙ୍କର ହୃଦୟର ସମ୍ମାନ ସ୍ୱତଃ ପ୍ରଧାବିତ ହୁଏ । କାରଣ ଏମାନେ ନିଃସ୍ୱାର୍ଥ ଭାବରେ ଧର୍ମ-ଯୁଦ୍ଧରେ ମନପ୍ରାଣ ଅର୍ପଣ କରିଥିଲେ ।

ପ୍ରତ୍ୟେକ ମନୁଷ୍ୟର ଜୀବନରେ ଏପରି ଗୋଟିଏ ସମୟ ଉପସ୍ଥିତ ହୁଏ, ଯେତେବେଳେ ମହାବୀର ହରକ୍ୟୁଲିସ୍‌ଙ୍କ ପରି

ତାହା ସମ୍ମୁଖରେ ଶ୍ରେୟଃ ଓ ପ୍ରେୟ ଦୁଇ ରମଣୀ ଉପସ୍ଥିତ ହୁଅନ୍ତି । ପ୍ରେୟର ପଥ ସାଂସାରିକ ଆମୋଦ ପ୍ରମୋଦ ହର୍ଷ କୋଳାହଳ ଆପାତମଧୁର ଇନ୍ଦ୍ରିୟସୁଖ, କିନ୍ତୁ ପରିଣାମରେ ହାହାକାର, ଅନୁତାପ, ଦୁଃଖ ଏବଂ ନୈରାଶ୍ୟ । ପକ୍ଷାନ୍ତରରେ ଶ୍ରେୟଃର ପଥ ପ୍ରଥମରେ ଦୁର୍ଗମ ହେଲେହେଁ ଚରମରେ ଆନନ୍ଦ-ସୁଖ ଶାନ୍ତିପ୍ରଦ । ସ୍ୱଦେଶୀ ଭ୍ରାତୃବୃନ୍ଦ ! ଆମ୍ଭମାନଙ୍କ ସମ୍ମୁଖରେ ଏକ ଆଉଛି ଯୌବନ, ସୁଖ, ସାଂସାରିକ ଆମୋଦ, ଦଶ ଜଣଙ୍କ ସଙ୍ଗରେ ଜଣେ ହେବାର ଆକାଙ୍କ୍ଷା ଏବଂ ଅନ୍ୟ ଆଉଛି କଠିନ ସାଧନ, ଇନ୍ଦ୍ରିୟ-ନିଗ୍ରହ, ରିପୁ-ସଂଯମ, ନୀରବ ପ୍ରାର୍ଥନା ଏବଂ ମନ୍ଦ ଲୋକମାନଙ୍କ କୁଟିଳ କଟାକ୍ଷ ଓ ଉପହାସ ବିଦ୍ରୂପ ଉପସ୍ଥିତ-ଆମ୍ଭେମାନେ କେଉଁଟି ବାଛି ନେବା ? ଭଗବାନ କରନ୍ତୁ, ଆମ୍ଭେ-ମାନେ ସେହି ମହାବୀରରୂପୀ ଆଦର୍ଶ ମନୁଷ୍ୟତାର ପଥ ଅନୁସରଣ କରୁଁ; କିନ୍ତୁ ଏହି ପଥ ସଂଗ୍ରାମର ପଥ । ଅନ୍ତର ଏବଂ ବାହ୍ୟ ଶତ୍ରୁ ସଙ୍ଗରେ ନିରନ୍ତର ସଂଗ୍ରାମ କରିବାକୁ ପଡ଼ିବ । ଅବଶ୍ୟ ଆମ୍ଭ-ମାନଙ୍କ ପଦସ୍ଖଳନ ହେବ । କିନ୍ତୁ ଅକୃତକାର୍ଯ୍ୟତା ପରେ ନିଶ୍ଚେଷ୍ଟ ହେବା ନାହିଁ ।

ସଂଗ୍ରାମ ହିଁ ତ ଜୀବନ, ଆମ୍ଭେମାନେ ପଡ଼ିବା ଏବଂ ଉଠିବା; ନିରାଶ ହେବା ନାହିଁ । ଶେଷରେ ସମସ୍ତେ ସାଧୁ ମହାତ୍ମାମାନଙ୍କ ପରି ଆମ୍ଭେମାନେ ପାପକୁ ଜୟ କରିବା ଏବଂ ସେତେବେଳେ ଆମ୍ଭମାନଙ୍କ ସୁଖର ସୀମା ରହିବ ନାହିଁ । ସଂଗ୍ରାମରେ ଜୟଲାଭ କରିବାର ସୁଖର ତୁଳନା ନାହିଁ । ଅତଏବ କଠିନ ହେଲେ ହେଁ ଆମ୍ଭେମାନେ ଏହି ଦେବତ୍ୱର ପଥରେ ଅଗ୍ରସର ହେବା । ଏହି ପଥରେ ପଥିକ ହେବାକୁ ହେଲେ ପ୍ରଥମରେ ଭିତରୁ ସଂଗ୍ରାମ ଆରମ୍ଭ କରିବାକୁ ହେବ । ଅପବିତ୍ରତା, କ୍ରୋଧ, ଲୋଭ, ମିଥ୍ୟା-

ବାଦିତା, ଘୃଣା ପ୍ରଭୃତି ଆମ୍ଭମାନଙ୍କର ପ୍ରଧାନ ଶତ୍ରୁ । ସେହିମାନେ ହିଁ ଆମ୍ଭମାନଙ୍କ ଗନ୍ତବ୍ୟ ପଥ ବଳପୂର୍ବକ ରୋଧ କରନ୍ତି । ଆମ୍ଭେମାନେ ଯେବେ ଆଭ୍ୟନ୍ତରୀଣ ଶତ୍ରୁମାନଙ୍କୁ ବିନାଶ କରି ବିଶୁଦ୍ଧତା, ସହିଷ୍ଣୁତା, ମହତ୍ତ୍ୱ, ସତ୍ୟପରାୟଣତା, ସମଦର୍ଶିତା ଇତ୍ୟାଦି ଲାଭ ନ କରିବା, ତେବେ ଗୃହରେ ବିବାଦ ରହିଯିବ ଏବଂ ବହିଃଶତ୍ରୁର ଆକ୍ରମଣରୁ ନିଜ ନିଜକୁ ରକ୍ଷା କରିପାରିବା ନାହିଁ । ନିଜ ଗୃହକୁ ସୁରକ୍ଷିତ କରି ଆମ୍ଭମାନଙ୍କୁ ବାହାରର ଅନ୍ୟାୟ, ଅସାମ୍ୟ, ଅତ୍ୟାଚାରର ବିରୁଦ୍ଧରେ ଦଣ୍ଡାୟମାନ ହେବାକୁ ହେବ । ଏହି ସଂଗ୍ରାମରେ ତିନିଗୋଟି ଅସ୍ତ୍ର ଆବଶ୍ୟକ, ତାହା ଆତ୍ମସଂଯମ, ଆତ୍ମସମ୍ମାନ ଏବଂ ଆତ୍ମଜ୍ଞାନ ।



( 'ନନ୍ଦକିଶୋର ଗ୍ରନ୍ଥାବଳୀ'ରୁ ଗୃହୀତ )

# ଅଶ୍ରୁ ନିମନ୍ତ୍ରଣ

## ୬ ଚନ୍ତାମଣି ମହାନ୍ତି

ହେ ଅଶ୍ରୁ, ହେ ଦୟାଳୁ ଦେବତା ! ହେ ଜୀବନ-ସଖା ! ଆସ ବନ୍ଧୁ, ଆସ । ତୁମ୍ଭେ ଧୀନ ନେତ୍ର-ସିଂହାସନର ରାଜା, ଦୀନର ଧୀନ-ନିମନ୍ତ୍ରଣ ଗ୍ରହଣ କର । ତୁମ୍ଭେ ମୋର ଚିରକାଳର ପୁରୁଣା ବନ୍ଧୁ—ରୋଗ, ଶୋକ, ସନ୍ତାପ ପ୍ରଭୃତିର ଆକ୍ରମଣ କାଳରେ ତୁମ୍ଭେ ବଳେ ବଳେ ଆସି ସାନ୍ତ୍ୱନା ଦିଅ । ତୁମ୍ଭେ ମନର ପୁଞ୍ଜୀଭୂତ କ୍ଳେଦକୁ ଭସାଇଆଣି ଭାରଗ୍ରସ୍ତ ମନକୁ ଉଶ୍ୱାସ କରିଦିଅ । ତୁମ୍ଭପରି ସୁବନ୍ଧୁ ଦୁଃଖୀ ଜନର ଆଉ କିଏ ଅଛି ? ତୁମ୍ଭର ମହୋପକାର ମୁଁ ଜୀବନରେ ସର୍ବଦା ଭୋଗ କରି ଆସୁଅଛି । ତୁମ୍ଭର ଋଣ ଅପରିଶୋଧ୍ୟ; ଦୟା ଅନନ୍ତ, ତାହା ଭୁଲିଯିବାର କଥା ନୁହେଁ ।

ତୁମ୍ଭେ ବିନା ଆହ୍ୱାନରେ ବଳେ ବଳେ ଆସି ବିପଦରେ ସାନ୍ତ୍ୱନା ଦିଅ; କିନ୍ତୁ ଆଜ ମୁଁ ଆନନ୍ଦରେ ନିମନ୍ତ୍ରଣ କରୁଛି । ଆଜ ମୋର ସୁଖର ଦିନ, ବନ୍ଧନ-ମୁକ୍ତିର ଶୁଭଦିନ । ଆଜ ମୁଣ୍ଡରୁ ଭାର ଓହ୍ଲାଇଯାଇଛି—ଏଣିକି ଜଞ୍ଜାଳ-ଭାରାକ୍ରାନ୍ତ, କ୍ଳାନ୍ତ ଦେହ ମନ ଆତ୍ମା ଫୁଲପରି ହାଲୁକା ଲାଗିବ । ଆଜ ମୋର ଏହି ଆନନ୍ଦ-ଉତ୍ସବରେ, ତୁମ୍ଭେ ଆସି ଯୋଗଦେଲେ ଉତ୍ସବ ଅମୃତମୟ ହେବ । ମନୁଷ୍ୟର ଦୁଃଖଭାର ଯେ ଲଘୁ କରେ ସେ ଦେବତା । ତୁମ୍ଭ ପରି ଛାପିତର ତାପ କିଏ ଊଣା କରିପାରିବ ? ସୁତରାଂ ତୁମ୍ଭେ ହିଁ ଦେବତା । କୀଟଠାରୁ ବ୍ରହ୍ମ ପର୍ଯ୍ୟନ୍ତ ସମସ୍ତଙ୍କଠାରେ ଈଶ୍ୱରସତ୍ତା ଅଛି । ତେଣୁ ତୁମ୍ଭେ ଈଶ୍ୱରଙ୍କ ପ୍ରତିରୂପ । ଏହି ଜ୍ଞାନରେ ଆଜ

ତୁମ୍ଭ ସଙ୍ଗରେ କଥା କହିବ । ଅଶ୍ରୁଦେବ ! ଏବେ ମୋର ପ୍ରାଣର ବାଣୀ କିଛି ଶୁଣ ।

ମନୁଷ୍ୟ ଜୀବନ ସବୁବେଳେ ହତାଶାମୟ । ତାହାର ମାନସ-ଲତାରେ ଅପର୍ଯ୍ୟାପ୍ତ ଆଶା-ଫୁଲ ଫୁଟେ, ମାତ୍ର କେତୋଟା ଫୁଲରୁ ଫଳ ହୁଏ ? ସଂସାରେ ଆଘାତରେ ଫୁଲଗୁଡ଼ିକ ମଉଳି ଯାଇ ଝଡ଼ିପଡ଼େ ଏବଂ ପଡ଼ି ମାଟିରେ ମିଶିଯାଏ । ସଂସାରରେ ଆଘାତ ଯେପରି ମନୁଷ୍ୟର ଏକମାତ୍ର ପ୍ରାପ୍ୟ । ଆଘାତ ଉପରେ ଆଘାତ, ପୁଣି ତାହା ଉପରେ ଆଘାତ, ଜୀବନଟାଯାକ କେବଳ ଆଘାତ ଲାଗି ରହିଅଛି । ଆଘାତ ଏବଂ ହତାଶା ମନୁଷ୍ୟର ଅଲୋଡ଼ା ବନ୍ଧୁ, ତାକୁ କେହି ନ ଖୋଜିଲେ ବି ସେ ବଳେ ବଳେ ଆସି ବନ୍ଧୁ ହୁଏ । ଏହି ଦୁଇଟି କୁବନ୍ଧୁ ଯୋଗେ ସେ ନାନା ହୀନସ୍ଥାରେ ପଡ଼େ । ହତାଶାର ଆଘାତ ସହି ନ ପାରି କିଏ ପାଗଳ ହୁଏ – କିଏ ଗୃହତ୍ୟାଗୀ ହୁଏ—କିଏ ହାହାମୟ ଜୀବନରେ ଘୋର ଦୁର୍ବହ ବୋଧ କରି ପ୍ରାଣତ୍ୟାଗ କରିବାକୁ ସୁଦ୍ଧା କୁଣ୍ଠିତ ହୁଏ ନାହିଁ । ଏହି ମନୁଷ୍ୟ ଜୀବନର ସୁଖ । ମନୁଷ୍ୟ ପ୍ରାଣ ସ୍ୱାଭାବତଃ ସୁଖ ଖୋଜେ । ସେଥିପାଇ ପ୍ରାଣ ଉତ୍ସର୍ଗ କରେ, ମାତ୍ର ଫଳ କଣ ହୁଏ ? ତାହାର ସହସ୍ରେ ଚିନ୍ତା - ଲକ୍ଷେ ଚେଷ୍ଟା – କୋଟିଏ କଳ୍ପନା, ସବୁ ବାୟୁରେ ମିଳାଇଯାଏ । ଆତ୍ମଶକ୍ତି – ଆତ୍ମପ୍ରଭାବ ସବୁ ବିଫଳ ହୁଏ ।

ଏହି ମହାକାଳଫଳ 'ସୁଖ' ଶବ୍ଦର ସ୍ରଷ୍ଟା କିଏ ? ମନୁଷ୍ୟ ମନରେ ସେ ସୁଖର ଆଶା ହୁଏ; ମାତ୍ର ସୁଖ ହୁଏନାହିଁ, ଜୀବନରେ ଟିକିଏ ଖଣ୍ଡ ଦେଖାଇ ଦେଇ ପୁଣି ଅନ୍ଧାର କରିଦିଏ । ସବୁବେଳେ

ଯେବେ ଅନ୍ଧାରରେ ରହିବାକୁ ହେବ, ତେବେ ଟିକିଏ ଆଲୁଅର ମୁହଁ ଦେଖି ଲାଭ କଅଣ ? ତାହା ଦେଖିବାଠାରୁ ଆଦୌ ନ ଦେଖିବା ବରଂ ବହୁଗୁଣ ଶ୍ରେୟ । କେଉଁ ଅଦୃଶ୍ୟ-ଦେବତା ମନୁଷ୍ୟକୁ ସ୍ୱର୍ଗକୁ ଉଠାଇ ନେଇ ପୁଣି ଆଣି ଖସ୍ୱରେ ପକାଇଦିଏ । ଏ ଜୀବନ ହାସ୍ୟମୟ ନୁହେଁ—ଖର କ୍ରନ୍ଦନମୟ, ପୁଣି ସରଳ ନୁହେଁ, କୁଟିଳତାରେ ମହା ଜଟିଳ । ଜୀବନର ପଥ ବି କର୍କଶ, ପିଚ୍ଛିଳ । ହତାଶାର ନିଦାରୁଣ ଆଘାତରେ ଜୀବନ ପଦେ ପଦେ କ୍ଷୟ ହେଉଅଛି; ମାତ୍ର ପୂର୍ଣ୍ଣତା ଆଡ଼କୁ ଯାଉଛି କାହିଁ ? ଏହିପରି ଅବରୋଧ ବିସଦୃଶ ଭାବ ଦେଖି ଏ ସୃଷ୍ଟିର ଗୋଟିଏ ଲକ୍ଷ୍ୟ ଥିଲାପରି ବୋଧ ହୁଏ ନାହିଁ । ଯେଉଁ ଜୀବନରେ ଏତେ ହାହାକାର, ଏତେ କୁଟିଳତା, ଏତେ ଅହଂକାର, ଏତେ ଗୁପ୍ତ ଶତ୍ରୁତା, ଏତେ ଅଶାନ୍ତି ସେ ଜୀବନର ମୂଲ୍ୟ ବା ମହତ୍ତ୍ୱ କେତେ ? ଏପରି ଯନ୍ତ୍ରଣାମୟ ଜୀବନ କାହିଁକି କିଏ ସୃଷ୍ଟିକଲା ? କେହି କେହି କହନ୍ତି—ଜୀବନକୁ ମନୁଷ୍ୟ ନିଜେ ଯନ୍ତ୍ରଣାମୟ କରେ, ସେଥିପାଇଁ ସେ ନିଜେ ଦାୟୀ । କିନ୍ତୁ ମୁଁ ଏହା ସ୍ୱୀକାର କରିବି ନାହିଁ । ଉନ୍ନତିରେ କେବେ ମୁଁ ଔଦ୍ଧତ୍ୟ ପ୍ରକାଶ କରିନାହିଁ, ଅବନତିରେ ବି ଦୁଃଖ କରିନାହିଁ । ଏହା ମୋର ବ୍ୟର୍ଥ ଦର୍ପୋକ୍ତି ନୁହେଁ; ଏ ବିଷୟ ଶକ୍ତି ସ୍ୱୟଂ ଅନ୍ତର୍ଯ୍ୟାମୀ । ମୁଁ ତାଙ୍କଠାରୁ ସ୍ୱତନ୍ତ୍ର ବୋଲି କେବେ ଭାବିନାହିଁ । ଯେତେବେଳେ ତାଙ୍କୁ ଭୁଲିଯାଇଥାଏ, ସେତେବେଳେ 'ମୁଁ' ବୋଲି କିଏ ଗୋଟାଏ ଦୈତ୍ୟ କି ଦାନବ କେଉଁଠୁ ଆସି ମୋ ଭିତରେ ପଶିଯାଏ; ମାତ୍ର ଚେତନା ଆସିଲାକ୍ଷଣି ସେ ଆଉ ରହେ ନାହିଁ—ସେହି ଅନ୍ତର୍ଯ୍ୟାମୀ ପୁରୁଷଙ୍କ ଦେହରେ ଲୀନ ହୋଇଯାଏ । ସେତେବେଳେ ଭାବେଁ—ସେ ଗୋଟିଏ ଚୋର, ମୋର ବିଶ୍ୱାସ ଚୋରି କରିବାକୁ ଆସିଥିଲା, ମୋର ଜୀବନ ପ୍ରହରୀକୁ ଦେଖି ଭୟରେ ପଳାଇ ଗଲା ।

ସୁଖ ଦୁଃଖକୁ ମୁଁ କେବେ ଦେହକୁ ନିଏ ନାହିଁ—ସବୁ ତାଙ୍କର ଉପରକୁ ପକାଇଦିଏ । ତେବେ ସୁଦ୍ଧା ସଂସାର ମୋ ଉପରେ ପ୍ରଭାବ ବିସ୍ତାରକରି ଭୟ ଦେଖାଏ କାହିଁକି ? ଖାଲି ଏହି ଜୀବନଟାପାଇଁ ସିନା ! ଜୀବନ ନ ଥିଲେ ସେ କାହା ଉପରେ କ୍ଷମତା ପ୍ରକାଶ କରନ୍ତା ? ଯେଉଁ ଜୀବନଲାଗି ଏତେ ଯନ୍ତ୍ରଣା—ଏତେ ଦୁର୍ଗତି ଭୋଗ କରିବାକୁ ହୁଏ, ସେ ଜୀବନର ପ୍ରୟୋଜନ ବା କଅଣ ? କପଟ ସେ ପାପ ମୋ ଦେହରୁ ଗଲେ ମୁଁ ନିଶ୍ଚିନ୍ତ ହୁଅନ୍ତି । ହେ ଅଶ୍ରୁଦେବତା, ସେଥିପାଇଁ ତୁମ୍ଭଙ୍କୁ ଡାକୁଛି । ତୁମ୍ଭେ ମୋର ପରମାତ୍ମୀୟ—ତୁମ୍ଭେ ମୋର ହିତୈଷୀ ବନ୍ଧୁ, ଏ ଦୀନହୀନ ଅସହାୟର କାତର ନିମନ୍ତ୍ରଣ ଗ୍ରହଣକରି ମୋତେ ଏ ସଙ୍କଟରୁ ଉଦ୍ଧାର କର । ତୁମ୍ଭକୁ ମୁଁ ଦୂତପଦରେ ବରଣ କଲି, ଦୟାକରି, ମୋର ଦୁର୍ଗତି ମୋର ପ୍ରାଣାରାମ ହରିଙ୍କ ସମ୍ମୁଖରେ ଯାଇ ଜଣାମଣା କର । ତୁମ୍ଭେ ଏକା ଏ କାର୍ଯ୍ୟର ଉପଯୁକ୍ତ ପାତ୍ର, ତୁମ୍ଭ ଛଡ଼ା ସେ ଅଗମ୍ୟ, ଅଜ୍ଞାତ ସ୍ଥାନକୁ ଆଉ କାହାରି ଯିବାକୁ ସାଧ ନାହିଁ । ତୁମ୍ଭେ ଯାଇଁ ମୋର ସେହି ଜୀବନଦାତାଙ୍କୁ କହିବ, "ହେ ଦୟାମୟ ପ୍ରଭୁ, ତୁମ୍ଭେ ସୃଷ୍ଟି ଜୀବର—ତୁମ୍ଭ ଅଧମ ସନ୍ତାନର ଅଶାନ୍ତ ଜୀବନ ଧ୍ୱଂସ କରିଦିଅ । ତୁମ୍ଭେ ଅନ୍ତର୍ଯ୍ୟାମୀ, ତାହାର ଅନ୍ତରର ବ୍ୟଥା କି ଜାଣୁନାହଁ, ହରି ! ସେ ଚାହେଁ—ନିସ୍ୱାର୍ଥ ପ୍ରେମମୟ ଜୀବନ, ସେ ଚାହେଁ କର୍ମସାର୍ଥକ ଜୀବନ, ସେ ଚାହେଁ—ଶାନ୍ତିମୟ ମଧୁମୟ ଅମୃତ ଜୀବନ । ଜଞ୍ଜାଳ-ଉପଦ୍ରବମୟ ଜୀବନ ତାହାର ପ୍ରାର୍ଥନୀୟ ନୁହେଁ । ତାହାର ହାହାମୟ ଜୀର୍ଣ୍ଣ ଜୀବନ ଚୂର୍ଣ୍ଣକରି ତାକୁ କର୍ମମୟ ନବଜୀବନ ଏବଂ ପବିତ୍ର ଧର୍ମଜୀବନ ପ୍ରଦାନ କର । ବାଲ୍ୟକାଳରୁ ସଂସାର ଚାବୁକ ପ୍ରହାର ସହି ସହି ତାହାର ଦେହ

ପଚିଯାଇ ପୂତିଗନ୍ଧମୟ ହୋଇଗଲଣି—ଅଙ୍ଗ ପ୍ରତ୍ୟଙ୍ଗ ଖସି ପଡ଼ଲଣି, ସେ ଆଜ କଷାଘାତ ସହିପାରିବ ନାହିଁ । ସେ ମୁକ୍ତି ଘୃହେଁ ନାହିଁ, ଘୃହେଁ—କର୍ମମୟ, ଶୁଦ୍ଧପୂତ ନୈତିକ ଜୀବନ । ପ୍ରଭୁ, ଆଶ୍ରିତର ମନୋରଥ ପୂର୍ଣ୍ଣ କର । ତୁମ୍ଭର ଅଭୟ ପଦଚ୍ଛାୟାରେ ବସି ଟିକଏ ଶାନ୍ତିରେ ନିଃଶ୍ୱାସ ମାରିଲେ ସେ ନିଜକୁ କୃତାର୍ଥ ମଣିବ ।”

ହେ ଅଶ୍ରୁବନ୍ଧୁ, ହେ ଅଶ୍ରୁଦୂତ, ମୁଁ ଏତିକ ମାତ୍ର କହିଲି, ମୋର କଲ୍ୟାଣ ପାଇଁ ତୁମ୍ଭଙ୍କୁ ଆଜ ଯାହା ଭଲ ଦିଶିବ ତାହା କରିବ । ତୁମ୍ଭର ଗତିପଥ ମଙ୍ଗଳମୟ ହେଉ, ଯାଅ ବନ୍ଧୁ—ବିଦାୟ ।

---

( ‘ଭଞ୍ଜ ପ୍ରଦୀପ’ ପତ୍ରିକାରୁ ଗୃହୀତ )

# କୃଷି

## ୬ କଳାଧର ଦେବ

ଆଦି ଯୁଗରେ ମନୁଷ୍ୟ ବନ୍ୟ ଶାକ ଫଳ ମୂଳ ଓ ମାଂସଦ୍ୱାରା ଜୀବନ ଧାରଣ କରୁଥିଲା । କ୍ରମେ ଭୂମିକର୍ଷଣ କରି ଶସ୍ୟ ଓ ଫଳ ଉତ୍ପନ୍ନ କରିବାର ଉପାୟ ଉଦ୍ଭାବନ କଲା । ମନୁଷ୍ୟଜାତିର ବଂଶ-ବୃଦ୍ଧି ସଙ୍ଗେ ସଙ୍ଗେ ମାଂସ ଓ ବନ୍ୟ ଫଳମୂଳ ସହଜଲଭ୍ୟ ହେଲା ନାହିଁ । ଏଣୁ କ୍ରମେ କର୍ଷଣ ଦ୍ୱାରା ଖାଦ୍ୟପଦାର୍ଥ ଉତ୍ପାଦନ କରି ପାରିବା ହେତୁ ମନୁଷ୍ୟ କେବଳ ଜୀବନ ସଂଗ୍ରାମରେ ଅନ୍ୟ ପଶୁ ଅପେକ୍ଷା ଜୟଯୁକ୍ତ ହେଲା । ଅଧୁନା ମନୁଷ୍ୟ ତାର ଆଦି ପୂରୁଷର ଜୀବନୋପାୟ ସ୍ୱଭାବଲଭ୍ୟ ମାଂସ ଓ ବନ୍ୟ ଫଳମୂଳ ବ୍ୟତିରେକେ ମଧ୍ୟ ଅନାୟାସରେ ବଞ୍ଚିପାରେ ।

କର୍ଷଣ ହିଁ ମନୁଷ୍ୟର ସଭ୍ୟତାର ସହାୟଭୂତ । ଆଦି ମାନବ କେବେ ପ୍ରଥମରୁ ଭୂମି କର୍ଷଣ କରି ଖାଦ୍ୟ ଉତ୍ପାଦନର ପନ୍ଥା ଶିକ୍ଷା କଲା, ତାହା କେହି ସ୍ଥିର କରି କହି ନ ପାରେ । ତାହା ଯୁଗ ଯୁଗାନ୍ତରର କଥା । ଇତିହାସର ମଧ୍ୟ ଅଗୋଚର ।

ଏହା ଅନୁମାନ କରାଯାଇ ପାରେ ଯେ, ମନୁଷ୍ୟ ପ୍ରଥମେ ପଶୁଶୃଙ୍ଗ ଓ ବକ୍ର କାଷ୍ଠ ସାହାଯ୍ୟରେ ଭୂମି କର୍ଷଣ ବା ଖନନ କରିବାକୁ ଶିକ୍ଷା କରିଥିଲା, କାରଣ ସେତେବେଳେ ମନୁଷ୍ୟ ଲୁହା ପ୍ରଭୃତି ଧାତୁର ବ୍ୟବହାର ଆଦୌ ଶିକ୍ଷା କରି ନ ଥିଲା । ତାର ପ୍ରୟୋଜନ ତୁଳନାରେ ପଶୁଶୃଙ୍ଗ ଓ ବକ୍ର କାଷ୍ଠଖଣ୍ଡ ଭୂମି କର୍ଷଣ ନିମନ୍ତେ ଯଥେଷ୍ଟ ବୋଲି ବିବେଚିତ ହେଉଥିଲା । ଅଭାବ-ଜ୍ଞାନ ବୃଦ୍ଧି ସଙ୍ଗେ ସଙ୍ଗେ କୃଷି କାର୍ଯ୍ୟ ବୃଦ୍ଧି କରିବାର ପ୍ରୟୋଜନ

ହେଲା । ମନୁଷ୍ୟ ଗୃହୋପଯୋଗୀ ଯନ୍ତ୍ରପାତି ପ୍ରସ୍ତୁତ କରିବାକୁ ଶିକ୍ଷା କଲା । ପଶୁଶୃଙ୍ଗ ଓ ବକ୍ର କାଠଖଣ୍ଡରେ ଅଭିବ୍ୟକ୍ତ ଆମ୍ଭମାନଙ୍କର ଲଙ୍ଗଳ । ଏହାର କ୍ରମ ଉନ୍ନତିର ବିସ୍ତୃତ ବିବରଣ ଏଠାରେ ଉଲ୍ଲେଖ କରିବା ନିଷ୍ପ୍ରୟୋଜନ । ମାତ୍ର ଏହା ଯେ ସତ୍ୟ, ଏଥିରେ ସନ୍ଦେହ କରିବାର କିଛି କାରଣ ନାହିଁ ।

ଭାରତବର୍ଷ କୃଷି-ପ୍ରଧାନ ଦେଶ, ଏହା ସମସ୍ତେ ସ୍ୱୀକାର କରନ୍ତି ଏବଂ ଏ ଦେଶବାସୀଙ୍କର ପ୍ରଧାନ ଜୀବନୋପାୟ ଯେ କୃଷି, ଏହା ମଧ୍ୟ କେହି ଅସ୍ୱୀକାର କରିବେ ନାହିଁ । ମାତ୍ର ବୈଦିକ ଯୁଗରୁ ଆରମ୍ଭି ଆଜଯାଏ ଭାରତବାସୀ ଧୀର ମନ୍ଥର ଗତିରେ ଚାର କୃଷି କାର୍ଯ୍ୟରେ ଚାଲିଛି । ପୂର୍ବ ପୁରୁଷଙ୍କର ପ୍ରଚଳିତ ପନ୍ଥାର ନିୟମ ଓ ଗତି ଭଙ୍ଗ କରୁ ନାହିଁ । ଏ ଜାତି ଅନ୍ୟ ହିତକର ସଂସ୍କାରରେ ଯେପରି ଅମନୋଯୋଗୀ ଏକମାତ୍ର ଜୀବନୋପାୟ କୃଷି କର୍ମରେ ମଧ୍ୟ ତଦନୁରୂପ ଅମନୋଯୋଗୀ । ଏଣୁ ଏ ଦେଶର ଦାରିଦ୍ର୍ୟ କେବେ ଘୁଞ୍ଚୁ ନାହିଁ ।

କୃଷି ସାମଗ୍ରୀ କିମ୍ବା ଆୟ ବୃଦ୍ଧିର ଉନ୍ନତତର ପନ୍ଥା ଆବିଷ୍କାର ନିମନ୍ତେ ବହୁକାଳରୁ ଏ ଦେଶବାସୀର ମସ୍ତିଷ୍କ ଅନୁର୍ବର । ଏଣୁ ପ୍ରତ୍ୟେକ ବିଷୟର ସାହାଯ୍ୟ ନିମନ୍ତେ ଏ ଦେଶବାସୀ ପାଶ୍ଚାତ୍ୟ ଦେଶବାସୀଙ୍କ ମୁଖାପେକ୍ଷୀ ହୋଇ ରହିବାକୁ ବାଧ୍ୟ । କ୍ଷତି ନାହିଁ; ମାତ୍ର ସର୍ବସାଧାରଣଙ୍କ ନିମନ୍ତେ ସେ ସୁବିଧା ନାହିଁ ବା ଜାଣିବାର ଇଚ୍ଛା ନାହିଁ ? ଏଣୁ ପାର୍ବତୀୟ ଜୁଆଙ୍ଗ ପ୍ରଭୃତି ମୃଗଶୃଙ୍ଗ ସାହାଯ୍ୟରେ ବିରିଡ଼ା କୃଷି କରନ୍ତି ଏବଂ ଆମ୍ଭେମାନେ ପୂର୍ବ ପୁରୁଷ ଆବିଷ୍କୃତ, ସେହି ଲଙ୍ଗଳ, ମଇ ସାହାଯ୍ୟରେ ସମତଳ ଭୂମି କର୍ଷଣ କରୁଁ । ଏ ପନ୍ଥା ଚାଲିଛି ୧ ପୁଣି କେତେ ଯୁଗ ଚାଲିବ, କିଏ କହିପାରେ ?

ପାଶ୍ଚାତ୍ୟଦେଶ ଆମ୍ଭମାନଙ୍କଠାରୁ ଅନେକ ପଛରେ କୃଷି କାର୍ଯ୍ୟ ଆରମ୍ଭ କରିଥିବାର ଜଣାଯାଏ । ମାତ୍ର ସେମାନେ କୃଷି କର୍ମରେ ଆମ୍ଭମାନଙ୍କଠାରୁ କେତେ ଦୂର ଯେ ଅଗ୍ରସର ହେଲେଣି ଏହା ଚିନ୍ତା କଲେ ବିସ୍ମୟାଭିଭୂତ ହେବାକୁ ହୁଏ । ଆମ୍ଭମାନଙ୍କର ଲଙ୍ଗଳ ସହିତ ସେମାନଙ୍କ ନବ-ଉଦ୍ଭାବିତ ଟ୍ରାକ୍ଟର ବା କଳ ଲଙ୍ଗଳର ତୁଳନା କଲେ ସହଜରେ ଜଣାପଡ଼ିବ ଯେ ଆମ୍ଭମାନଙ୍କୁ ଛାଡ଼ି ପାଶ୍ଚାତ୍ୟ ଦେଶବାସୀଙ୍କୁ କାହିଁକି ଲକ୍ଷ୍ମୀ ଆଲିଙ୍ଗନ କରିଛନ୍ତି । ଗଭୀର ଚାଷ ଓ ଶୀଘ୍ର ଚାଷ ଦ୍ୱାରା ଜମିର ଉର୍ବରତା ବଢ଼େ ଓ ଶୀଘ୍ର କାର୍ଯ୍ୟକାରୀ ହୁଏ । ମାତ୍ର ଆମ ଦେଶବାସୀ ତାହା ବୁଝି ସୁଦ୍ଧା କେହି ହେଲେ ଜଣେ ଏ ଦେଶର ଅଭାବ ଓ ଅର୍ଥ ତୁଳନାରେ ଗୋଟିଏ ଚାଷ ଯନ୍ତ୍ର ଉଦ୍ଭାବନ କରିପାରି ନାହିଁ ।

ଜମିର ଉତ୍ପନ୍ନ ଦ୍ରବ୍ୟ ଯେତେ ଶୀଘ୍ର ଗୃହକୁ ଅଣାଯାଇ-ପାରେ, ତେତେ ମଙ୍ଗଳ । ଏହା ବିବେଚନା କରି ସେ ଦେଶବାସୀ ଏପରି ପ୍ରକାଣ୍ଡ ପ୍ରକାଣ୍ଡ ଯନ୍ତ୍ର ନିର୍ମାଣ କରିଅଛନ୍ତି ଯେ, ଘଣ୍ଟାକ ମଧ୍ୟରେ ମାଣେ, ଦୁଇମାଣ ଜମିର ଗହମ କର୍ତ୍ତିତ ହୁଏ । କେବଳ ଏତିକି ନୁହେ ସେହି କଳ ଗହମ କର୍ତ୍ତନ କରୁ କରୁ ତାହାକୁ ମଳା ପରିଷ୍କାର କରି ବସ୍ତା ବନ୍ଦ କରି ଫୋପାଡ଼ି ଦିଏ । ଏ ପ୍ରକାର ଛୋଟବଡ଼ କୃଷିକ୍ଷେତ୍ର ଓ ବଗିଚାର କେତେ ପ୍ରୟୋଜନୀୟ ଓ କାର୍ଯ୍ୟକାରୀ ଯନ୍ତ୍ର ଆବିଷ୍କୃତ ହୋଇଅଛି ଯେ, ତହିଁର ବିବରଣୀ ଲେଖିହେବ ନାହିଁ । ମସ୍ତିଷ୍କବାନ୍ ବ୍ୟକ୍ତିମାନେ ଆବିଷ୍କାର କରୁଅଛନ୍ତି ଏବଂ କୃଷୀ ଓ ବଗିଚାବାଲାମାନେ ତାହା ବ୍ୟବହାର କରି ଲାଭବାନ୍ ହେଉଅଛନ୍ତି ।

କୃଷି କର୍ମର ପ୍ରଧାନ ଉପାଦାନ ଭୂମି ଓ ସାର । ଏତେ ଦିନରେ ଭାରତବାସୀ ଗୋବର ସାର ଭିନ୍ନ ଅନ୍ୟ କୌଣସି କୃତ୍ରିମ ବା ରାସାୟନିକ ସାର ଆବିଷ୍କାର କରି ପାରି ନାହାନ୍ତି କିମ୍ବା ଏହି ସଭ୍ୟ ଯୁଗରେ ସଭ୍ୟ ଦେଶର ଉଦ୍ଭାବିତ ସାର ପ୍ରୟୋଗ ଦ୍ୱାରା ନିଜର ଶସ୍ୟକ୍ଷେତ୍ର ଉର୍ବର କରି ଯଥେଷ୍ଟ ଲାଭବାନ୍ ହୋଇ ପାରୁ ନାହାନ୍ତି । ବ୍ୟୟ ନ କଲେ କଦାପି ସନ୍ତୋଷଜନକ ଲାଭ ହେବା ସମ୍ଭବ ନୁହେଁ । ଆମ ଦେଶବାସୀ ଭବିଷ୍ୟତ ପ୍ରାପ୍ତ୍ୟାଶାରେ ବ୍ୟୟ କରିବାକୁ ନିତାନ୍ତ କୁଣ୍ଠିତ, ଏହା ସମସ୍ତେ ସ୍ୱୀକାର କରିବେ । ପାଶ୍ଚାତ୍ୟ ଜାତି ଆପଣାର ବିଶ୍ୱାସ ଉପରେ ନିର୍ଭର କରି ଅକାତର ବ୍ୟୟ କରନ୍ତି । ଭବିଷ୍ୟତରେ କି ଘଟିବ ତତ୍ପ୍ରତି ସେମାନଙ୍କର ସଙ୍କୋଚ ନ ଥାଏ । କେବେ ଯେ କ୍ଷତି ନ ହୁଏ ଏପରି ନୁହେଁ, ତେବେ କୃତକାର୍ଯ୍ୟତା ହିଁ ସେମାନଙ୍କର ଅଧ୍ୟବସାୟ ଓ ନିର୍ଭରଶୀଳତାର ପୁରସ୍କାର—ଏହା ସର୍ବଦା ଦୃଷ୍ଟିଗୋଚର ହୁଏ । ଇଂଲଣ୍ଡର ଗୃହଲି ସିବୃକ ଅତ୍ୟଧିକ ଓ ନାନାବିଧ ସାର ପ୍ରୟୋଗ ଦ୍ୱାରା ତାଙ୍କର ଭୂମିର ଉତ୍ପାଦିକା ଶକ୍ତି କି ପରିମାଣରେ ବୃଦ୍ଧି କରି ଲାଭବାନ୍ ହୋଇଥିଲେ, ତାହା ଭାବିଲେ ବିସ୍ମିତ ହେବାକୁ ହୁଏ । ତାଙ୍କର ଏବଂବିଧ ଦୁଃସାହସିକତା ଦେଖି ତାଙ୍କର ସହ-କର୍ମୀ କୃଷୀମାନେ ପ୍ରଥମେ ତାଙ୍କ ଉପରେ ଥଟ୍ଟା ବିଦ୍ରୂପ ବର୍ଷଣ କରୁଥିଲେ । ମାତ୍ର ଗୃହଲି ଯେତେବେଳେ ଦେଖାଇଦେଲେ ଯେ, ସୁକ ଏକ୍ ମାଣ ଜମିରୁ ଉତ୍ପନ୍ନ ୪୦୦୦ ପାଉଣ୍ଡ ଦ୍ରବ୍ୟ, ସେତେ-ବେଳେ ସମସ୍ତେ ତାଙ୍କର କୃଷି ଅଭିଜ୍ଞତାର ଭୂୟସୀ ପ୍ରଶଂସା ନ କରି ରହିପାରିଲେ ନାହିଁ ।

ଆମ୍ବ, ପଣସ, କମଳା, କଦଳୀ ପ୍ରଭୃତି ଆମ ଦେଶର ଫଳ । ଆମ ପୂର୍ବପୁରୁଷଗଣ ଯେଉଁ ରୀତିରେ ତୋଟା ପ୍ରସ୍ତୁତ

କରୁଥିଲେ; ଅଦ୍ୟାପି ଆମ୍ଭେମାନେ ତାର କଳ୍ପିତ ବ୍ୟବଧାନ ବା ଉନ୍ନତ କରିପାରୁ ନାହୁଁ । କଲମ ପ୍ରଥା ଆଧୁନିକ ବୋଲିଲେ, ଚଳେ । ପାଶ୍ଚାତ୍ୟ ଦେଶରେ ନାନାପ୍ରକାର କଲମ କଲେଣି ଏବଂ ନାନାପ୍ରକାର ଶଙ୍କର ବୃକ୍ଷ ଓ ଫଳ ଉତ୍ପାଦନ କଲେଣି । ଆମେରିକାର କାଲିଫର୍ଣ୍ଣିଆ ଫଳ ନିମନ୍ତେ ପ୍ରସିଦ୍ଧ । ସେଠାରେ ଜଣେ କୃଷିସନ୍ତାନ ଲୁଥାର ବରବେଙ୍କ । ତାଙ୍କର କୃଷିତତ୍ତ୍ୱର ସାମାନ୍ୟ ପରିଚୟ ପାଠକଙ୍କର ହୃଦୟଗ୍ରାହୀ ହେବ ବୋଧହୁଏ । ଲୁଥାର ବରବେଙ୍କ ଜଣେ ଅଳ୍ପଶିକ୍ଷିତ ଗରିବ ବାଳକ । ତାଙ୍କର ଅଭିଜ୍ଞତା ଓ ଅଧ୍ୟବସାୟଦ୍ୱାରା ସେ ଯେଉଁ ନୂତନ ଆଳୁ ଉତ୍ପନ୍ନ କରିଥିଲେ, ତାହାର ନାମ ଦିଆଯାଇଥିଲା—ବରବେଙ୍କ ପଟାଟୋ । ପ୍ରତିବର୍ଷ ଲକ୍ଷାଧିକ ଟଙ୍କାର ଏହି ଆଳୁ ଯୁକ୍ତରାଜ୍ୟରେ ଉତ୍ପନ୍ନ ହୁଏ । ଏଥିରୁ ଅନାୟାସରେ ହୃଦୟଙ୍ଗମ ହୋଇପାରେ ଯେ ଜଣେ ମନୁଷ୍ୟର ଅଭିଜ୍ଞତା ଫଳରୁ ଗୋଟିଏ ଦେଶ କେତେଦୂର ଉପକୃତ ଓ ଲାଭବାନ୍ ହୁଏ ।

ବରବେରଙ୍କର କୃତିତ୍ୱ ଫଳବୃକ୍ଷରେ ଓ ଶଙ୍କର ଫଳବୃକ୍ଷ ଉତ୍ପାଦନରେ । ସେ ଦୁଇଗୋଟି ନୂତନ ବାଲନଟ ବୃକ୍ଷ ଉତ୍ପାଦନ କରିବାଦ୍ୱାରା ବୈଜ୍ଞାନିକମାନଙ୍କର ପ୍ରଶଂସାଭାଜନ ହୋଇଥିଲେ । ଗୋଟିଏ ବୃକ୍ଷର ନାମ ପ୍ୟାରାଡ଼କସ୍ ବାଲନଟ, ଗୋଟିଏ ରଏଲ ବାଲନଟ୍ । ଏ ବୃକ୍ଷ ଉତ୍ପାଦନର ବିବରଣ ଚମତ୍କାର; ମାତ୍ର ତହିଁର ବିସ୍ତୃତ ଆଲୋଚନା ଏଠାରେ ଅନାବଶ୍ୟକ ।

ବରବେଙ୍କ ନୂତନ ପ୍ରକାର ଏପଲ ଫଳ ଉତ୍ପାଦନ କରି ଅଛନ୍ତି । ଏହାଙ୍କର ଉତ୍ପାଦିତ ଫଳର ସୁଗନ୍ଧ ଓ ଦୃଶ୍ୟ ସାଧାରଣ ଫଳଠାରୁ ସ୍ୱତନ୍ତ୍ର ।

ସପ୍ତଫେଣୀ କଣ୍ଟାର କଥା ଭାରତବାସୀ କିଏ ବା ନ ଜାଣେ ? ଭାରତବାସୀଙ୍କ ପ୍ରତି ଏହାର ପ୍ରତ୍ୟୋଜନୀୟତା କିଛି ନାହିଁ । ବରବେଙ୍କ ଏହି କଣ୍ଟା ବୃକ୍ଷକୁ ପଶୁ ଖାଦ୍ୟରେ ପରିଣତ କରିଅଛନ୍ତି । ଏହାର ଉତ୍ପାଦିତ ଫଳର ସୁଗନ୍ଧ ଓ ଦୃଶ୍ୟ ସାଧାରଣ ଫଳଠାରୁ ସ୍ୱତନ୍ତ୍ର । ସେ ଦେଖିଲେ, ଏହି ବୃକ୍ଷ ଗୋଟିଏ ପୁଷ୍ଟିକର ପଶୁ ଖାଦ୍ୟ ହୋଇ ପାରେ ଯେବେ ବୃକ୍ଷରୁ କଣ୍ଟା ନିଷ୍କାସିତ କରି ଯାଇପାରେ । ବହୁ ଚେଷ୍ଟା ଓ ଅଧ୍ୟବସାୟ ଦ୍ୱାରା କେତେକ ବର୍ଷପରେ ବରବେଙ୍କ ଏହି ସପ୍ତଫେଣୀ ବା ନାଗଫେଣୀକୁ କଣ୍ଟକଶୂନ୍ୟ କରି ପଶୁଖାଦ୍ୟରେ ପରିଣତ କଲେ । ଆଜି ପୃଥିବୀର ସବୁଠି ଏହା ପଶୁଖାଦ୍ୟରୂପେ ଗୃହୀତ ହୋଇଅଛି । ଭାରତ ଗଭର୍ଣ୍ଣମେଣ୍ଟଙ୍କ କୃଷିକେନ୍ଦ୍ରମାନଙ୍କରେ ୧୦୦୦ ଖଣ୍ଡକୁ ବୋଧହୁଏ ୫୩୧୲ ଦରରେ ବିକ୍ରୟ ହେଉଅଛି । ଅନ୍ୟାନ୍ୟ ଫଳ ଓ ପୁଷ୍ପ ଉତ୍ପାଦନରେ ଏହାଙ୍କର କୃତିତ୍ୱ ବିସ୍ମୟୋଦ୍ଦୀପକ ।

ଆମ ଦେଶରେ ଏତାଦୃଶ ଲୋକ ଜନ୍ମଲାଭ କରିବାର ଦେଖା ନାହିଁ । ତାହାର କାରଣ ଅନେକ । ସେ ସବୁ ଲେଖି ପ୍ରବନ୍ଧ ବାହୁଲ୍ୟ କରିବାର ପ୍ରୟୋଜନ ମନେ ହେଉ ନାହିଁ ।

—୦—

("ଭଞ୍ଜପ୍ରଦୀପ"ରୁ ଗୃହୀତ)

# ଗୁରୁଶିଷ୍ୟ ସମ୍ବାଦ

## ୬ ଗୋପାଳଚନ୍ଦ୍ର ପ୍ରହରାଜ

ସମ୍ମିଳିତ ଚେଷ୍ଟା ଓ ସଭାସମିତିର ଉପକାରିତା ନିମ୍ନଲିଖିତ ଉଦାହରଣରୁ ବୁଝାଯିବ । ଜ୍ୟୋତ୍ସ୍ନାଯୁକ୍ତ ରାତିରେ ସମୁଦ୍ରବକ୍ଷ ସ୍ଥିର ଥିଲାବେଳେ ସେଥିରେ ଗୋଟିଏ ଚନ୍ଦ୍ରର ପ୍ରତିବିମ୍ବ ପଡ଼ିଥାଏ; କିନ୍ତୁ ସମୁଦ୍ରରେ ଲହରୀ ଆରମ୍ଭ ହେଲେ ଦେଖିବ ଯେ, ସମୁଦ୍ରର ବକ୍ଷ ସହସ୍ର ସହସ୍ର ଚନ୍ଦ୍ରବିମ୍ବରେ ପୂର୍ଣ୍ଣ ହୋଇଯାଏ; ପ୍ରତ୍ୟେକ ଲହରୀରେ ଗୋଟିଏ ଗୋଟିଏ ଚନ୍ଦ୍ର ବିକଶିତ ହୁଏ । ଉଦାହରଣଦ୍ୱାରା ଏତିକି ବୁଝା ଯାଉଅଛି ଯେ, ଅନେକ ଲୋକଙ୍କର ପରସ୍ପର ସମ୍ମେଳନ ହେଲେ ଭାବର ଆଦାନ ପ୍ରଦାନ ଓ ବିକାଶ ନିମନ୍ତେ ସୁବିଧା ହୁଏ; ଯାହା ପୂର୍ବେ ଏକ ଚନ୍ଦ୍ରରୂପ ଧାରଣ କରିଥିଲା, ତାହା ବର୍ତ୍ତମାନ ସହସ୍ର ଚନ୍ଦ୍ର ଆକାରରେ ଜଗତକୁ ମତାଇ ଦିଏ । ଏ ସମ୍ବନ୍ଧରେ ଗୁରୁଙ୍କଠାରୁ ଆଉ ଗୋଟିଏ ଉଦାହରଣ ମିଳିଅଛି—ପର୍ବତର ଭିନ୍ନ ଭିନ୍ନ ସ୍ଥାନରେ ପ୍ରସ୍ତରଖଣ୍ଡମାନ ପଡ଼ି ରହିଅଛି, ଅସରାଏ ଭାରି ବର୍ଷା ହେଲା; ପର୍ବତରୁ ପାଣି ଗଡ଼ି ଗୋହିରୀ ନାଳରେ ସୁଅ ଛୁଟିଲା; କେତେ ପ୍ରସ୍ତରଖଣ୍ଡ ସେ ସ୍ରୋତରେ ପଡ଼ି ଚଡ଼ି ହୋଇ ଗଡ଼ି ଆସିଲା; କ୍ରମେ କ୍ରମେ ସ୍ରୋତଗୁଡ଼ିକ ନଦୀରେ ପରିଣତ ହେଲା; ନଦୀ ସ୍ରୋତର ସଙ୍ଗେ ସଙ୍ଗେ ପଥରଗୁଡ଼ିକ ମଧ୍ୟ ଗଡ଼ି ଗଡ଼ି ଛୁଟିଗଲା । ପ୍ରଥମେ ଯେଉଁ ପ୍ରସ୍ତରଖଣ୍ଡମାନ ବହୁ କୋଣବିଶିଷ୍ଟ ହୋଇ ପର୍ବତରେ ଥିଲା, ଆଜି କେତେ ଦିନ ପରେ ସେହି ପ୍ରସ୍ତରଖଣ୍ଡମାନ ନଦୀବାଲି ମଧ୍ୟରେ ଦେଖିଲାବେଳକୁ ତାହାର କୋଣ ଓ ବନ୍ଧୁରତା ଲୋପ ପାଇ ପ୍ରସ୍ତରଖଣ୍ଡମାନ ଗୋଲ ଓ ମସୃଣ 'ବାଲିଗରଡ଼ା'ରେ ପରିଣତ ।

ହୋଇଅଛି; ଏକା ଘୋଷରେ ବଡ଼ ସାନ ସମସ୍ତଙ୍କର 'ଢମାକ୍' ଭାଙ୍ଗିଗଲା ଓ ସମସ୍ତେ ଏକା ଗୋଲ୍ଡା ଳିଆ ଆକାର ଧାରଣ କଲେ । ସମ୍ମେଳନଦ୍ୱାରା ବଡ଼ ସାନ ସମସ୍ତଙ୍କର ଅଳ୍ପାଧିକ ବନ୍ଧୁରତା ନଷ୍ଟ ହୋଇ ମସଣତା ହୁଏ; ଯେଉଁ ପଥର ପୂର୍ବରେ ଦେହର କୌଣସି ସ୍ଥାନରେ ବାଜିଗଲେ ପୋଷେ ରକ୍ତ ବୋହୁଥିଲା, ଆଜି ତାହା ବାଲିଗରଡ଼ା ଆକାର ଧାରଣ କରି ନୟନସୁଖ ଓ ସ୍ପର୍ଶସୁଖ ଉତ୍ପାଦନ କରୁଅଛି । ସେଥିରେ ସୁନା ମଜା ହୋଇ ଚକ୍‌ଚକ ହେଉଅଛି ।

ମନୁଷ୍ୟ ସମାଜର ବା ଜାତିର ଇତିହାସ ପର୍ଯ୍ୟାଲୋଚନା କଲେ ଦେଖାଯିବ ଯେ, ଏମାନଙ୍କ ଜୀବନର ଗତି ଘଣ୍ଟାର ପେଣ୍ଡୁଲମ୍‌ର ଗତି ସଙ୍ଗେ ସମାନ । ଥରେ ଏକ ପ୍ରାନ୍ତକୁ ଯାଇ ସୀମାରେ ପହଞ୍ଚିଲେ ପୁନର୍ବାର ସେଠାରୁ ଅନ୍ୟଆଡ଼େ ଗତି କରି ବିପରୀତ ଦିଗର ସୀମା ପର୍ଯ୍ୟନ୍ତ ଆସେ । ପ୍ରତ୍ୟେକ ଆଘାତର ପ୍ରତିଘାତ ଅଛି । ପ୍ରତ୍ୟେକ ରକ୍ଷଣଶୀଳ ଆନ୍ଦୋଳନର ପରିବର୍ତ୍ତନଶୀଳ ପ୍ରତିଆନ୍ଦୋଳନ ଅବଶ୍ୟମ୍ଭାବୀ । ହସି ହସି ମନୁଷ୍ୟ ଲୋତକର କୋତର ହୋଇଗଲେ ପଛକୁ କାନ୍ଦ ପକାଏ । ଗୋଟିଏ ବସ୍ତୁର ଏକ ଦିଗରେ ଗତି ହେଉଥିବା ଦେଖିଲେ ସ୍ଥିର କରିବ ଯେ, ଯଦି ଏହି ଗତି ନିରୂପିତ କାଳ ପର୍ଯ୍ୟନ୍ତ ଲାଗି ରହେ, ତାହାହେଲେ ସୀମାରେ ପହଞ୍ଚିଲେ ପୁନର୍ବାର ଏଥିରେ ପ୍ରତିଗତ ହେବ । ଧର୍ମର ଇତିହାସରେ ଦେଖ, ମହା ପାପୀମାନେ ପରମ ଧାର୍ମିକ ପାଲଟିଛନ୍ତି; ରତ୍ନାକର ଦସ୍ୟୁ ସୀମା ପର୍ଯ୍ୟନ୍ତ ଯାଇ ସେଠାରୁ ଫେରି ବାଲ୍ମୀକି ମହାମୁନି ହେଲେ । ଶେଷ ସୀମାକୁ ନ ଯାଇ ଯେ ଅଧ ବାଟରୁ ଫେରନ୍ତି, ତାଙ୍କ ପରିବର୍ତ୍ତନରେ ଅଧିକ ଆସ୍ଥା ହୁଏ ନାହିଁ । ମନ-

ବୋଧ ନ ହେବା ପୂର୍ବରୁ ଯେଉଁ ପରିବର୍ତ୍ତନ ହୁଏ, ତହିଁର ଫଳ ସନ୍ତୋଷଜନକ ନୁହେ । କୌଣସି କାର୍ଯ୍ୟର ସୀମାରେ ନ ପହଞ୍ଚିଲେ ସେଥିର ଉପକାର ସମ୍ୟକରୂପେ ହୃଦୟଙ୍ଗମ ହୋଇ ନ ପାରେ । ସମ୍ୟକ୍ ହୃଦୟଙ୍ଗମ ନ ହେଲେ ଦୃଢ଼ତମ ବିଶ୍ୱାସ ମନରେ ବଦ୍ଧମୂଳ ହୋଇ ନ ପାରେ ।

ଅଧିକାଂଶ ଲୋକେ ଲୋକମତକୁ ଭାରି ଡରନ୍ତି, କାଳେ ଲୋକେ କଅଣ କହିବେ ପରି ! କିନ୍ତୁ 'ଲୋକମତ' କିପରି ବିଶେଷତା କମାକାର ବସ୍ତୁ, ଭଲ କେତେ ଲୋକ ତଦାରଖ କରନ୍ତି ? ଏହି ଜାଣିଆରୁ କିଏ କେତେ ଭାବରେ ଚଳି ଯାଉଅଛନ୍ତି । ରାମଚନ୍ଦ୍ର ସୀତାଙ୍କୁ ନିର୍ବାସନ ଦଣ୍ଡ ବିଧାନ କରିଥିଲେ, କେବଳ ଏହି ଜନ୍ମକୁ ଭୟକରି । ଲୋକାପବାଦ ଓ ଲୋକମତର ପରାକ୍ରମ ଢେର୍ ବେଶି; କିନ୍ତୁ ଟିକିଏ ଅଭ୍ୟାସ କରି ଦେଖିଲେ ଜାଣି ପାରିବ ଯେ, ଏ ନିଗୋଟିଏ 'ହୋ' । ଗୋଟିଏ ତାରକୁ ଦୁଇଆଡ଼େ ଟାଣି ବାନ୍ଧିଦିଅ, ଗୋଟିଏ ଅଂଶରେ ଟିକିଏ ଟଂ କରି ଆଘାତ କରିଦିଅ, ଦେଖିବ ଯେ, ଶବ୍ଦଟି ତାରତମାମ୍ ବ୍ୟାପିଯିବ ଓ ତାରଟି ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ଶବ୍ଦମୟ ହୋଇଯିବ । ପୂର୍ବରୁ ଏଥିର ଗୋଟିଏ ଉଦାହରଣ ଅଛି, ତାହା ଅବଶ୍ୟ ଅଧିକାଂଶ ପାଠକ ଜାଣନ୍ତି, ଯେଉଁମାନେ ଜାଣନ୍ତି ନାହିଁ, ସେମାନଙ୍କ ଉପକାର ନିମନ୍ତେ ପୁନରୁକ୍ତି ଦୋଷ ମାର୍ଜନୀୟ । ଏକ ରାଜାଙ୍କ ଉଆସର ଜଣେ ଧୋବା ଥିଲା । ସେ ଧୋବାର ଲୁଗାବୁହା ଗଧଟିର ନାମ ବୁଧିଆ । ଦିନେ ସେ ଗଧଟି ମରିଗଲା, ଧୋବାର କାର୍ଯ୍ୟ ଅଚଳ ହେଲା; ସେ ଗଧକୁ ବାହନ କରି ଧୋବା କାନ୍ଦୁଥାଏ । ରାଜାଙ୍କର ଜଣେ ପାଖ ଲୋକ ଧୋବାକୁ କାନ୍ଦିବାର କାରଣ ପଚାରିବାରୁ ଧୋବା କାନ୍ଦି କାନ୍ଦି

ଉତ୍ତର କଲା, 'ବୁଧିଆଟି ମରିଗଲା ।' ଭୃତ୍ୟ ଏହା ଶୁଣି କାନ୍ଦି କାନ୍ଦି ନଅରକୁ ଆସି ସମସ୍ତ ଭୃତ୍ୟଙ୍କୁ କହିଲା, 'ବୁଧିଆଟି ମରିଗଲା' । ଭୃତ୍ୟମାନେ ସମସ୍ତେ ବୁଧିଆକୁ ବାନ୍ଧିନେଇ କାନ୍ଦିଲେ; ରାଣୀମହଲରେ ଏ ଖବର ପହଞ୍ଚିଲାରୁ ରାଣୀମାନେ ମଧ୍ୟ ବୁଧିଆ ନାଁ ଧରି କାନ୍ଦିଲେ; ରାଜା ଶୁଣିଲେ, ସେ ମଧ୍ୟ ବୁଧିଆ ଯୋଗୁଁ କେତେ କାନ୍ଦିଲେ; ନଅରବ୍ୟାପୀ କୋଳାହଳ ବୁଧିଆ ଯୋଗୁଁ ପଡ଼ିଗଲା । ଯେଉଁଠାରେ ଶୁଣ, ବୁଧିଆର ବିୟୋଗ ହେତୁ ଶୋକ । ଏହି ଶୋକସମ୍ବାଦ ମନ୍ତ୍ରୀଙ୍କ କାନରେ ପଡ଼ିବାରୁ ମନ୍ତ୍ରୀ ନଅରକୁ ଆସି ଦେଖିଲେ, ଏପରି ଶୂନ୍ୟାକାର ! ରାଜାଙ୍କୁ ପଚାରିଲେ, ଯେଉଁ ବୁଧିଆପାଇଁ କାନ୍ଦୁଅଛନ୍ତି, ସେ ବୁଧିଆ କିଏ ? ରାଜା ଇତସ୍ତତଃ ହୋଇ ରାଣୀ-ମାନଙ୍କଠାକୁ ଖବରଦେଲେ — ବୁଧିଆ କିଏ ? ରାଣୀମାନେ ଭୃତ୍ୟ ମହଲକୁ ସମ୍ବାଦ ଦେଲେ, ଭୃତ୍ୟମାନେ ପ୍ରଥମ ଭୃତ୍ୟକୁ ପଚାରିଲେ; ପ୍ରଥମ ଭୃତ୍ୟ ଉପାୟାନ୍ତର ନ ଦେଖି ଧୋବା ନିକଟକୁ ଯାଇ ଶେଷରେ ସ୍ଥିର କରି ଆସିଲା ଯେ—ଧୋବାର ମୃତ ଗଧଟିର ନାମ ବୁଧିଆ ! ସେ ସମ୍ବାଦ ରଜାଙ୍କୁ ଏତଲା ହେବାରୁ ଅବଶେଷରେ ଶୋକର ବେଗ କମିଗଲା ।

ଅଧିକାଂଶ ଲୋକାପବାଦ, ଜନମତ ଏହିପରି ଉପାଦାନରେ ଗଠିତ । ଆମର ଏ କଥାକୁ ବିଶ୍ୱାସ ନ କରି ସୁଦ୍ଧା ସାଧାରଣତଃ ଗୋଟାଏ ପରୀକ୍ଷା କରିଦେଲେ ସନ୍ଦେହ ତୁଟିଯିବ । ତୁମ୍ଭେ ଦାଣ୍ଡରେ ପାଟିକରି ଦଉଡ଼ "ଆରେ ! ଚୋରରେ ଗଲା ରେ ! ଆରେ ଚୋର ରେ" ଦେଖିବ, ଦଣ୍ଡକ ମଧ୍ୟରେ ଶତାଧିକ ଲୋକ ତୁମ୍ଭର ଅନୁଯାୟୀ ହେବେ ଓ ଚିତ୍କାର କରିବେ; କିନ୍ତୁ ଶତକରା ଜଣେ ସୁଦ୍ଧା ତୁମ ପଛରେ ଦଉଡ଼ିବା ପୂର୍ବରୁ ତୁମ୍ଭଙ୍କୁ ପ୍ରଥମେ ଚୋରର ବୃତ୍ତାନ୍ତ ବା ତଥ୍ୟ ପଚାରିବାକୁ ଯିବ

ନାହିଁ । ଅଧିକାଂଶ ଲୋକାପବାଦ, ଜନରବ, ଜେଜେକାର, ଜନମତ କେବଳ ଅନ୍ଧବିଶ୍ୱାସ, ଚିନ୍ତାଶୂନ୍ୟ, ଅନୁମାନ, ବିଗ୍ଭରହୀନ ଅନୁସରଣ ଫଳ ।

ସଂସାରରେ ଯାହା ଉଲ୍ଲେଖଯୋଗ୍ୟ ହୋଇଅଛି ବା ହେବ, ତାହା 'ଗୃହିଦଉଡ଼ିକଟା'ଙ୍କ ଦ୍ୱାରା । 'ଗୃହିଦଉଡ଼ିକଟା' ନ ହେଲେ ପଦପଦକେ ସ୍ୱାର୍ଥନାଶର ଭୟ ଥାଏ । ଯେଉଁ ସ୍ଥାନରେ ସ୍ୱାର୍ଥନାଶର ଭୟ ଅଛି, ସେଠାରେ ନିଃସ୍ୱାର୍ଥ ଓ ନିର୍ଭୀକ କାର୍ଯ୍ୟର ମାତ୍ରା ତେର୍ କମିଯାଏ । ମାତ ସ୍ଥାନରେ ଓ ଦୁଃଖରେ ପଡ଼ିଲେ ଅନୁଭବ ତେର ବଢ଼େ । ଯେଉଁ ଲୋକ ଦୁଃଖରେ ପଡ଼ି ନାହିଁ, ସେ ଦୁଃଖର ମାତ୍ରା ଓ କାର୍ଯ୍ୟ କଳ୍ପନା ସାହାଯ୍ୟରେ ଅନୁଭବ କରି ପାରିବ ନାହିଁ । ପୃଥିବୀର ଅଧିକାଂଶ ମହାପୁରୁଷ ଦୁଃଖୀରଙ୍କୀ ଘରର ପିଲା । ସେଥିର ଗୋଟାଏ ତାଲିକା ପ୍ରସ୍ତୁତ କଲେ ୧୦।୨୦ ପୃଷ୍ଠା ହେବ । ଦାରିଦ୍ର୍ୟ ଭୋଗରୁ ଅନେକ ଉଚ୍ଚ ଶିକ୍ଷା ଲାଭ କରାଯାଏ । ବେଶି ବଡ଼ଲୋକେ ଦାରିଦ୍ର୍ୟ ଉପାଦାନରେ ଗଢ଼ା । ଅନୁଭବରେ ଦେଖିବ, ଯାହାର ସ୍ୱାର୍ଥହାନି ହେବାର ଭୟ ଅଛି, ସେ ନିଷ୍ଠେ କାମରେ ଢିଲା କରିବ । ଗୃହିଦଉଡ଼ିକଟାଙ୍କର ସ୍ୱାର୍ଥନାଶର ଭୟ ନାହିଁ; ଅତଏବ ସବୁ କାର୍ଯ୍ୟରେ ସେମାନେ ନିର୍ଭୟ । ଯେ ମରିବାକୁ ପ୍ରସ୍ତୁତ, ତାକୁ ଦୁର୍ଭିକ୍ଷ କଅଣ ଡରାଇବ ? ସୁନାର ଯେ ଜ୍ୟୋତି ଦେଖୁଛ, ତାହା କୁହାକୁହା ପୋଡ଼ିହେବାର ଫଳ ସିନା ।

ଅଧିକାଂଶ ନବ୍ୟଶିକ୍ଷିତ ଯୁବକଙ୍କୁ ଦେଖିଲେ, 'ଶିଫଣ୍ଡି ଫରଫରାୟତେ' ଶ୍ଲୋକାଂଶଟି ମନେପଡ଼େ । ଆଧୁନିକ ଶିକ୍ଷାରେ ଗୋଟିଏ ପ୍ରଧାନ ଦୋଷ—ଗମ୍ଭୀରତାର ଅଭାବ । ଏ ଶିକ୍ଷାରେ ଆମ୍ଭେମାନେ ଯେତେ ଜ୍ଞାନ ଉପାର୍ଜନ କରୁଁ, ତାହା ଅଧିକାଂଶ

ସ୍ଥଳରେ ଆଦୌ ଗମ୍ଭୀର ନୁହେଁ । ଆଧୁନିକ ଶିକ୍ଷାରେ 'ପୋଥି ବାଇଗଣ' 'ବାଡ଼ିବାଇଗଣ'ର ପ୍ରଭେଦଟି ବରାବର ଥାଏ । ଶିକ୍ଷା ସଙ୍ଗେ ସଙ୍ଗେ ହୃଦୟରେ ବିଶ୍ୱାସ ଦୃଢ଼ୀଭୂତ ନ ହେଲେ ସେ ଶିକ୍ଷାରେ କୁଫଳ ଛଡ଼ା ସୁଫଳ ଫଳେ ନାହିଁ । ଶିକ୍ଷାଦୋଷରୁ ଆମ୍ଭେମାନେ ଯାହା ଶିକ୍ଷା କରୁଁ, ତାହା ଜୀବନରେ କାର୍ଯ୍ୟରେ ପରିଣତ କରିପାରୁଁ ନାହିଁ ଓ ଜୀବନଟା କେବଳ ଲକ୍ଷ୍ୟହୀନ ଭାବରେ କଟାଉଁ । ମନରେ ଦୃଢ଼ ବିଶ୍ୱାସ ନ ଥାଇ କାର୍ଯ୍ୟକ୍ଷେତ୍ରରେ ଅବତୀର୍ଣ୍ଣ ହେଲେ ଫଳ ବିଖ୍ୟାଷିକାମୟ ହୋଇଉଠେ । ଶିକ୍ଷକମାନେ ମଧ୍ୟ ଯାହା ଶିକ୍ଷା ଦିଅନ୍ତି, ତହିଁରେ ସେମାନଙ୍କ ନିଜର ପୂର୍ଣ୍ଣ ବିଶ୍ୱାସ ନ ଥାଏ । ଶିକ୍ଷା ଦେଲାବେଳେ ଓ କାର୍ଯ୍ୟକ୍ଷେତ୍ରରେ ଶିକ୍ଷକ ଓ ଛାତ୍ରମାନେ ଭିନ୍ନ ଭିନ୍ନ ପୋଷାକ ପିନ୍ଧନ୍ତି । ଶିକ୍ଷା ଗ୍ରହଣ ସଙ୍ଗେ ସଙ୍ଗେ ଶିକ୍ଷିତ ତତ୍ତ୍ୱ ହୃଦୟରେ ବଦ୍ଧମୂଳ ହେବା ଆବଶ୍ୟକ ।

—o—

( ଲେଖକଙ୍କ "ବାଇମହାନ୍ତି ପାଞ୍ଜି" ପୁସ୍ତକରୁ ଗୃହୀତ )

# ଜାବାଳିଙ୍କ ତାରାପୀଡ଼ ବୃତ୍ତାନ୍ତ କଥନ

## ୭ ରାମଚନ୍ଦ୍ର ଆଚାର୍ଯ୍ୟ

ଅବନ୍ତୀ ଦେଶର ଉଜ୍ଜୟିନୀ ନାମରେ ଏକ ନଗରୀ ଅଛି— ଯେଉଁ ସ୍ଥାନରେ ଭୁବନତ୍ରୟର ସୃଷ୍ଟି ସ୍ଥିତି ସଂହାରକାରୀ ମହାକାଳୀ ବିଧାନ ଭଗବାନ ଦେବାଦିଦେବ ମହାଦେବ ଅବସ୍ଥିତ କରୁଥାନ୍ତି; ଯେଉଁ ସ୍ଥାନରେ ଶିପ୍ରାନଦୀ ତରଙ୍ଗରୂପ ଭ୍ରୂକୁଟି ବିସ୍ତାରପୂର୍ବକ ଭାଗୀରଥୀକୁ ଉପହାସ କରି ବେଗବତୀ ହୋଇ ପ୍ରବାହିତ ହେଉ-ଅଛି, ସେଠାରେ ତାରାପୀଡ଼ ନାମକ ଜଣେ ମହା ଯଶସ୍ୱୀ ତେଜସ୍ୱୀ ପ୍ରବଳପ୍ରତାପ ନରପତି ଥିଲେ । ସେ ଅର୍ଜୁନଙ୍କ ତୁଲ୍ୟ ନିଜ ଭୁଜବଳରେ ଆଖଣ୍ଡଭୂମଣ୍ଡଳ ଜୟ ଓ ପ୍ରଜାଗଣଙ୍କ କ୍ଲେଶ ଦୂର କରି ସୁଖରେ ରାଜ୍ୟ ଭୋଗ କରୁଥାନ୍ତି । ତାହାଙ୍କ ଗୁଣରେ ବଶୀଭୂତ ହୋଇ ଲକ୍ଷ୍ମୀ କମଳବନ ତ୍ୟାଗ କରି, ନାରାୟଣଙ୍କ ବକ୍ଷସ୍ଥଳ ପରିତ୍ୟାଗ କରି ତାହାଙ୍କୁ ଗାଢ଼ ଆଲିଙ୍ଗନ କରିଥିଲେ; ସରସ୍ୱତୀ ଚତୁର୍ମୁଖଙ୍କ ମୁଖ ପରମ୍ପରାରେ ବାସ କରିବା କ୍ଲେଶକର ବୋଧକରି ତାହାଙ୍କର ହିଁ ରସନାମଣ୍ଡଳରେ ସୁଖରେ ଅବସ୍ଥିତ କରୁଥିଲେ । ତାହାଙ୍କର ଅମାତ୍ୟଙ୍କ ନାମ ଶୁକନାସ ।

ଶୁକନାସ ବ୍ରାହ୍ମଣକୁଳରେ ଜନ୍ମ ଗ୍ରହଣ କରିଥିଲେ । ସେ ସକଳ ଶାସ୍ତ୍ରରେ ପାରଦର୍ଶୀ, ନୀତିଶାସ୍ତ୍ର-ପ୍ରୟୋଗ-କୁଶଳ, ଭୂଭାରଧାରଣକ୍ଷମ, ଅଗାଧବୁଦ୍ଧି, ଧୀରପ୍ରକୃତି, ସତ୍ୟବାଦୀ ଓ ଜିତେନ୍ଦ୍ରିୟ । ତାଙ୍କର ପତ୍ନୀଙ୍କ ନାମ ମନୋରମା । ଇନ୍ଦ୍ରଙ୍କ ବୃହସ୍ପତି, ନଳଙ୍କ ସୁମତି, ଦଶରଥଙ୍କ ବଶିଷ୍ଠ ଓ ରାମଚନ୍ଦ୍ରଙ୍କ ବିଶ୍ୱାମିତ୍ର ଯେପରି ଉପଦେଷ୍ଟା ଥିଲେ,

ଶୁକନାସ ମଧ୍ୟ ସେପରି ରାଜକାର୍ଯ୍ୟ ପର୍ଯ୍ୟାଲୋଚନା ବିଷୟରେ ରାଜାଙ୍କୁ ଯଥାର୍ଥ ସଦୁପଦେଶ ଦେଉଥାନ୍ତି । ମନ୍ତ୍ରୀଙ୍କର ବୁଦ୍ଧି ଏପରି ତୀକ୍ଷ୍ଣ ଯେ, କୌଣସି ଜଟିଳ ଓ ଦୁରବଗାହ କାର୍ଯ୍ୟସଙ୍କଟ ଉପସ୍ଥିତ ହେଲେହେଁ ବିଚଳିତ ବା ପ୍ରତିହତ ହୁଅନ୍ତି ନାହିଁ । ଶୈଶବାବଧି ଅକୃତ୍ରିମ ପ୍ରଣୟ ସଞ୍ଚାର ହୋଇଥିବାରୁ ରାଜା ତାହାଙ୍କୁ କୌଣସି ବିଷୟରେ ଅବିଶ୍ୱାସ କରୁ ନ ଥାନ୍ତି । ସେ ମଧ୍ୟ ବିଶୁଦ୍ଧ ଅନ୍ତଃକରଣରେ ନୃପତିଙ୍କ ହିତକାର୍ଯ୍ୟ ଅନୁଷ୍ଠାନରେ ତତ୍ପର ଥିଲେ । ପୃଥିବୀରେ ତାହାଙ୍କ ତୁଲ୍ୟ ପ୍ରତିଦ୍ୱନ୍ଦୀ ନ ଥିଲେ ଏବଂ ପ୍ରଜାମାନଙ୍କର ଉତ୍ପାତ ଓ ଅସୁଖ ଆକାଶକୁସୁମ ପରି ଅଳୀକ ବିଷୟ ହୋଇଥିଲା; ସୁତରାଂ ସକଳ ବିଷୟରେ ନିଶ୍ଚିନ୍ତ ହୋଇ ଶୁକନାସଙ୍କ ଉପରେ ରାଜ୍ୟଶାସନ ଭାର ସମର୍ପଣପୂର୍ବକ ରାଜା ଯୌବନ-ସୁଖ ଅନୁଭବ କରୁଥାନ୍ତି । କେତେବେଳେ ଜଳବିହାର, କେତେବେଳେ ବନବିହାର, କେତେବେଳେ ବା ନୃତ୍ୟ ଗୀତ ବାଦ୍ୟ ଆମୋଦରେ ସୁଖରେ କାଳ ହରଣ କରୁଥିଲେ । ଶୁକନାସ ସେହି ଅସୀମ ସାମ୍ରାଜ୍ୟ କାର୍ଯ୍ୟ ଅନାୟାସରେ ସୁଶୃଙ୍ଖଳରୂପେ ସମ୍ପନ୍ନ କରୁଥାନ୍ତି । ତାହାଙ୍କର ଅପକ୍ଷପାତିତା ଓ ସଦ୍‌ବିଚାର ଗୁଣରେ ପ୍ରଜାମାନେ ଅତ୍ୟନ୍ତ ବଶୀଭୂତ ଓ ଅନୁରକ୍ତ ହୋଇଥିଲେ ।

କି ଭୂସମ୍ପତ୍ତି, କି ମଣିମୁକ୍ତାପ୍ରବାଳ ପ୍ରଭୃତି ଧନରାଶି, କି ଗୋ ଅଶ୍ୱ ପ୍ରଭୃତି ପଶୁନିଚୟ, କି ସୈନ୍ୟସାମନ୍ତ—ସମସ୍ତ ରାଜାଙ୍କର ପ୍ରଚୁର ପରିମାଣରେ ଥିଲା; କିନ୍ତୁ ସେ ସନ୍ତାନମୁଖାବ-ଲୋକନରୂପ ସୁଖଲାଭରୁ ବଞ୍ଚିତ ହୋଇ ଅତିଶୟ ଦୁଃଖିତ ଥିଲେ । ସନ୍ତାନ ନ ହେବାରୁ ସଂସାରରେ ଅରଣ୍ୟ ଜ୍ଞାନ, ଜୀବନରେ ବିଡ଼ମ୍ବନା ଜ୍ଞାନ ଓ ଶରୀର ଭାରମାତ୍ର ବୋଲି ବୋଧ ହେଉଥିଲା

ଏବଂ ନିଜକୁ ଅସହାୟ, ଅନାଶ୍ରୟ ଓ ହତଭାଗ୍ୟ ବିବେଚନା କରୁଥାନ୍ତି । ଫଳତଃ ତାହାଙ୍କ ପକ୍ଷରେ ସଂସାର ଅସାର ଓ ଅନ୍ଧକାରରୂପେ ପ୍ରତୀୟମାନ ହେଉଥିଲା । ନୃପତିଙ୍କ ବିଳାସବତୀନାମ୍ନୀ ପରମରୂପବତୀ ପତ୍ନୀ ଥିଲେ । କନ୍ଦର୍ପଙ୍କର ରତି ଓ ଶିବଙ୍କର ପାର୍ବତୀ ଯେଉଁରୂପେ ପରମପ୍ରଣୟିନୀ, ବିଳାସବତୀ ମଧ୍ୟ ସେହିପରି ରାଜାଙ୍କର ପରମପ୍ରଣୟାସ୍ପଦା ଥିଲେ । ଏକଦା ମହିଷୀ ଅତିଶୟ ଦୁଃଖିତ ଅନ୍ତଃକରଣରେ ଅନ୍ତଃପୁରରେ ବସିଅଛନ୍ତି—ଏପରି ସମୟରେ ନରପତି ସେଠାରେ ଉପସ୍ଥିତ ହୋଇ ଦେଖିଲେ, ମହିଷୀ ବାମକରତଳରେ କପୋଳଦେଶ ବିନ୍ୟାସ ପୂର୍ବକ ବିଷଣ୍ଣବଦନରେ ରୋଦନ କରୁଅଛନ୍ତି । ଅଙ୍ଗର ଭୂଷଣ ଅଙ୍ଗରୁ ଉନ୍ମୋଚନ କରି ଭୂତଳରେ ନିକ୍ଷେପ କରି ଦେଇଅଛନ୍ତି; ଅଙ୍ଗରାଗ ବା ଅଙ୍ଗସଂସ୍କାର କିଛିମାତ୍ର ନାହିଁ । ସଖୀଗଣ ନିଃଶବ୍ଦରେ ଓ ଦୁଃଖିତ ଚିତ୍ତରେ ପାର୍ଶ୍ୱରେ ବସିଅଛନ୍ତି । ଅନ୍ତଃପୁର ବୃଦ୍ଧାମାନେ ଅନତିଦୂରରେ ଉପବିଷ୍ଟ ହୋଇ ପ୍ରବୋଧବାକ୍ୟରେ ଆଶ୍ୱାସ ପ୍ରଦାନ କରୁଅଛନ୍ତି ।

ରାଜା ଗୃହ ମଧ୍ୟରେ ପ୍ରବେଶ କରିବାରୁ ମହିଷୀ ଆସନରୁ ଉଠି ସମ୍ଭାଷଣ କଲେ । ରାଜାଙ୍କୁ ଦେଖି ତାହାଙ୍କର ଦୁଃଖ ଦ୍ୱିଗୁଣିତ ହେଲା ଏବଂ ଦୁଇ ଚକ୍ଷୁରୁ ଅଶ୍ରୁଧାରା ପଡ଼ିବାକୁ ଲାଗିଲା । ମହିଷୀଙ୍କର ଆକସ୍ମିକ ଶୋକ ଓ ରୋଦନର କାରଣ କିଛି ବୁଝି ନ ପାରି ନରପତି ମନେ ମନେ କେତେ ଭାବନା, କେତେ ଶଙ୍କା ଓ କଳ୍ପନା କରିବାକୁ ଲାଗିଲେ । ପରେ ଆସନରେ ଉପବିଷ୍ଟ ହୋଇ ବସନରେ ଚକ୍ଷୁଜଳ ପୋଛିଦେଇ ମଧୁର ବାକ୍ୟରେ ଜିଜ୍ଞାସା କଲେ, "ପ୍ରିୟେ ! କି ସକାଶେ ବାମକରରେ ବାମଗଣ୍ଡ ସଂସ୍ଥାପନ କରି ବିଷଣ୍ଣବଦନରେ ଓ ଦୀନନୟନରେ

ରୋଦନ କରୁଅଛ ? ତୁମ୍ଭ ଦୁଃଖର କାରଣ କଣ୍ଟ ଜାଣି ନ ପାରି ମୋର ଅନ୍ତଃକରଣ ଅତିଶୟ ବ୍ୟାକୁଳ ଓ ବିଷଣ୍ଣ ହେଉଅଛି ? ମୁଁ କି କୌଣସି ଅପରାଧ କରିଅଛି ? ଅଥବା ଅନ୍ୟ କେହି ପ୍ରଜ୍ୱଳିତ ଅନଳଶିଖାରେ ହସ୍ତକ୍ଷେପ କରିଅଛି ? ଯାହାହେଉ, ଶୋକର କାରଣ ବର୍ଣ୍ଣନ କରି ମୋର ଉଦ୍‌ବେଗ ଓ ଉତ୍କଣ୍ଠା ଦୂରକର ।”

ରାଜା ଏତେ ଅନୁନୟ କଲେ ହେଁ ବିଳାସବତୀ କିଛି ଉତ୍ତର ଦେଲେ ନାହିଁ; ବରଂ ଆହୁରି ଶୋକାକୁଳ ହୋଇ ରୋଦନ କରିବାକୁ ଲାଗିଲେ । ରାଜାଙ୍କର ତାମ୍ବୂଳକରଙ୍କବାହିନୀ ବଦ୍ଧାଞ୍ଜଳି ହୋଇ ନିବେଦନ କଲା, “ମହାରାଜ ! ଆପଣ କୌଣସି ଅପରାଧ କରି ନାହାନ୍ତି ଏବଂ ରାଜମହିଷୀଙ୍କ ନିକଟରେ ଅନ୍ୟ କେହି ଯେ ଅପରାଧ କରିବ, ଏହା ଅସମ୍ଭବ । ମହିଷୀ ଯେଉଁ ହେତୁରୁ ରୋଦନ କରୁଅଛନ୍ତି, ତାହା ଶ୍ରବଣ କରନ୍ତୁ । ସନ୍ତାନମୁଖାବଲୋକନରୂପ ସୁଖଲାଭରୁ ବଞ୍ଚିତା ହୋଇ ରାଣୀ ବହୁଦିବସାବଧି ଶୋକାକୁଳ ଥିଲେ; କିନ୍ତୁ ମହାରାଜାଙ୍କ ମନଃପୀଡ଼ା ହେବ ବୋଲି ଆଜଯାଏଁ ପ୍ରକାଶ କରିନାହାନ୍ତି; ମନର ଦୁଃଖ ମନରେ ଗୋପନ କରି ରଖି-ଅଛନ୍ତି । ଅଦ୍ୟ ଚତୁର୍ଦ୍ଦଶୀ, ମହାଦେବଙ୍କ ପୂଜା ହେବାକୁ ମହାକାଳ ମନ୍ଦିରକୁ ଯାଇଥିଲେ, ସେଠାରେ ମହାଭାରତ ପାଠ ହେଉଥିଲା, ତାହା ଶୁଣିଲେ । ସନ୍ତାନବିହୀନ ବ୍ୟକ୍ତିମାନଙ୍କର ସଦ୍‌ଗତି ହୁଏ ନାହିଁ; ପୁତ୍ର ନ ଜନ୍ମିଲେ ପୁନ୍ନାମ ନରକରୁ ଉଦ୍ଧାରର ଉପାୟାନ୍ତର ନାହିଁ; ପୁତ୍ରହୀନ ବ୍ୟକ୍ତିର ଇହଲୋକରେ ସୁଖ ଓ ପର ଲୋକରେ ପରିତ୍ରାଣ ପାଇବାର ସମ୍ଭାବନା ନାହିଁ ! ତାହାର ଜୀବନ, ଧନ, ଐଶ୍ୱର୍ଯ୍ୟ ସକଳହିଁ ନିଷ୍ଫଳ । ମହାଭାରତରୁ ଏହି କଥା ଶୁଣିବା ଅବଧି ଅତିଶୟ ଉନ୍ମନା ଓ ଉତ୍କଣ୍ଠିତା ହେଲେ । ଗୃହକୁ ଆସିବାରୁ ସମସ୍ତେ ନାନାପ୍ରକାର ପ୍ରବୋଧବାକ୍ୟରେ ସାନ୍ତ୍ୱନା

କଲେ ଏବଂ ଆହାର କରିବାକୁ ଅନୁରୋଧ କଲେ; କିନ୍ତୁ କୌଣସି ପ୍ରକାରେ ସେ ଶାନ୍ତ ହେଲେ ନାହିଁ ଏବଂ ଆହାର କଲେ ନାହିଁ । ସେହି ଅବଧି କାହାର କୌଣସି କଥାର ଉତ୍ତର ଦେଉ ନାହାନ୍ତି, ପୁଣି କାହା ସହିତ ଆଳାପ କରୁ ନାହାନ୍ତି । କେବଳ ବିଷଣ୍ଣବଦନରେ ଅନବରତ ରୋଦନ କରୁଅଛନ୍ତି । ବର୍ତ୍ତମାନ ଯାହା କର୍ତ୍ତବ୍ୟ କରନ୍ତୁ ।”

ତାମ୍ବୂଳକରଙ୍କବାହିନୀର କଥା ଶୁଣି ରାଜା କ୍ଷଣକାଳ ନିସ୍ତବ୍ଧ ଓ ନିରୁତ୍ତର ହୋଇ ରହିଲେ । ପରେ ଦୀର୍ଘନିଃଶ୍ୱାସ ପରିତ୍ୟାଗ କରି କହିଲେ, “ଦେବି ! ଦୈବାୟତ୍ତ ବିଷୟରେ ଶୋକ ଓ ଅନୁତାପ କରିବା କୌଣସିମତେ ବିଧେୟ ନୁହେ; ମନୁଷ୍ୟମାନେ ଯେତେ ଯତ୍ନ ଓ ଯେତେ ଚେଷ୍ଟା କଲେହେଁ ଦୈବ ଅନୁକୂଳ ନ ହେଲେ କୌଣସି ପ୍ରକାରେ ମନୋରଥ ସଫଳ ହୁଏ ନାହିଁ । ପୁତ୍ରର ଆଲିଙ୍ଗନରେ ଶରୀର ଶୀତଳ ହେବ, ମୁଖାରବିନ୍ଦ ଦର୍ଶନରେ ନେତ୍ର ପବିତ୍ର ହେବ, ଅପରିସ୍ଫୁଟ ମଧୁର ବଚନ ଶ୍ରବଣରେ କର୍ଣ୍ଣ ପରିତୃପ୍ତ ହେବ; ଏପରି କି ପୁଣ୍ୟକର୍ମ କରିଅଛୁଁ ? ଜନ୍ମାନ୍ତରରେ କେତେ ପାପ କରିଥିବା, ସେ ସକାଶେ ଏତେ ମନସ୍ତାପ ଉପସ୍ଥିତ ହୋଇଅଛି । ଦୈବ ଅନୁକୂଳ ନ ହେଲେ କୌଣସି ଅଭିଷ୍ଟସିଦ୍ଧିର ସମ୍ଭାବନା ନାହିଁ, ଅତଏବ ଦୈବକର୍ମରେ ଅତ୍ୟନ୍ତ ଅନୁରକ୍ତ ହୁଅ । ମନୋଯୋଗପୂର୍ବକ ଗୁରୁଭକ୍ତି, ଦେବପୂଜା ଓ ମହର୍ଷି-ମାନଙ୍କର ପରିଚର୍ଯ୍ୟା କର । ଅବିଚଳିତ ଓ ଅକୃତ୍ରିମ ଭକ୍ତିପୂର୍ବକ ଧର୍ମକର୍ମର ଅନୁଷ୍ଠାନ କର । ପୁରାଣରୁ ଶୁଣିଅଛି, ମଗଧ ଦେଶର ରାଜା ବୃହଦ୍ରଥ ସନ୍ତାନ ଲାଭଆଶାରେ ଚଣ୍ଡକୌଶିକଙ୍କ ଆରାଧନା କରୁଥାନ୍ତି ଏବଂ ତାହାଙ୍କ ବର ପ୍ରଭାବରେ ଜରାସନ୍ଧ ନାମରେ

ପ୍ରବଳପରାକ୍ରାନ୍ତ ଏକ ପୁତ୍ର ପ୍ରାପ୍ତ ହୋଇଥିଲେ । ରାଜା ଦଶରଥ ମଧ୍ୟ ମହର୍ଷି ଋଷ୍ୟଶୃଙ୍ଗଙ୍କୁ ପ୍ରସନ୍ନ କରି ରାମ, ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନ ନାମରେ ମହାବଳପରାକ୍ରାନ୍ତ ଚାରି ପୁତ୍ର ଲାଭ କରିଥିଲେ । ଋଷି-ମାନଙ୍କ ଆରାଧନା କେବେହେଲେ ବିଫଳ ହୁଏ ନାହିଁ, ଅବଶ୍ୟ ତାହାର ଫଳଲାଭ ହୁଏ ।

ଦୃଢ଼ବ୍ରତ ଓ ଏକାନ୍ତ ଅନୁରକ୍ତ ହୋଇ ଭକ୍ତି ସହକାରେ ଦେବ ଓ ମହର୍ଷିମାନଙ୍କର ଅର୍ଚ୍ଚନା କର, ତହିଁରେ ହିଁ ମନୋରଥ ସଫଳ ହେବ । ହାୟ ! କେବେ ସେହି ଶୁଭଦିନର ଉଦୟ ହେବ । କେଉଁ ଦିନ ସ୍ନେହମୟ ଓ ପ୍ରୀତିମୟ ସନ୍ତାନର ସୁଧାମୟ ମୁଖଚନ୍ଦ୍ର ଅବଲୋକନ କରି ଜୀବନ ଓ ନୟନ ଚରିତାର୍ଥ କରିବା ? ପରିଜନମାନେ ଆନନ୍ଦରେ ଉନ୍ମତ୍ତ ହେବେ ? ନଗର ଉତ୍ସବମୟ ଓ ନୃତ୍ୟଗୀତ ବାଦ୍ୟ-କୋଳାହଳରେ ପରି-ପୂର୍ଣ୍ଣ ହେବ । ଶଶିକଳା ଉଦିତ ହେଲେ ଗଗନମଣ୍ଡଳର ଯେପରି ଶୋଭାହୁଏ, କେତେ ଦିନ ପରେ ଦେବୀ ପୁତ୍ର କୋଡ଼ରେ ଧରି ସେପରି ଶୋଭିତ ହେବେ ? ନରପତ୍ୟତା ଏବେ ଅତିଶୟ କ୍ଲେଶ ଦେଉଅଛି, ସଂସାର ଅରଣ୍ୟ ଓ ଜଗତ ଶୂନ୍ୟ ଦେଖୁଅଛୁଁ । ରାଜ୍ୟ ଓ ଐଶ୍ୱର୍ଯ୍ୟ ନିଷ୍ଫଳ ବୋଧ ହେଉଅଛି; କିନ୍ତୁ ଅପ୍ରତିବିଧେୟ ବିଷୟରେ ଶୋକ ଓ ଦୁଃଖ କରିବା ବୃଥା ବୋଲି ଧୈର୍ଯ୍ୟାବ-ଲମ୍ବନପୂର୍ବକ ଯଥାକଥଞ୍ଚିତ୍ ସଂସାରଯାତ୍ରା ନିର୍ବାହ କରୁଅଛୁ ।" ଏପରି ନାନା ପ୍ରବୋଧ ବାକ୍ୟରେ ଆଶ୍ୱାସ ଦେଇ ସ୍ୱହସ୍ତରେ ମହିଷୀଙ୍କ ନେତ୍ରଜଳ ମୋଚନ କରିଦେଲେ । ଅନେକ ସମୟ ଅନ୍ତଃପୁରରେ ରହି ପରେ ବହିର୍ଗତ ହେଲେ ।

ରାଜା ଅନ୍ତଃପୁରରୁ ବହିର୍ଗତ ହେବା ପରେ ବିଳାସବତୀ ପ୍ରବୋଧ ବାକ୍ୟରେ କଥଞ୍ଚିତ୍ ଶାନ୍ତ ହୋଇ ସ୍ନାନ ଭୋଜନାଦି ସମା-

ପନ କଲେ । ଯେଉଁ ସକଳ ଆଭରଣ ବାହାର କରି ଦେଇଥିଲେ, ତାହା ପୁନର୍ବାର ଅଙ୍ଗରେ ଧାରଣ କଲେ । ତଦବଧି ଦେବତା ଆରାଧନା, ବ୍ରାହ୍ମଣ ସେବା ଓ ଗୁରୁଜନଙ୍କ ପରିଚର୍ଯ୍ୟାରେ ଅତିଶୟ ଅନୁରକ୍ତ ହେଲେ । ଦୈବକର୍ମରେ ଅନୁରକ୍ତ ହୋଇ ଚଣ୍ଡିକା ଗୃହରେ ପ୍ରତିଦିନ ଧୂପ, ଗୁଗ୍‌ଗୁଳ ପ୍ରଭୃତି ସୁଗନ୍ଧ ଦ୍ରବ୍ୟର ଗନ୍ଧ ବିସ୍ତାର କରୁଥାନ୍ତି । ଦିବସ ବିଶେଷରେ ସେଠାରେ କୁଶାସନରେ ଶୟନ କରି ରହନ୍ତି । ପ୍ରତ୍ୟହ ପ୍ରାତଃକାଳରେ ବ୍ରାହ୍ମଣମାନଙ୍କୁ ସ୍ୱର୍ଣ୍ଣପାତ୍ର ଦାନ କରୁଥାନ୍ତି । କୃଷ୍ଣପକ୍ଷୀୟ ଚତୁର୍ଦ୍ଦଶୀ ରଜନୀରେ ଚତୁଷ୍ପଥରେ ଦେବତାମାନଙ୍କୁ ବଳି ଉପହାର ଦେଉଥାନ୍ତି । ଅଶ୍ୱତ୍ଥ ପ୍ରଭୃତି ବନସ୍ପତିମାନଙ୍କୁ ପ୍ରଦକ୍ଷିଣ କରୁଥାନ୍ତି । ଷୋଡ଼ଶୋ-ପଚାରରେ ଷଷ୍ଠୀଦେବୀଙ୍କର ପୂଜା ଦେଉଥାନ୍ତି । ଫଳତଃ ଯେ ଯେଉଁପରି ବ୍ରତର ଅନୁଷ୍ଠାନ କରିବାକୁ କହେ, ଅତିଶୟ କ୍ଲେଶ-ସାଧ ହେଲେହେଁ ଅପତ୍ୟ ତୃଷ୍ଣାରେ ତା'ର ଅନୁଷ୍ଠାନ କରୁଥାନ୍ତି; କିଞ୍ଚିନ୍ମାତ୍ର ପରାଙ୍ମୁଖ ହୁଅନ୍ତି ନାହିଁ । ଗଣକ ଅଥବା ସିଦ୍ଧପୁରୁଷ ଦେଖିଲେ ସମାଦରପୂର୍ବକ ସନ୍ତାନର ଗଣନା କରାଉଥାନ୍ତି । ରାତିରେ ଯେଉଁ ସକଳ ସ୍ୱପ୍ନ ଦେଖନ୍ତି, ପ୍ରଭାତରେ ପୁରନ୍ଧ୍ରୀମାନଙ୍କୁ ତାହାର ଫଳାଫଳ ଜିଜ୍ଞାସା କରୁଥାନ୍ତି ।

---

( ଲେଖକଙ୍କର "ପ୍ରଣୟ ପ୍ରବାହ" ନାମକ ସଂସ୍କୃତ "କାଦମ୍ବରୀ"ର ଅନୁବାଦରୁ ଗୃହୀତ )

# ସତ୍ୟବାଦୀ ବନବିଦ୍ୟାଳୟର ସ୍ମୃତି

## ୬ ପଣ୍ଡିତ ଗୋଦାବରୀଶ ମିଶ୍ର

ମୁଁ ୧୯୧୩ ମସିହା ଏପ୍ରିଲମାସ ୨୯ ତାରିଖ ସକାଳେ କଲିକତାରୁ ଆସି ସାକ୍ଷୀଗୋପାଳ ରେଳ ଷ୍ଟେସନରେ ଓହ୍ଲାଇଲି । ମୋତେ ବାଟ କଢ଼ାଇ ନେବା ପାଇଁ ଅଳ୍ପ କେତେଜଣ ଛାତ୍ର ଷ୍ଟେସନକୁ ଆସିଥିଲେ । ସତ୍ୟବାଦୀକୁ ଯିବା ତାହା ମୋର ପ୍ରଥମ । କିନ୍ତୁ ସତ୍ୟବାଦୀ ଶିକ୍ଷା ଅନୁଷ୍ଠାନରେ ମୁଁ ଜଣେ କର୍ମୀ ଗ୍ଧର ବର୍ଷ ପୂର୍ବରୁ ହୋଇ ସାରିଥିଲି । କଟକ କଲେଜରେ ପଢ଼ିବା ସମୟରେ ମୁଁ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ସମ୍ପର୍କରେ ଆସିଲି । ତାଙ୍କର ଅଦ୍ଭୁତ ଆକର୍ଷଣ ଶକ୍ତି ଥିଲା । ସେ ଚୁମ୍ବକ ପରି ଲୁହାକୁ ଟାଣି ପାରୁଥିଲେ । ମୁଁ କଲେଜରେ ପଢ଼ିବା ବେଳେ ପ୍ରକୃତରେ ଖଣ୍ଡେ କାଳିଆ ମଇଳା ମାଟିବୋଳା ଲୁହା ଥିଲି । ୧୮୯୮ ମସିହାରୁ ବାରବର୍ଷ ବୟସରେ ମୋର ବିବାହ ହୋଇ ସାରିଥିଲା । ମୋ ଜୀବନର ଲକ୍ଷ୍ୟ ଥିଲା, ଡେପୁଟି ମାଜିଷ୍ଟ୍ରେଟ ଗିରିକରି କରିବି; କୋଠା ଘର ତୋଳିବି ଓ ଜଣେ ପକା ସଂସାରୀ ରୂପେ ସଂସାରରେ ଚଳିବି ।

ଜଣେ ଦଂଗୀପୁର ସଂନ୍ୟାସବାଦୀ ଗୁରୁକଳ୍ପ ବ୍ୟକ୍ତି ମୋ କଳ୍ପନାର ସେ ସୌଧ ଭାଙ୍ଗିବାକୁ ଚେଷ୍ଟା କରି ବହୁ ପରିମାଣରେ ସଫଳ ହୋଇଥିଲେ । ପଣ୍ଡିତ ଗୋପବନ୍ଧୁ ତାକୁ ଏକାବେଳେକେ ଚୂର୍ଣ୍ଣ କରିଦେଲେ । ଜାତିର ଗଠନରେ ନିଜର ଶକ୍ତି ବ୍ୟୟ କରିବା କଳ୍ପନା ମୋ ଜୀବନରେ ଉଦ୍ଦେଶ୍ୟ ଭିତରେ ପୂରାପୂରି ସ୍ଥାନ ପାଇଲା । ୧୯୦୯ ମସିହାରେ ଓଡ଼ିଶା ବଙ୍ଗ ପ୍ରଦେଶରେ ଥାଏ । ମୁଁ କଲେଜରେ ପଢ଼ିବା ସଙ୍ଗେ କିଛି କିଛି କୃଷି ଶିକ୍ଷା ମଧ୍ୟ କରୁ-

ଥାଏଁ । ମୋର ଶେଷ କୃଷିପରୀକ୍ଷାରେ ପରୀକ୍ଷକ ହୋଇ ଆସିଥିଲେ ବଙ୍ଗ ପ୍ରଦେଶର କୃଷିବିଭାଗ ଡ଼ିରେକ୍ଟର । ସେ ମୋତେ ଯେ କେବଳ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ କରାଇଲେ, ତା ନୁହେଁ, କୃଷି ଶିକ୍ଷା ନିମନ୍ତେ ମୋତେ ସରକାରୀ ଖର୍ଚ୍ଚରେ ବିଲାତ ପଠାଇବାକୁ କହିଲେ । ମୁଁ ନାସ୍ତି କଲି । ତା' ପର ବର୍ଷ ଓଡ଼ିଶାର କମିଶନର ମୋତେ ଡେପୁଟି କଲେକ୍ଟର ଗ୍ରହଣ ଯାଚିଲେ । ସେଥିରେ ମଧ୍ୟ ମୁଁ ଅସ୍ୱୀକୃତ ହେଲି । ମୁଁ କଲିକତାରେ ଏମ୍.ଏ. ପାସ କରି ଓକିଲାତି ପଢ଼ିବା ସମୟରେ ମୂକବଧିର ବିଦ୍ୟାଳୟ ପକ୍ଷରୁ ମୋତେ ଆମେରିକା ପଠାଇବା ପ୍ରସ୍ତାବ ହେଲା । ସେ ପ୍ରସ୍ତାବ ମୁଁ ଗ୍ରହଣ କଲି ନାହିଁ । ଏ ପ୍ରତ୍ୟେକ ଘଟଣାରେ ପଣ୍ଡିତ ଗୋପବନ୍ଧୁଙ୍କ ପରାମର୍ଶ ଲୋଡ଼ିଲି ଓ ତାଙ୍କ କଥା ଅନୁସାରେ ଚାଲିବାକୁ ହେଲି ।

ଓକିଲାତି ପଢ଼ା ଶେଷ କରି, କେବଳ ଶେଷ ପରୀକ୍ଷା ବାକି ରଖି, ମୁଁ ସତ୍ୟବାଦୀରେ ପହଞ୍ଚିଲି । ବିଦ୍ୟାଳୟର ଗୃହଗୁଡ଼ିକ ନୀଳକଣ୍ଠ ବାବୁଙ୍କ ନିଶ-ଆନ୍ଦୋଳନ ଫଳରେ ପୋଡ଼ି ଯାଇଥାଏ । ପଢ଼ାପଢ଼ି ବଉଳ ତମାଳଗଛ ତଳେ ହେଉଥାଏ । ଛାତ୍ରାବାସ ପିଲାମାନଙ୍କ ରହିବା ନିମନ୍ତେ କୁଡ଼ିଆ । ତେଣୁ ଗୋଟିଏ ଗୋଟିଏ ବଖରାରେ ଆଠ ଦଶ ଜଣ ଲେଖାଏଁ ରହନ୍ତି । ମୋର ରହିବା ନିମନ୍ତେ ଗୋଟିଏ ଛୋଟ ବଖରା ମିଳିଲା । ତାହା ଲମ୍ବାରେ ଆଠ ହାତ ଓ ଓସାରରେ ପାଞ୍ଚ ହାତ । ସେଥିରେ ତିନି ଜଣ ଛାତ୍ର ରହୁଥିଲେ । ମୁଁ ଯାଇ ହେଲି ତାର ଚତୁର୍ଥ ବାସିନ୍ଦା । ତଳେ ଶୋଇବାକୁ ହେଲା । ମୁଁ ଛାତ୍ର ଭାବରେ ତା' ପୂର୍ବରୁ ପ୍ରାୟ ବାରବର୍ଷ କାଳ ଛାତ୍ରାବାସମାନଙ୍କରେ ଖଟରେ ଶୋଇ ଆସିଥିଲି । ଖଟରେ ଶୋଇବା ଏକ ଅଭ୍ୟାସରେ ପରିଣତ ହୋଇ ଯାଇଥିଲା କହିଲେ ଚଳେ ।

ଅବଶ୍ୟ ତା ଭିତରୁ ପ୍ରଥମ ସାତ ବର୍ଷ ଅର୍ଥାଭାବ ଯୋଗେ ଖାଲି ଖଟରେ ଇଟାରେ ମୁଣ୍ଡ ଦେଇ ଶୋଉଥିଲି । ସତ୍ୟବାଦୀରେ ପହଞ୍ଚି ସଙ୍ଗେ ସଙ୍ଗେ ଖଟରୁ ଖସି ମାଟିକୁ ଯିବାରୁ କବିଙ୍କର ପଦ୍ୟରୁ ଧାଡ଼ିଏ ମନେ ପଡ଼ିଗଲା । ତାହା ହେଉଛି "ମାଟିର ଏ ଦେହ ନଷ୍ଟେ ମିଶିବ ମାଟିରେ ।"

ବିଦ୍ୟାଳୟ ନୂଆ ହୋଇଥିବାରୁ ଅନ୍ୟତ୍ର ଯାଇ ପଢ଼ି ନ ପାରି ଯେଉଁ କେତେକ ଯୁବକ ଘରେ ବସି ରହିଥିଲେ, ସେମାନେ ସେଠାରେ ନାମ ଲେଖାଇଥିଲେ । ଫଳରେ ଛାତ୍ରମାନଙ୍କ ମଧ୍ୟରେ ଅନେକ ବଡ଼ ବଡ଼ ପିଲା ଥିଲେ । ସେମାନଙ୍କ ମଧ୍ୟରେ ଜଣେ ସାନ ପିଲା ଗଗନବିହାରୀ ଚନ୍ଦ । ସେ ପ୍ରଥମ ସାକ୍ଷାତରେ ମୋ ପ୍ରତି ଆକୃଷ୍ଟ ହୋଇପଡ଼ିଲେ । ୨୯ ତାରିଖ ଚାଲିଗଲା; ୩୦ ତାରିଖ ଦିନ ମୋତେ କହିଲେ, "ତୁମେ ତ ଆମର ପ୍ରାୟ ସବୁ ବଡ଼ ପିଲାଙ୍କଠାରୁ ବଡ଼ । ଏଡ଼େ ବଡ଼ ପିଲାର ନାମ ଲେଖାଇବାକୁ ପ୍ରଧାନ ଶିକ୍ଷକ କେବେ ମଙ୍ଗିବେ ନାହିଁ । ପୁଣି ସେ ଭାରି ରାଗୀ ଲୋକ । ତୁମେ ହରିବାବୁଙ୍କୁ ଧର । ମୋତେ ଯଦି କହିବ, ମୁଁ ତୁମକୁ ସଙ୍ଗରେ ନେଇ ତାଙ୍କ ପାଖକୁ ଯାଇପାରେଁ ।" ତାହା ହିଁ ହେଲା । ଇତିମଧ୍ୟରେ ଦଉଡ଼ା ଦଉଡ଼ିରେ ସେ ମୋତେ ଦୁଇ ଚାରି ବିଧା ମାରି ମଧ୍ୟ ସାରିଥିଲେ । ଏବେ ନାମ ହୋଇଛି 'ଆଚାର୍ଯ୍ୟ ହରିହର'; ସତ୍ୟବାଦୀ ଛାତ୍ରଙ୍କ ମଧ୍ୟରେ ସେତେବେଳେ ପ୍ରିୟ ନାମ ଥିଲା 'ହରିବାବୁ' । ୩୧ ତାରିଖ ସକାଳେ ଗଗନ ମୋତେ ସଙ୍ଗରେ ନେଇ ହରିବାବୁଙ୍କ ନିକଟକୁ ଯାଇ କହିଲେ, "ସାର୍, ଏ ପିଲାଟି ପଢ଼ିବାକୁ ଆସିଛନ୍ତି । ମାତ୍ର ବୟସ ତ ବେଶି ହୋଇଯାଇଛି । କୋଉ କ୍ଲାସରେ ସ୍ଥାନ ନିଅନ୍ତୁ ।" ହରିବାବୁ ତାହା

ଶୁଣି କହିଲେ; "ଗଧ, ତୁ ଆସିଚୁ ସୁପାରଶ କର ! ହଉ, କାଲି ଦେଖିବୁ, କୋଚିଂ କ୍ଲାସରେ ଏ କେଉଁଠାରେ ବସିବେ ।"

ସେତେବେଳକୁ ବିଦ୍ୟାଳୟରେ ମାଇନର ଶ୍ରେଣୀ ଉପରକୁ ଉଚ୍ଚ ବିଦ୍ୟାଳୟର ଦୁଇ ଗୋଟି ଶ୍ରେଣୀ ଖୋଲିଥାଏ । ବଡ଼ ବଡ଼ ପିଲମାନଙ୍କୁ ଛୋଟ ଛୋଟ ପିଲଙ୍କ ସଙ୍ଗେ ମାଇନର ଶ୍ରେଣୀରେ ଭର୍ତ୍ତି ନ କରି, ତାଙ୍କ ପାଇଁ ଏକ ସ୍ୱତନ୍ତ୍ର ଶ୍ରେଣୀ ବସିଥାଏ । ତାହାର ନାମ 'କୋଚିଂ କ୍ଲାସ' । କୋଚିଂ କ୍ଲାସ୍‌ରେ ବାର ତେର ବର୍ଷ ବୟସରୁ ପ୍ରାୟ କୋଡ଼ିଏ ବର୍ଷ ବୟସ ପର୍ଯ୍ୟନ୍ତ ପିଲମାନେ ଥାଆନ୍ତି । ସେମାନଙ୍କ ମଧ୍ୟରୁ ପ୍ରାୟ ପ୍ରତ୍ୟେକର ପୁଣି ଗୋଟିଏ ଅଲଗା ଶ୍ରେଣୀ । କିଏ କେତେ ଦୂର ପଢ଼ିଥାନ୍ତି, ସେ ଶ୍ରେଣୀରେ ଶିକ୍ଷକମାନଙ୍କୁ ଝାଳବୁହା ପରିଶ୍ରମ କରିବାକୁ ପଡ଼େ । ମୋତେ ସେହି ଶ୍ରେଣୀରେ ଦୁଇ ଘଣ୍ଟା ପଢ଼ାଇବାକୁ ଦିଆଗଲା । ଗଗନ ସେ ଶ୍ରେଣୀର ଛାତ୍ର । ସେ ମୋତେ ହରିବାବୁଙ୍କ ପାଖକୁ ନେବା ପରଠାରୁ ପିଲଙ୍କ ହସବୃଷ୍ଟିରେ ବିବ୍ରତ ହୋଇ ପଡ଼ିଥିଲେ । ତେଣୁ ମୁଁ ତାଙ୍କ ଶ୍ରେଣୀରେ ଯେତେବେଳେ ଯାଇ ଶିକ୍ଷକଙ୍କ ଆସନରେ ବସିଲି, ତାଙ୍କୁ ବିସ୍ମିତ ହେବାକୁ ପଡ଼ିଲା ନାହିଁ । ସେ କେବଳ ଲାଜରେ ମୁହଁ ପୋତିଦେଲେ ।

ମୁଁ ସାଧାରଣ ଭାବରେ ଶିକ୍ଷକଗୋଷ୍ଠୀରେ ଯୋଗ ଦେଲି ନାହିଁ । ମୋତେ ତା' ମଧ୍ୟରେ ବୈଧାନିକ ଭାବରେ ପ୍ରବେଶ କରାଇବା ନିମନ୍ତେ ମେ ମାସ ପହିଲା ତାରିଖ ଶ୍ରମିକ ଦିବସରେ ଗୋଟିଏ ସଭା ବସିଲା । ସଭାକୁ ନିକଟବର୍ତ୍ତୀ ଗ୍ରାମମାନଙ୍କର କେତେକ ସ୍ଥାନୀୟ ବ୍ୟକ୍ତି ନିମନ୍ତ୍ରିତ ହୋଇ ଆସିଥିଲେ । ପୁରୀରୁ ଆସିଲେ ଗୋପବନ୍ଧୁ ବାବୁ ଓ ତାଙ୍କ ସଙ୍ଗେ ଏମାରମଠ ମହନ୍ତ

ମହାରାଜ, ରାଧାକାନ୍ତମଠ ମହନ୍ତ, ଉତ୍କଳ ବନମାଳୀ ଦାସ, ଭକ୍ତକବି ମଧୁସୂଦନଙ୍କ ସାନଭାଇ ରଘୁନାଥ ରାଓ ଏବଂ ଦିବାକର ଦାସ ।

× × × ×

ପିଲାଦିନେ ମୋର ସାତ ବର୍ଷ ବୟସରେ ବ୍ରତୋପନୟନ ହୋଇଥିଲା । ବ୍ରାହ୍ମଣ ଘରେ ତାହା ଏକ ଗତାନୁଗତିକ କାର୍ଯ୍ୟ । ମୋତେ ସେ ଦିନ ଆଉ ଥରେ ବ୍ରତ ହେଲା ପରି ଲାଗିଲା । ମୋ ଆଖିରୁ ଅବିରଳ ଲୁହ ବହି ଯାଉଥାଏ; ମୋଠାରୁ ବକ୍ତୃତା ଆଶା କରାଯାଉଥିଲା । ମାତ୍ର ମୁଁ ପାଟି ଫିଟାଇ କିଛି କହି ପାରିଲି ନାହିଁ । କେବଳ ଯେଉଁ ଗୁରୁ ଦାୟିତ୍ୱ ମୁଣ୍ଡାଇବାକୁ ଯାଉଥିଲି, ତା' ଭାରରେ ମୋ ମୁଣ୍ଡ ଭାଜପଡ଼ୁଥାଏ । ଆଜ ଏକଚାଳିଶ ବର୍ଷ ପରେ ସେ ଦୃଶ୍ୟ କଳ୍ପନାରେ ଦେଖିଲା ବେଳକୁ ଛାତି ଥରିଯାଉଛି ।

ମୋର ବର୍ଷେକ ପରେ କୃପାସିନ୍ଧୁ ମିଶ୍ର ଯାଇ ଯୋଗ ଦେଲେ । ତାଙ୍କୁ ମିଶାଇ ବିଦ୍ୟାଳୟରେ ତିନି ଜଣ ଏମ୍. ଏ. ପାସ କରିବା ଯୁବକ ଶିକ୍ଷକ ହେଲେ । ନୀଳକଣ୍ଠ ବାବୁ ଓ ମୁଁ ତୃତୀୟ ଶ୍ରେଣୀରେ ଏମ୍. ଏ. ପାସ କରିଥିଲୁ; କୃପାସିନ୍ଧୁ କରିଥିଲେ ଦ୍ୱିତୀୟ ଶ୍ରେଣୀରେ । ଆମେ ସବୁ ବେଶି ପଢ଼ିଥିବା ଶିକ୍ଷକ; ହରିବାବୁ ଆଇ. ଏ. ପାସ କରିଥିଲେ । କ୍ଷୁଦ୍ର ସର୍ପର ବିଷ ଉତ୍କଟତର ବୋଲି ଗୋଟାଏ କଥା ଅଛି । ଆମ ଭିତରେ ଜଣେ କ୍ଷୁଦ୍ର ଶିକ୍ଷକ ଥିଲେ । ସେ ମୋଟେ ମାଟ୍ରିକୁଲେଶନ ପାସ କରିଥିଲେ । କିନ୍ତୁ ମାନସିକ-ତାରେ ସେ ଥିଲେ ସମସ୍ତଙ୍କ ଉପରେ । ସେ ହେଲେ ରାମଚନ୍ଦ୍ର ରଥ । ରାମଚନ୍ଦ୍ରଙ୍କର ଅକାଳ ବିୟୋଗ ଘଟିଥିଲା । କଟକ ରେଭେନ୍ସା କଲେଜର ଇଂରେଜୀ ଅଧ୍ୟାପକ ଗୋପାଳଚନ୍ଦ୍ର ଗାଙ୍ଗୁଲି ପଢ଼ାଇବା ବେଳେ ଅନେକ ସମୟରେ କହନ୍ତି, "ଯେଉଁ-

ମାନଙ୍କୁ ଈଶ୍ୱର ଅଧିକ ସ୍ନେହ କରନ୍ତି, ତାଙ୍କୁ ଆଗ ମର୍ତ୍ତ୍ୟରୁ ନିଜ ପାଖକୁ ନେଇଯାଆନ୍ତି ।" ରାମଚନ୍ଦ୍ରଙ୍କ ମୃତ୍ୟୁ ଦେଖି ମୋର ତା ମନେ ହେଲା; ଅଧ୍ୟାପକଙ୍କ କହିବା କଥାଂ ଅକ୍ଷରେ ଅକ୍ଷରେ ଠିକ୍ ।

× × × ×

ସତ୍ୟବାଦୀ ବିଦ୍ୟାଳୟର ପଙ୍କ୍ତିଭୋଜନରେ ବିଶେଷତ୍ୱ ଥାଏ । ଖିଆଯାଏ ବଗଡ଼ା ଭାତ, ପାଣିଆ ଡାଲି ଓ ଗୋଟାଏ ପରିବା ଘାଣ୍ଟତରକାରି । କିନ୍ତୁ ସେଥିରେ ଛୁଆଁ ଅଛୁଆଁ ବାରଣ ନ ଥାଏ । କି ସବର୍ଣ୍ଣ ହିନ୍ଦୁ, କି ଅଛୁଆଁ ଜାତିର ପିଲା, କି ମୁସଲମାନ ସମସ୍ତେ ଏକ ଭୋଜନାଳୟରେ ବସି ପାଖକୁ ପାଖ ଲାଗି ଖାଆନ୍ତି । ଖାଇସାରି ସମସ୍ତେ ବାସନ ଧରି ପୋଖରୀକୁ ଧୋଇବାକୁ ଯାଆନ୍ତି । ରାତିଖିଆ ସନ୍ଧ୍ୟା ଆଗରୁ ସରିଯାଏ । ପିଲାମାନେ କାଳିଅନ୍ଧାରରୁ ଉଠନ୍ତି । ସେଥିପାଇଁ ଗୋଟାଏ ଘଣ୍ଟା ବାଜେ । ଗାଧୁଆ ପାଧୁଆ ଘଣ୍ଟାକ ମଧ୍ୟରେ ସାରି, ସମସ୍ତେ ଯେ ଯାହା ରହିବା କୋଠରୀମାନଙ୍କରେ ଉପାସନା ଲାଗି ରୁଣ୍ଡ ହୁଅନ୍ତି । ଉପାସନା ପରେ ପଙ୍କ୍ତିରେ ଜଳଯୋଗ । ଜଳଯୋଗ ଶେଷରେ ପଢ଼ା ଆରମ୍ଭ ହୁଏ । ପଢ଼ାଟା ଶୀତ ଓ ଖରାଦିନେ ଗଛ ମୂଳରେ ବିଧିବଦ୍ଧ ଭାବରେ ଶ୍ରେଣୀ ଅନୁସାରେ ହୁଏ । ବର୍ଷା ଋତୁରେ ସକାଳେ ପିଲାମାନେ ଯେ ଯାହା କୋଠରୀରେ ପଢ଼ନ୍ତି । ଶିକ୍ଷକମାନେ ସେମାନଙ୍କ ପଢ଼ା ଦେଖିବାକୁ ବୁଲୁଥାନ୍ତି । କେଉଁଠି କିଛି ବୁଝି ନ ପାରିଲେ, ସେମାନଙ୍କୁ ବୁଝାଇ ଦିଅନ୍ତି ।

ଦୁଷ୍ଟ ପିଲାମାନେ ସତ୍ୟବାଦୀରେ କେତେ ଦିନ ରହିଲା ପରେ ସେମାନଙ୍କ ଚାଲିଚଳନ ବଦଳିଯାଏ । ସେଥିପାଇଁ ବିଦ୍ୟାଳୟରେ ଓଡ଼ିଶାର ଚାରିଆଡ଼ୁ ଅନେକ ଦୁଷ୍ଟ ପିଲା ଆସି ଯୁଟିଲେ । ସେମାନେ ଯେ ସମସ୍ତେ ଶିଷ୍ଟ ପାଲଟିଗଲେ, ତା ନୁହେଁ । କିନ୍ତୁ

ଅନେକଙ୍କ ଢଙ୍ଗରଙ୍ଗ ବଦଳିଗଲା । ଅଭିଭାବକମାନେ ନିଜେ ନିଜେ ପିଲାଙ୍କ ଜୀବନରେ ସେଠିକ ଦେଖି ଆନନ୍ଦ ଅନୁଭବ କଲେ । ଫଳରେ ବହୁ ଦୂରରୁ ପିଲାମାନେ ଆସି ରୁଣ୍ଡ ହେଲେ । ଏପରିକି, ବଙ୍ଗ ଓ ଆନ୍ଧ୍ର ଅଞ୍ଚଳରୁ ପିଲା ମଧ୍ୟ ଆସିଲେ । ବିନିବିଦ୍ୟାଳୟ ମଧ୍ୟରେ କିଛି ଯେ ଗୋଟାଏ ହେଉଛି, ଏ ଧାରଣା ଅନେକଙ୍କ ମନରେ ଜନ୍ମିଲା । ତେଣୁ ବିଭିନ୍ନ ସ୍ଥାନରୁ ପରିଦର୍ଶକମାନେ ମଧ୍ୟ ଆସି ଉପସ୍ଥିତ ହେଲେ । ଏକେ ଗଛ ମୂଳରେ ପର ଘରେ ଖୋଲା ଜାଗ ରେ ବିଦ୍ୟାଳୟ ଚଳିବା ଗୋଟାଏ ନୂଆ କଥା । ତହିଁରେ ପୁଣି, ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ଯୁବକ ଦଳେ, ନିଜ ସୁଖ ସ୍ୱାଚ୍ଛନ୍ଦ୍ୟରେ ଜଳାଞ୍ଜଳି ଦେଇ, କେବଳ ପେଟକୁ ମୁଠିଏ ଖାଇ, କାହିଁକି ଯେ ସେଠାରେ ପଡ଼ିଛନ୍ତି, ସେଥିରେ କୌତୂହଳ ଜନ୍ମିବା ସ୍ୱାଭାବିକ ।

ସବୁ ତ ହେଲା; ଶିକ୍ଷକ ଯୁଟିଲେ, ପିଲା ଆସି ରୁଣ୍ଡ ହେଲେ, ଚତୁର୍ଦ୍ଦିଗରୁ ସହାନୁଭୂତି ମିଳିଲା; କିନ୍ତୁ ପିଲାମାନେ ପ୍ରବେଶିକା ପରୀକ୍ଷା ଦେଇ ପାରନ୍ତି ନାହିଁ । ସେଥିପାଇଁ ବିଶ୍ୱବିଦ୍ୟାଳୟ ମଞ୍ଜୁରି ଲୋଡ଼ା । ସେତେବେଳେ ଓଡ଼ିଶା ବଙ୍ଗପ୍ରଦେଶରୁ ଅଲଗା ହୋଇ-ଥାଏ, ବିହାର-ଓଡ଼ିଶା ପ୍ରଦେଶର ଅନ୍ତର୍ଗତ । କିନ୍ତୁ କଲିକତା ବିଶ୍ୱବିଦ୍ୟାଳୟ ଅଧୀନରେ ଓଡ଼ିଶାର ଶିକ୍ଷାଅନୁଷ୍ଠାନ ସବୁ ରହିଥାଏ । କଲିକତା ବିଶ୍ୱବିଦ୍ୟାଳୟର କୁଳପତି ସତ୍ୟବାଦୀ ବିନିବିଦ୍ୟାଳୟ ପ୍ରତି ବିଶେଷ ସହାନୁଭୂତି ଦେଖାଉଥାନ୍ତି । ସେ ନିଜେ ଆସି ଥରେ ବିଦ୍ୟାଳୟ ପରିଦର୍ଶନ କରିଗଲେ ମଧ୍ୟ ତଥାପି ମଞ୍ଜୁରି ଯେ ନ ମିଳେ । ତାର କାରଣ ବିହାର ଓଡ଼ିଶା ସରକାର ସତ୍ୟବାଦୀର କାର୍ଯ୍ୟକଳାପକୁ ସନ୍ଦେହ ଦୃଷ୍ଟିରେ ଦେଖୁଥାନ୍ତି ଓ ମଞ୍ଜୁରି ମିଳିବା ସପକ୍ଷରେ କଲିକତା ବିଶ୍ୱବିଦ୍ୟାଳୟକୁ ମତ ଦିଅନ୍ତି

ନାହିଁ । କେତେ ଅଜଣା ଲୋକ ଆସନ୍ତି ଯାଆନ୍ତି । ଯଦି କୌଣସି ଛାତ୍ର ଆସି କହନ୍ତି, ତାଙ୍କ ମାମୁଁଅଜା ଆସିଛନ୍ତି, ଛାତ୍ରାବାସରେ ରହିବେ । ଆଉ ଯଦି ଆଉ ଜଣେ କହନ୍ତି, ତାଙ୍କ ଭାଇଙ୍କ ଶଳା ଆସି ପହଞ୍ଚିଛନ୍ତି,ଯଦି ଓଳିଏ ସେଠାରେ କଟାଇବେ । ଯେଉଁ-ମାନେ ଆସିଛନ୍ତି, ସେମାନେ ଯେ କାହାରି ମାମୁଁ ଅଜା ବା ଶଳା ନୁହନ୍ତି, ପରେ ଜଣା ପଡ଼ିଯାଏ । ମୁଁ ଗାଁ ଭିତରେ ଏକ ମାଟି ଘରେ ସପରିବାର ରହୁଥାଏ । ଉଦୟନାଥ ନାୟକ ନାମରେ ଜଣେ ବୟସ୍କ ବ୍ୟକ୍ତି ପ୍ରତିଦିନ ସନ୍ଧ୍ୟାରେ ମୋ ପାଖକୁ ଆସନ୍ତି ଓ ମୋତେ ଜୋର କରି ଗୀତ ଶୁଣାନ୍ତି । ସେ ଜଣେ ଭଲ ଗାୟକ । ଗାଇବା ମଝିରେ ଇଂରେଜ ସରକାରଙ୍କ ସମାଲୋଚନା ସେ ଆରମ୍ଭ କରିଦିଅନ୍ତି । ମୁଁ ସେଥିରେ ଯୋଗ ଦିଏଁ । ପରେ ବୁଝିଲି ଯେ, ସେ ଜଣେ ପୋଲିସ ଗୋଇନ୍ଦା । ମାମୁଁଅଜା ଓ ଶଳା ରୂପେ ଯେଉଁମାନେ ଆସି ପିଲାଙ୍କ ସଙ୍ଗେ ଛାତ୍ରାବାସରେ ରହିଯାନ୍ତି, ସେମାନେ ମଧ୍ୟ ସେହିପରି ପୋଲିସ ଗୋଇନ୍ଦା ।

ସରକାରୀ କର୍ମଚାରୀମାନେ ହିଁ ସରକାରଙ୍କର ବଡ଼ ସମା-ଲୋଚକ । ସେମାନେ ଭିତରି କାର୍ଯ୍ୟକଳାପର ସ୍ୱରୂପ ଆଖିରେ ଦେଖିବାର ସୁବିଧା ପାଆନ୍ତି । ଅତଏବ ସରକାରର ଆକାର ପ୍ରକାର କପରି ବଦଳି ଶାସନ ଭଲ ଆଡ଼କୁ ଗତିକରୁ, ସେମାନେ ସେ ପ୍ରେରଣା ପ୍ରାଣରେ ଅନୁଭବ କରନ୍ତି । ମୁଁ ପରେ ୧୯୨୧ ମସିହାରେ ସିଂହଭୂମି ଜିଲାରେ ଅସହଯୋଗ ଆନ୍ଦୋଳନ ପ୍ରଚାର କଲାବେଳେ ସେହି କଥା ଦେଖିଲି । ଅର୍ଥାଭାବରୁ ଅରେ ପ୍ରଚାର ଧିମେଇ ଆସିଲା । ସେତେବେଳେ ପୋଲିସ ଦାରୋଗା ଆସି ମୋତେ ପଚିଶ ଟଙ୍କା ଦେଇଗଲେ । ଅସହଯୋଗ ସଭାରେ ଚାନ୍ଦା ମାଗିଲେ, ଲୋକେ ପୋଲିସ ଭୟରେ ଅଣ୍ଟାରୁ ପଇସା କାଢ଼ନ୍ତି

ନାହିଁ । ମୁଁ ଦେଖିଛି, ଉପସ୍ଥିତ ପୋଲିସ କର୍ମଚାରୀ ତାହା ବୁଝିପାରି ପ୍ରଥମେ ସୂଚକ ବା ଦୋଅଣିଟିଏ ପକାଇ ଦିଅନ୍ତି । ତହୁଁ ଦଣ୍ଡେ କାଳ ଚାରିଆଡ଼ୁ ପଇସା ବୃଷ୍ଟି ହୋଇଯାଏ । ପୋଲିସ ଗୋଇନ୍ଦା-ମାନେ ସତ୍ୟବାଦୀ ବିଦ୍ୟାଳୟକୁ ଦେଖି ସନ୍ଦ ବିପକ୍ଷ ମତ ଉପରକୁ ପଠାଇଥାନ୍ତେ ବିଶ୍ୱବିଦ୍ୟାଳୟରୁ ମଞ୍ଜୁରି ମିଳି ନ ଥାନ୍ତା । ଶେଷରେ ମଞ୍ଜୁରି ମିଳିଲା ।

ଗୋପବନ୍ଧୁ ବାବୁଙ୍କର କଳ୍ପନା ଥିଲା, ସତ୍ୟବାଦୀ ବନ-ବିଦ୍ୟାଳୟର ମୁକ୍ତ ବାତାବରଣ ଭିତରୁ ବର୍ଷକୁ ବର୍ଷ ମନୁଷ୍ୟ ଗଢ଼ାହୋଇ ବାହାରିବେ ଏବଂ ଦେଶ ଓ ଜାତିର ସେବାରେ ସେମାନେ ନିୟୋଜିତ ହେବେ । ସେଥିପାଇଁ ପିଲାମାନଙ୍କୁ ସ୍ୱାବଲମ୍ବୀ ହୋଇ ଜୀବନଯାତ୍ରା ନିର୍ବାହ କରିବା ଅଭିପ୍ରାୟରେ ନାନା ପ୍ରକାର ବୈଷୟିକ ଶିକ୍ଷା ଦିଆଯାଉଥିଲା । ବୈଷୟିକ ଶିକ୍ଷା ମଧ୍ୟରେ ଥିଲା—କୃଷି, ବଗିଚାକାମ, ବଢ଼େଇକାମ ଓ କୁଟୀରଶିଳ୍ପ । କୃଷିଶିକ୍ଷା ଦେବା ନିମନ୍ତେ ବଡ଼ାମ୍ବା ରାଜ୍ୟରୁ ରାଜଦ୍ରୋହ ଅପରାଧ ଯୋଗେ ବିତାଡ଼ିତ ନାରାୟଣ ସୁମନ୍ତ ପଟ୍ଟନାୟକ ରହିଥିଲେ । ବଢ଼େଇ କାମ ଓ କୁଟୀରଶିଳ୍ପ ଶିକ୍ଷା ଦେଉଥିଲେ ଯାଜପୁରର ଅର୍ଜୁନ ମହାରଣା । ବଗିଚାକାମ ନିଜେ ନୀଳକଣ୍ଠବାବୁ ପରିଚାଳନା କରୁଥିଲେ । ଶିକ୍ଷକ ଓ ଛାତ୍ରମାନେ ସର୍ବଦା ଏକାଠି ମିଶି କାନ୍ଧକୁ କାନ୍ଧ ଲଗାଇ କାମ କରନ୍ତି । ଘର ତୋଳାରେ ଉଭୟେ ସମାନ ଭାବରେ ମୂଲ କାର୍ଯ୍ୟରେ ଲାଗନ୍ତି । ଗ୍ରାମସଂଗଠନ ମଧ୍ୟ କରାଯାଇଥାଏ । ଘରପୋଡ଼ି, ହଇଜା ଓ ବସନ୍ତ ସମୟରେ ଛାତ୍ରମାନେ ଶିକ୍ଷକଙ୍କ ତତ୍ତ୍ୱାବଧାନରେ ସ୍ୱେଚ୍ଛାସେବକ ରୂପେ କାମ କରିଥାନ୍ତି ।

କେବଳ ଯେ ନିର୍ଦ୍ଧାରିତ ପାଠ୍ୟ ପଢ଼ା ଯାଉଥିଲା, ତା ନୁହେଁ । ଇଟାଲି, ଆମେରିକାର ଯୁକ୍ତରାଷ୍ଟ୍ର ପ୍ରଭୃତି କିପରି ବିଦେଶୀ ଶାସନ କବଳରୁ ସ୍ୱାଧୀନତା ଲାଭ କଲେ, ସେ ବିଷୟର ଆଲୋଚନା ହୁଏ । ପ୍ରତି ସପ୍ତାହରେ ଥରେ ଭାଷଣ ଦିଆଯାଏ । ସେଥିପାଇଁ ବିଶିଷ୍ଟ ବ୍ୟକ୍ତିମାନେ ନିମନ୍ତ୍ରିତ ହୋଇ ଆସନ୍ତି । ଶିକ୍ଷକମାନଙ୍କ ମଧ୍ୟରେ ଭଲ ବକ୍ତୃତା ଦିଅନ୍ତି ନୀଳକଣ୍ଠ ବାବୁ । ହରିବାବୁ ଅଳ୍ପ କହନ୍ତି, କିନ୍ତୁ ତାଙ୍କ କଥାର ପ୍ରଭାବ ବହୁତ ପଡ଼େ । ଗ୍ରାମଚନ୍ଦ୍ର ରଥ କିଛି ନ କହି ମଧ୍ୟ ନିଜ ଆଦର୍ଶ ବଳରେ ପିଲାଙ୍କ ଜୀବନକୁ ପ୍ରଭାବିତ କରନ୍ତି । କୌଣସି କୌଣସି ସପ୍ତାହରେ ନିଜେ ଗୋପବନ୍ଧୁ ବାବୁ ବକ୍ତୃତା ଦେବାକୁ ଆସନ୍ତି । ତାଙ୍କ ବକ୍ତୃତା ଦେବାର ଢଙ୍ଗ ଏକାବେଳକେ ନୂଆ । ସେ କ୍ଷଣକେ ହସାନ୍ତି, କ୍ଷଣକେ କନ୍ଦାନ୍ତି । ହସ କଥା ଶୁଣି ପିଲାମାନେ ହସି ହସି ଗଡ଼ିଗଲା ବେଳେ, ସେ ହଠାତ୍ ଗମ୍ଭୀର ହୋଇ ପଡ଼ନ୍ତି । ପିଲାମାନଙ୍କର କଣ ହେଉଥିବ, ମୁଁ ସେଥିରେ ଥରିଯାଏ । ତାଙ୍କ କହିବା ଢଙ୍ଗ ଅନୁକରଣ କରିବାକୁ ମୁଁ କେତେ ଚେଷ୍ଟା କରିଛି; ମାତ୍ର କୃତକାର୍ଯ୍ୟ ହୋଇ ନାହିଁ । ଗୋପବନ୍ଧୁ ବାବୁ କଥାରେ ଥିଲେ ଜଣେ ହଟଚମଟକାରୀ, କାର୍ଯ୍ୟରେ ସ୍ରଷ୍ଟା, ଚିନ୍ତାରେ ଦ୍ରଷ୍ଟା ।

---

( ଗୋପବନ୍ଧୁ ସଂଖ୍ୟା 'ସମାଜ'ରୁ ଗୃହୀତ )

# ସୁନ୍ଦର କିଏ—ପୁରୁଷ ନା ନାରୀ ?

## ଡକ୍ଟର ଖଣ୍ଡିତ ନୀଳକଣ୍ଠ ଦାସ

ସୁନ୍ଦର କିଏ ? ଏହି କଥାଟି ଶୁଣିଲାକ୍ଷଣି, ଆଜିକାଲି ହୁଏତ ଅନେକେ କହିବେ, ଯେ ଉପଯୋଗୀ, ସେ ସୁନ୍ଦର । ସେମାନଙ୍କ ମତରେ ମନୁଷ୍ୟ ଖାଇ ପିଇ ହସି ଖେଳି ସୁଖରେ ରହିବା ପାଇଁ ଏକା ଜଗତଟା ହୋଇଛି । ଜଗତର ଏହି ଉଦ୍ଦେଶ୍ୟରେ ଯାହା ଯେତିକି ଲାଗିବ, ସେ ସେତିକି ସୁନ୍ଦର ବୋଲି ବୁଝିବାକୁ ହେବ । ଦେଖାଯାଏ, ଏହି ଧାରାରେ ଚିନ୍ତାକରିବା ଲୋକେ ବେଳେ ବେଳେ ଦର୍ଶନତତ୍ତ୍ୱ ଚିନ୍ତା କରିବା ଓ ବିଶ୍ୱର ଗୁପ୍ତରହସ୍ୟ ବୁଝିବାକୁ ଚେଷ୍ଟା କରିବା ପ୍ରଭୃତିକୁ ମାନବଜୀବନର ଅନୁପଯୋଗୀ ବୋଲି ବିଚାରି ଅସୁନ୍ଦର ସାଧନା ଭିତରେ ଫିଙ୍ଗି ଦିଅନ୍ତି । ଅବଶ୍ୟ ଉପଯୋଗିତା ହିସାବରେ ମଧ୍ୟ ଏମାନେ କଥାଟାକୁ ଠିକ୍ ବୋଲି ଧରି ପାରନ୍ତି ନାହିଁ । ମାନବ ଜୀବନରେ ମଧ୍ୟ ଶରୀର, ମନସ୍ତତ୍ତ୍ୱ ଓ ବିଶ୍ୱତତ୍ତ୍ୱ ପ୍ରଭୃତିର ଉପଯୋଗିତା ଅଛି । ସେ ଉପଯୋଗିତାର ମାନଦଣ୍ଡ ସାଧାରଣ ଲୋକେ ଧରି ପାରନ୍ତି ନାହିଁ ।

କିନ୍ତୁ ଉପଯୋଗିତା ସୌନ୍ଦର୍ଯ୍ୟର ମାପକାଠି ନୁହେଁ । ସ୍ୱାର୍ଥ ସମ୍ବଳିତ ସୌନ୍ଦର୍ଯ୍ୟ, ସୌନ୍ଦର୍ଯ୍ୟ ନୁହେଁ । ସିତା ଫଳ ବଡ଼ ସ୍ୱାଦୁ, ମହାକାଳ ଫଳ କେହି ଖାଆନ୍ତି ନାହିଁ । କିନ୍ତୁ ପାଚିଲା ମହାକାଳ ଫଳ ଦେଖିଲେ ପ୍ରାଣ କି ଏକ ରସର ଅନୁଭୂତିରେ ସ୍ପନ୍ଦିତ ହୋଇ ଉଠେ । ସିତା ଫଳରେ ତାହା ହୁଏ ନାହିଁ । ତାଜମହଲରେ କେହି କେବେ ରହିବେ ବୋଲି ବିଚାରନ୍ତି ନାହିଁ, ତଥାପି ଦୂରରୁ ସେ ଛବି ଆଖିରେ ପଡ଼ିଲେ ମନ ଦ୍ରବି ଯାଏ । ପାହାଡ଼ ଦୂରରୁ ସୁନ୍ଦର । ପାହାଡ଼ର ଧୂମନୀଳଚକ୍‌କଣତାରେ ଯେ ନିଷ୍କାମ ଉପଲବ୍ଧି ହୁଏ ତାହା ସୌନ୍ଦର୍ଯ୍ୟ । ଉପଯୋଗିତା ସେଥିରେ ନାହିଁ । ପ୍ରାତସ୍ତନ ରବିଛଟା, ଘନଘଟାର ‧ତଡ଼ିଲ୍ଲତା, ଇନ୍ଦ୍ରଧନୁର

ବର୍ଣ୍ଣବିଭବ ଏସବୁ ଦେଖିଲେ ହୃଦୟ ନାଚି ଯାଏ । କିନ୍ତୁ ଏ ସବୁ ମାନବଜୀବନରକ୍ଷାର କୌଣସି କାମରେ ଲାଗେ ନାହିଁ । ଏହି ସବୁ ଜଗତରେ ପ୍ରକୃତ ସୌନ୍ଦର୍ଯ୍ୟ । ଏହି ନିଷ୍କାମ ଅନୁଭୂତିହିଁ ସୌନ୍ଦର୍ଯ୍ୟର ଭିତ୍ତି ।

ଲୋକ ଉପଯୋଗିତାରେ ମଧ୍ୟ ସୌନ୍ଦର୍ଯ୍ୟ ଦେଖେ । ରହିବା ଘରଟି ପରିଷ୍କାର, ପରିଚ୍ଛନ୍ନ, ଉଜ୍ଜ୍ୱଳ ଓ ବାୟୁମୟ ହେଲେ ରହିବା ଲୋକେ ସେ ଘରେ ସୌନ୍ଦର୍ଯ୍ୟ ଦେଖନ୍ତି । ଲଡ଼ୁ ପିଲାକୁ ସୁନ୍ଦର ଦିଶେ । ପାଚିଲା ଆମ୍ବର ଆମୋଦ ବଡ଼ ପ୍ରୀତିକର; ଏଣୁ ଆମ୍ବ ସୁନ୍ଦର । କିନ୍ତୁ ଏ ସୌନ୍ଦର୍ଯ୍ୟ ନିଷ୍କାମ ନୁହେଁ । ଏସବୁ ସ୍ଥଳରେ ବିଶ୍ଳେଷଣ ଦ୍ୱାରା ଯଥାର୍ଥ କରିବା ବଡ଼ ଶକ୍ତ ।

ନାରୀର ସୌନ୍ଦର୍ଯ୍ୟ ଜଗତବିଖ୍ୟାତ । ଦେଶକାଳ ନିର୍ବିଶେଷରେ ନାରୀର ସୌନ୍ଦର୍ଯ୍ୟରେ ମାନବ ମୁଗ୍ଧ । କେବଳ ଶରୀର ନୁହେ, ନାରୀର ଗୁଣ ପ୍ରିୟଙ୍କର, ତେଣୁ ତାହା ମଧ୍ୟ ସୁନ୍ଦର । ନାରୀର ଚାଲିଚଳଣି—ସବୁଥିରେ ପଦେ ପଦେ ମାନବ ସୌନ୍ଦର୍ଯ୍ୟର ପରାକାଷ୍ଠା ଅନୁଭବ କରି ଆସୁଅଛି । ସୌନ୍ଦର୍ଯ୍ୟ ହିଁ ଜଗତରେ କବିତାର ପୀଠ କହିଲେ ଚଳେ । ଏହି ନାରୀର ସୌନ୍ଦର୍ଯ୍ୟ ଛାଡ଼ିଦେଲେ ଜଗତରେ କାବ୍ୟକଳା ଆଜି ଅବାରିତ ଧୂମପରି ଏକାବେଳକେ ହୁଏ ତ ଅନ୍ତର୍ଦ୍ଧାନ ହୋଇଯିବ ।

ପୁରୁଷ ସମ୍ବନ୍ଧରେ ଏ ଧାରଣା ନାହିଁ । ଆଜି ଯଦି କୁହାଯାଏ ନାରୀ ସୁନ୍ଦର ନୁହେ—ପୁରୁଷ ସୁନ୍ଦର, ଲୋକେ ବୁଝିବେ ନାହିଁ । ଏ ବିଷୟରେ ବହୁ ଯୁକ୍ତିତର୍କ ଚାଲିବାର ମଧ୍ୟ ଦେଖାଅଛି । ମାତ୍ର କୌଣସି ସିଦ୍ଧାନ୍ତରେ ଲୋକେ ଏକମତ ନୁହନ୍ତି । ବାସ୍ତବରେ ଆତ୍ମ-ପରୀକ୍ଷା କଲେ ବୁଝାଯିବ—ନାରୀର ସୌନ୍ଦର୍ଯ୍ୟ ପୁରୁଷର ଚିନ୍ତ; ଏହା ପୁରୁଷର ଅନୁଭୂତି । ଏ ଅନୁଭୂତି ମୂଳରେ କାମନା ଅଙ୍ଗାଙ୍ଗୀ ଭାବରେ

ଜଡ଼ିତ ରହିଛି । ସେ କାମନା ପୁଣି ଯେ ସେ କାମନା ନୁହେଁ— ଏହା ମାନବକାମନାର ରାଜ୍ୟ । ତେଣୁ ଏହାର ନାମ ହିଁ କାମନା ବା କାମ । ଏ କାମକୁ ଜଗତର ରକ୍ଷା ନାହିଁ । ଏହା ଜୀବସୃଷ୍ଟିର ଏକ ନିତ୍ୟ ମିତିର ଅବଶ୍ୟ ବିକାଶ । ସ୍ୱର୍ଗଚନ୍ଦ୍ରରେ ଏ କାମନା ନିତ୍ୟ । ତେଣୁ ନାରୀର ସୌନ୍ଦର୍ଯ୍ୟ ନିଷ୍କାମ ସୌନ୍ଦର୍ଯ୍ୟ ନ ହେଲେ ହେଁ ଅନୁଭୂତିର ନିତ୍ୟତାରେ ସୁପ୍ରତିଷ୍ଠିତ । ସୌନ୍ଦର୍ଯ୍ୟର ଏ ଅବବୋଧରେ ବିଶ୍ଳେଷଣ ସୁଗମ ନୁହେଁ । ଏ ଅବବୋଧରେ ନିଷ୍କାମ ସୌନ୍ଦର୍ଯ୍ୟମାତ୍ରା କେତେ, ତାହା ଠିକ୍ କରି ବୁଝିବା ଅତି ଦୁର୍ଘଟ ।

କିନ୍ତୁ ବିଶ୍ୱ ରାଜ୍ୟରେ ଯେ ନିଷ୍କାମ ସୌନ୍ଦର୍ଯ୍ୟକୁ ଯଥାର୍ଥ ସୌନ୍ଦର୍ଯ୍ୟ ବୋଲି ଧରାଯାଏ, ତାହା ନାରୀଠାରେ ନାହିଁ—ରହି ନ ପାରେ; ଅଛି ପୁରୁଷଠାରେ । ପୁରୁଷ ନାରୀକୁ ସୁନ୍ଦର ବିଚାରିଲେ ମଧ୍ୟ ସବୁବେଳେ ସୁନ୍ଦର କରିବାକୁ ଚେଷ୍ଟେ । ନାରୀକୁ ବସ୍ତ୍ର ଭୂଷଣ କେଶବେଶାଦିରେ ସଜାଡ଼ି ସୁନ୍ଦର କରିବା ପୃଥିବୀରେ ସର୍ବଜନୀନ ଓ ସର୍ବକାଳିକ । ଯେ ସୁନ୍ଦର, ତାକୁ କେହି ସୁନ୍ଦର କରେ ନାହିଁ; ତାକୁ କେହି ସୁନ୍ଦର କରିବାକୁ ଚେଷ୍ଟେ ନାହିଁ ।

ଗଠନସୌଷ୍ଠବ ଓ ଅନୁପାତରେ ସୁଷମା ବେଶରେ ନିଷ୍କାମ ସୌନ୍ଦର୍ଯ୍ୟ ଫୁଟେ । ସମ୍ପୂର୍ଣ୍ଣ ବସ୍ତ୍ରବେଶହୀନ ଗୋଟିଏ ଯୁବକ ଓ ଗୋଟିଏ ଯୁବତୀକୁ ପାଖେ ପାଖେ ଠିଆ କରିଦେଇ ଦେଖ । ଅଙ୍ଗ ପ୍ରତ୍ୟଙ୍ଗର ଅନୁପାତ-ସୌଷ୍ଠବରେ କିଏ କାହାଠାରୁ ଭଲ ।

ଜନ୍ତୁ-ଜଗତରେ ନାରୀର ଓ ପୁରୁଷର ଶରୀରଶୋଭା ଦେଖ । ସିଂହର କେଶରଛଟା ସିଂହୀର ନାହିଁ । ମୟୂରର ପୁଚ୍ଛ, କୁକ୍କୁଟର ମୁକୁଟ, ମୃଗର ବହୁଶାଖାବିଷାଣଛନ୍ଦ, ମୟୂରୀ, କୁକ୍କୁଟୀ, ମୃଗୀର ନାହିଁ । ଅନୁସନ୍ଧାନ କଲେ ସ୍ପଷ୍ଟ ବୁଝାଯିବ—ଏ କେତୋଟି

ଉଦାହରଣ ନପାଚନ ନୁହେ । ଜନ୍ତୁଜଗତରେ ଏହାହିଁ ନୟମ । ବ୍ୟତକ୍ରମ ଥିଲେ ତାହା ନପାତନ ।

ଜନ୍ମବେଳେ ଶିଶୁକୁ ଦେଖିଲେ ବୁଝିହେଇପାରେ, ଝିଅ ସୁନ୍ଦର, କ ପୁଅ ସୁନ୍ଦର । ମାତା ଏହାର ସାକ୍ଷୀ । ତେବେ ଅନେକେ କହିବେ, ମାତାର ସାକ୍ଷ୍ୟ ଏ କ୍ଷେତ୍ରରେ ନରପେକ୍ଷ ହୋଇ ନ ପାରେ । ଝିଅ ତାର ସ୍ୱଜାତି, ପୁଅର ଭବିଷ୍ୟତରେ ତାହାର ଘୋର ସ୍ୱାର୍ଥ । ତଥାପି ଅନେକ ବଚକ୍ଷଣ ମାତା ଯଥାସାଧ୍ୟ ନରପେକ୍ଷ ମତ ଦଅନ୍ତି । ଜନ୍ମବେଳେ ପୁଅଟି ପର ଝିଅଟି ସୁନ୍ଦର ଦଶେ ନାହିଁ । ଯେଉଁ ପୁରୁଷ ନାରୀର ସୌନ୍ଦର୍ଯ୍ୟରୁ ନିଜର ନିଷ୍କାମ ଅନ୍ତର୍ଦୃଷ୍ଟି ଅନ୍ତର କର ଦେଖିବାରେ ଏକପ୍ରକାରେ ଅକ୍ଷମ, ସେ ଯାଇ ନବଜାତ ଶିଶୁ ପରୀକ୍ଷା କର ଦେଖନ୍ତୁ । ସେ ସହଜରେ ବୁଝି ପାରବେ, ନାରୀ-ଶିଶୁ ପୁରୁଷ-ଶିଶୁ ତୁଳନାରେ କ କୁତ୍ସିତ— ଗଠନ ସୌଷ୍ଠବରେ କ ଅନୁପାତହୀନ ।

ଉପଯୋଗିତାର ବଗ୍ଭର ଗୋଟିଏ ସ୍ୱାର୍ଥ । ଏହା ଅଜ୍ଞାତ ହୋଇପାରେ; କାରଣ ଚନ୍ତାର ପ୍ରଭାବ ଅଭ୍ୟାସରେ ସ୍ପଷ୍ଟ ଜ୍ଞାନ-ରାଜ୍ୟରୁ ପଛକୁ ଚାଲିଯାଏ । ଘରଦାରରେ ବଢ଼ିଥିବା ନାରୀ ଆଜ ପୁରୁଷକୁ ଦେଖିବା ମାତ୍ରେ ବାଘ ଭାଲୁ ଦେଖି ପଳାଇଲା ପର ପଳାଇ ଲୁଚି ଯାଏ । ପୁରୁଷର ତୀବ୍ର କାମନାର ଅତ୍ୟାଚାର ସ୍ମୃତି ଓ ଚନ୍ତା ପୁରୁଷ ମାନଙ୍କରେ ଏହା ମୂଳରେ ଅଛି । କନ୍ତୁ ଅବଳା ଆଜ ତାହା ସ୍ପଷ୍ଟ ବୁଝୁ ନାହିଁକ, ଜାଣୁ ନାହିଁ । ପରଂପରାର ଗତିରେ ଏହା ନାରୀପ୍ରକୃତିର ଗୋଟିଏ ଅଙ୍ଗ ହୋଇପଡ଼ିଛି । ଏହିପରି ମାନବର ଦୈନନ୍ଦନ କ୍ରିୟାରେ ଅଜ୍ଞାତ ଭାବରେ କେତେ ଚନ୍ତା ଓ କଳ୍ପନାର ପ୍ରଭାବ ଅଛି, ତାହା ଗଣିହେବ ନାହିଁ । ଭାତ ଗୁଣ୍ଡାଟି ଉଠାଇ ମୁହଁକୁ ନେଲାବେଳେ କେତେ ଭାତ କପର ଭାବରେ ଧରିବ,

କେତେ ବଳ ଖର୍ଚ୍ଚ କରି କେଉଁବାଟେ କେତେଦୂରକୁ ଉଠାଇ କେଉଁ ପର୍ଯ୍ୟନ୍ତ ନେଇ କେଉଁଠାରେ ତାହା କପରି ରଖିବ, ଏ ସମସ୍ତ ଗଣନା ଅଜ୍ଞାତ ଭାବରେ ହୋଇଯାଏ । ଅନେକେ ଦେଖିଥିବେ, ପିଲା ପ୍ରଥମେ କିଛି ଖାଇବାକୁ ଚୁଣ୍ଡକୁ ନେଲାବେଳେ ବିଶେଷରେ ଆଉ କାହାକୁ ଖୁଆଇବାକୁ ଚେଷ୍ଟାକଲାବେଳେ, ହାତଟି ମୁହଁରେ ନ ମାଡ଼ି ନାକରେ, ଓଠରେ, ଗାଲରେ ମାଡ଼ିଯାଏ । ତାହାର ଲକ୍ଷ୍ୟ ଠିକ୍ ହୋଇ ନ ଥାଏ; ଗଣନାରେ ଓ କ୍ରିୟା-ଯୋଜନାରେ ପ୍ରମାଦ ଥାଏ । ନାରୀ-ସୌନ୍ଦର୍ଯ୍ୟର ଅବବୋଧ ଆଜ ସେହିପରି ଅଜ୍ଞାତ ଭାବରେ ଉପଯୋଗିତାର ଗଣନାରେ ପ୍ରଭାବିତ ରହିଅଛି । କିନ୍ତୁ ଏ ସୌନ୍ଦର୍ଯ୍ୟବୋଧ ଯଥାର୍ଥ ସୌନ୍ଦର୍ଯ୍ୟବୋଧରୁ ଭିନ୍ନ । ଯଥାର୍ଥ ସୌନ୍ଦର୍ଯ୍ୟବୋଧରେ ଗଣନା ନାହିଁ, ସୀମା ନାହିଁ, ଚିନ୍ତାର ଚତୁରତା ସେଠାରେ କାମ କରେ ନାହିଁ ।

ଅନୁଭୂତି ପ୍ରାଣକୁ ସୃଚନାରୁ ଅନନ୍ତକୁ ଘେନିଯାଏ । ସୌନ୍ଦର୍ଯ୍ୟର ଏହି ଅନୁଭୂତିରେ କର୍ମମୟ ବିଶ୍ୱଜଗତର ଆଧ୍ୟାତ୍ମ୍ୟ-ଭାବ ପ୍ରାଣରେ ଫୁଟି ଉଠେ । ଏହି ଆଧ୍ୟାତ୍ମ୍ୟଭାବ ହିଁ ମାନବର ମାନବତା । ଗଛରୁ ପତ୍ରଟିଏ ବାହାରି ପଡ଼ିବାର ଦେଖିଲେ ଭାବୁକ ମାନବ ଅନନ୍ତ ଆଧ୍ୟାତ୍ମ୍ୟର ଅନୁଭୂତିରେ ବେଳେ ବେଳେ ଆତ୍ମ-ବିସ୍ମୃତ ହୁଏ । ସେହି ଅନୁଭୂତି ହିଁ ମାନବହୃଦୟରେ ଦେବ-ଭାବର ସୃଚନା । ସ୍ୱାର୍ଥସମ୍ବଳିତ ସୌନ୍ଦର୍ଯ୍ୟବୋଧରେ ସେ ବିଶୁ ସୁଚନା ବିକୃତ ବର୍ଣ୍ଣନାରେ ପରିଣତ ହୁଏ । ଅନନ୍ତ ଅନୁଭୂତି ସୀମାବଦ୍ଧ ଚିନ୍ତାର ଚତୁରତାରେ ଅବଚ୍ଛିନ୍ନ ହୁଏ । ଏହିପରି ଚିନ୍ତାରେ ଅବଚ୍ଛିନ୍ନ ଅନୁଭୂତି ମଧ୍ୟରେ ନାରୀର ସୌନ୍ଦର୍ଯ୍ୟ-ବୋଧ ସର୍ବଶ୍ରେଷ୍ଠ ।

---

("ଭଞ୍ଜ-ପ୍ରଦୀପ"ରୁ ଗୃହୀତ)

## ଭୀମ-ଭୋଇ

## ଡକ୍‌ଟର ଆର୍ତ୍ତବଲ୍ଲଭ ମହାନ୍ତି

ଖ୍ୟାତ ଧୀବର, ଖ୍ୟାମ ଦାସ ଓ ଖ୍ୟାମ ଭୋଇ ନାମରେ ତିନି ଜଣ 'ଭକ୍ତକବି ତାଙ୍କ ଗ୍ରନ୍ଥଦ୍ୱାରା ଉତ୍କଳ ସାହିତ୍ୟର ପୁଷ୍ଟିସାଧନ କରିଅଛନ୍ତି । ପ୍ରଥମ ଖ୍ୟାମ ଜାତିରେ ଧୀବର—କପଟପାଶାର ଲେଖକ । ସେ ସରଳ, ସହଜ ଓ ମନୋହର୍ ଭାଷାରେ ତାଙ୍କର ଗ୍ରନ୍ଥ ଲେଖି ଉତ୍କଳର ସମସ୍ତ ସ୍ଥଳରେ ପରିଚିତ ଓ ଆଦୃତ । ଦ୍ୱିତୀୟ ଖ୍ୟାମ ଜାତିରେ କରଣ—ସେ ଗୌଡ଼ୀୟ ବୈଷ୍ଣବମତା-ବଲମ୍ବୀ । ତାଙ୍କ ପ୍ରଣୀତ ଦୁଇ ଖଣ୍ଡ ବୈଷ୍ଣବଗ୍ରନ୍ଥ 'ଭକ୍ତିରତ୍ନାବଳୀ' ଓ 'ହରିଭକ୍ତି ଚନ୍ଦ୍ରୋଦୟ' ବୈଷ୍ଣବଧର୍ମର ତତ୍ତ୍ୱ ପ୍ରକାଶ କରିଅଛି । କିନ୍ତୁ ତାହା ଧୀବର ଖ୍ୟାମଙ୍କ କପଟପାଶା ପରି ଅଦୃତ ହୋଇ ପାରି ନାହିଁ । ତାଙ୍କ ଲେଖା ଭକ୍ତିମାର୍ଗାଶ୍ରିତ ହେଲେହେଁ ସର୍ବଜନ-ଗ୍ରାହ୍ୟ ହୋଇ ପାରି ନାହିଁ ।

ତୃତୀୟ ଖ୍ୟାମ ଜାତିରେ କନ୍ଧ—ସେ ପୁଣି ଅନ୍ଧ । ସେ ତିନିଜଣଙ୍କ ମଧ୍ୟରେ ଶ୍ରେଷ୍ଠ; ପ୍ରକୃତିରେ ସେ ଜଣେ ଖ୍ୟାମକର୍ମା । ସେ ସମ୍ଭବତଃ ଖ୍ରୀଷ୍ଟୀୟ ୧୮୫୫ ଅବ୍ଦରେ ଓଡ଼ିଆ କନ୍ଧଗୃହରେ ଜନ୍ମଗ୍ରହଣ କରି-ଥିଲେ । ମାତୃଗର୍ଭରେ ଥିବା ସମୟରେ ବା ଜନ୍ମର କିଛିକାଳ ପରେ ତାଙ୍କ ପିତାଙ୍କର ମୃତ୍ୟୁ ହୋଇଥିଲା । ତାହା 'ସ୍ତୁତିଚିନ୍ତାମଣି' (୨୧ ବୋଲି ୧୬ ପଦ) ରେ ଉଲ୍ଲେଖ କରିଅଛନ୍ତି—'ଗର୍ଭଧାରୀ ପିତା ଛାଡ଼ିଗଲେ ମୋତେ ଜନ୍ମରୁ ନସାଖୀ ହୋଇ' । ଜନ୍ମର ଦୁଇ ବର୍ଷ ପରେ ତାଙ୍କର 'ହେତୁ ବୁଦ୍ଧି' ହୋଇଥିଲା । ତାଙ୍କ 'ସ୍ମରବର୍ଷ

ସମ୍ପୂର୍ଣ୍ଣ' ସମୟରେ ଜ୍ୟେଷ୍ଠ ମାସରେ "ଶଙ୍ଖଚକ୍ର ଚିହ୍ନ" ଧାରୀ "ଯୋଗୀ ପୁନି" ଜଣେ ସ୍ୱାମୀ "ହସ୍ତରେ ଖପର ଧରି" "ହାଅ ମାତା ହାଅମାତା ଅନ୍ନଭିକ୍ଷା ଗୋଷ୍ଠାଗୃହି" ବୋଲୁଥିବାର ସେ ପ୍ରତ୍ୟକ୍ଷରେ ଦେଖି-ଥିବା ସ୍ମୃତିଚିନ୍ତାମଣିର ଏକବିଂଶ ବୋଲିରେ ଲେଖିଅଛନ୍ତି । ଲୋକମାନଙ୍କର ସ୍ୱାମୀଙ୍କ ପ୍ରତି ଅବଜ୍ଞା ମଧ୍ୟ ସେ ପରିଦର୍ଶନ କରିଥିଲେ । ପିତୃହୀନ ଭୀମ ଏଗାର ବର୍ଷ ପର୍ଯ୍ୟନ୍ତ ଅତି ଦୁଃଖରେ ସମୟ କଟାଇଥିଲେ । "ବାରବର୍ଷରୁ" ତାଙ୍କର "ବସ୍ତ୍ରାଙ୍କ ସଙ୍ଗତେ ବନେ ବୁଲି ଦିନ ଗଲା ।" ତା ପରେ ସେ କହିଅଛନ୍ତି, "ପୂର୍ବକାଳ ଘୋର ତପସ୍ୟା ପୂର୍ଣ୍ଣରୁ ହୋଇଲି କବି ପଣ୍ଡିତ ।" ଜନଶ୍ରୁତିରୁ ଜଣାଯାଏ ଯେ, ସେ ଲେଖିପଢ଼ି ଜାଣୁଥିଲେ; ପୁଣି ଜନଶ୍ରୁତି ଏ ବିଷୟରେ ତାଙ୍କର ପୂର୍ଣ୍ଣ ଅଜ୍ଞତା ମଧ୍ୟ ପ୍ରତିପାଦିତ କରେ ।

ଲୋକେ କହନ୍ତି—ଅଧ୍ୟାପକ ବିଜୟଚନ୍ଦ୍ର ମଜୁମଦାର ମଧ୍ୟ—ତାଙ୍କର କେତେକ କୁମ୍ଭୀପଟିଆ ପରିବ୍ରାଜକ ସାଧୁଙ୍କ ସଙ୍ଗରେ ପ୍ରଥମେ ସାକ୍ଷାତ ହେବାରୁ ତାଙ୍କ ହୃଦୟ ତଦ୍ଧର୍ମ ପ୍ରତି ଆସକ୍ତ ହୋଇ-ପଡ଼ିଲା । ତହୁଁ ସେ ଢେଙ୍କାନାଳରେ ଯୋରନ୍ଦା ଗ୍ରାମରେ ଉକ୍ତ ଧର୍ମର ଗୁରୁଙ୍କଠାରୁ ଦୀକ୍ଷା ଗ୍ରହଣ କଲେ । କବି ଶ୍ୟାମଘନଙ୍କ 'ଅଲେଖଲୀଳା'ରୁ ପ୍ରକାଶ ଯେ ଅବଧୂତ ଗୁରୁ ନିଜେ ସ୍ୱଭକ୍ତ ଗୋବିନ୍ଦଙ୍କ ସହିତ 'ପୂର୍ବର ଭଗତ' ଭୀମ ଭୋଇଙ୍କ ନିକଟକୁ ଆସି କଙ୍କଣପଡ଼ା ଗ୍ରାମରେ ସାକ୍ଷାତ ପ୍ରଦାନ କରି ତାଙ୍କୁ 'ନିର୍ବେଦ ସାଧନ' ବ୍ରହ୍ମାଣ୍ଡରେ ବିଖ୍ୟାତ କରିବା ନିମନ୍ତେ ଆଦେଶ ପ୍ରଦାନ କରିଥିଲେ । ସେ ସମୟରେ ଭୀମ ଚକ୍ଷୁହୀନ; ତାଙ୍କର ଭଜନାଦି ଲେଖିବା ନିମନ୍ତେ ଲେଖକ ନିଯୁକ୍ତ ହୋଇଥିବାର କବି ଶ୍ୟାମଘନ ଲେଖିଅଛନ୍ତି ।

× × ×

ଖ୍ରିମ ଯେ ଆଜନ୍ମ ଅନ୍ଧ ଥିଲେ, ସେ ବିଷୟରେ ସନ୍ଦେହର ଅବକାଶ ନାହିଁ । କାରଣ ସେ ବିଷୟରେ ଶ୍ୟାମଘନଙ୍କ 'ଅଲେଖ ମାଳିକା', ଅଚ୍ୟୁତାନନ୍ଦଙ୍କ କଳ୍ପ ଆଦି ନିର୍ଗୁଣ ପରଂବ୍ରହ୍ମ ଓ ମହାଶୂନ୍ୟ ସଂହିତା ଏବଂ ଶ୍ରୀଧରକୃତ ସିଦ୍ଧଚନ୍ଦ୍ରିକା ସମସ୍ତେ ଏକମତ । ଅଲେଖ ଧର୍ମର ଏହି ପ୍ରଧାନ ଗ୍ରନ୍ଥମାନ ପାଠ କରି ଆମ୍ଭେ ଏହି ସିଦ୍ଧାନ୍ତରେ ଉପନୀତ ହେଉଁ ଯେ ଖ୍ରିମ ବାଲ୍ୟରୁ ଅନ୍ଧ ଥିଲେ; ମଧ୍ୟରେ ବୁଦ୍ଧସ୍ୱାମୀଙ୍କ ଉପସ୍ଥିତି କାଳରେ କିଛି କାଳ ନିମନ୍ତେ ଚକ୍ଷୁ ପ୍ରାପ୍ତ ହୋଇଥିଲେ ଓ ପରେ ବିଷୟଦର୍ଶନ ଏଡ଼ିବା ପାଇଁ ପୁନର୍ବାର ଅନ୍ଧତା ବରି ନେଇଥିଲେ ।

ଏଠାରେ ଅଚ୍ୟୁତାନନ୍ଦଙ୍କ ପ୍ରଣୀତ ମାଳିକା ଓ ସଂହିତା ବିଷୟରେ କିଛି କହିଲେ ନିତାନ୍ତ ଅବାନ୍ତର ହେବ ନାହିଁ । ଅଚ୍ୟୁତାନନ୍ଦ ତହିଁରେ ଅନେକ ଭବିଷ୍ୟ କଥା କହିଛନ୍ତି । ଖ୍ରିମଭୋଇଙ୍କ ଜୀବନରେ କଣ କଣ ଘଟିବ, ତାହା ଆଗରୁ ଅଚ୍ୟୁତାନନ୍ଦ ଗାଇ ଯାଇଥିଲେ । ଯଦିବା କେହି ଏହି ଅଚ୍ୟୁତାନନ୍ଦଙ୍କୁ ଖ୍ରିମଭୋଇଙ୍କ ପରବର୍ତ୍ତୀ ବା ସମସାମୟିକ ବୋଲି କହନ୍ତି ବା ଅନ୍ୟ କଥାରେ ଅଚ୍ୟୁତାନନ୍ଦଙ୍କୁ ଭବିଷ୍ୟଦ୍‌ବକ୍ତା ଆଖ୍ୟା ଦେବାକୁ ଅନିଚ୍ଛୁକ ହୁଅନ୍ତି, ତେବେ ସୁଦ୍ଧା ଏହି ଅଚ୍ୟୁତାନନ୍ଦଙ୍କ ଗ୍ରନ୍ଥମାଳାର ଐତିହାସିକ ସତ୍ୟତା ବିଷୟରେ ଯେ ବହୁତ ଉପଯୋଗିତା ଓ ଉପାଦେୟତା ଅଛି, ତାହା କେହି ଅସ୍ୱୀକାର କରିପାରିବେ ନାହିଁ ।

ବଙ୍ଗଳା 'ବିଶ୍ୱକୋଷ' ପ୍ରଣେତା ଶ୍ରୀନଗେନ୍ଦ୍ରନାଥ ବସୁ ତାଙ୍କ "Modern Budhiism and Followers in Orissa" 'ଆଧୁନିକ ବୌଦ୍ଧଧର୍ମ ଓ ଓଡ଼ିଶାରେ ସେ ଧର୍ମର ଅବଲମ୍ବୀ".

ନାମକ ଗ୍ରନ୍ଥରେ ଭୀମଭୋଇଙ୍କ ସ୍ୱକୃତ "କଳି ଭାଗବତରୁ" ତାଙ୍କର ଜୀବନ ପ୍ରଦାନ କରିଅଛନ୍ତି । ଆମ୍ଭେମାନେ "କଳି ଭାଗବତ" ଏ ପର୍ଯ୍ୟନ୍ତ ପାଇ ନ ଥିବାରୁ ବସୁ ମହାଶୟଙ୍କ ଉକ୍ତିରେ ବିଶ୍ୱାସ ସ୍ଥାପନ କରି ତହିଁର ସାରାଂଶ ନିମ୍ନରେ ପ୍ରଦାନ କଲୁଁ ।

"ଭୀମଭୋଇ ଢେଙ୍କାନାଳ ଯୋରନ୍ଦା ଗ୍ରାମର କନ୍ଧଗୃହରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପୂର୍ଣ୍ଣ ନାମ "ଭୀମସେନ ଭୋଇ ଅରକ୍ଷିତ ଦାସ ।" ସେ ଗ୍ରାମବାସୀମାନଙ୍କ ଧାନକୁଟା ପ୍ରଭୃତି ନୀଚ କାର୍ଯ୍ୟ କରି ଜୀବିକା ନିର୍ବାହ କରୁଥିଲେ ଓ ସର୍ବଦା ଦୁଃଖରେ ଭଗବାନଙ୍କ ନାମ ଉଚ୍ଚାରଣ କରୁଥିଲେ । ଏହିପରି ତାଙ୍କ ଜୀବନର ଦୂରବସ୍ଥାରେ ସାତିଶୟ ଦୁଃଖିତ ହୋଇ ଓ ଭଗବାନଙ୍କ କରୁଣାର ଅଭାବ ଦେଖି ସେ ନିଜର ଜୀବନ ଉତ୍ସର୍ଗ କରି-ଦେବାରେ କୃତସଙ୍କଳ୍ପ ହେଲେ । ତହୁଁ ସେ କୂପରେ ପତିତ ହେଲେ । ତିନ ଦିନ ତିନ ରାତି ସେଠାରେ ପଡ଼ିରହିଲେ । ଗ୍ରାମବାସୀମାନେ ତାଙ୍କୁ କୂପରୁ ବାହାରି ଆସିବାକୁ ଯେତେ ଅନୁରୋଧ କଲେ ସୁଦ୍ଧା କାହିଁରେ ସେ କର୍ଣ୍ଣପାତ କଲେ ନାହିଁ । ଅବଶେଷରେ ଭଗବାନ ସ୍ୱୟଂ କୂପସମୀପରେ ଉପସ୍ଥିତ ହୋଇ ଭୀମଙ୍କୁ ସସ୍ନେହ ବାଣୀରେ ଆହ୍ୱାନ କଲେ । ଭୀମ ପ୍ରଭୁଙ୍କୁ ଅନ୍ତରର ବେଦନା ଜଣାଇଲେ । ତହୁଁ ଚକ୍ଷୁ ଉନ୍ମୀଳନ କରି ଦୃଷ୍ଟିପାତ କରିବା ନିମନ୍ତେ ପ୍ରଭୁ ଆଦେଶ କଲେ । ତାହା ସେ କରିବାରେ ଚିର ଆକାଙ୍କ୍ଷିତ ପ୍ରଭୁଙ୍କୁ ରକ୍ତ ମାଂସ ଶରୀରଧାରୀରୂପେ ଦେଖିବାକୁ ପାଇଲେ । ପ୍ରଭୁ ତାଙ୍କୁ କୂପରୁ ଉଦ୍ଧାର କଲେ ଓ ଅଲେଖ ବା ମହିମା ଧର୍ମ ପ୍ରଚାର କରିବାକୁ ଆଦେଶ ପ୍ରଦାନ କଲେ ଏବଂ ଡୋର ଓ କୌପୀନ ମଧ୍ୟ ପ୍ରଦାନ କରିଗଲେ । ପ୍ରଭୁଙ୍କର ଆଦେଶ ଥିଲା 'ପଖାଳ ଭାତ' ଛଡ଼ା ଆଉ କିଛି ଗ୍ରହଣ ନ କରି ମହିମା

ଧର୍ମର ପ୍ରଚାର କରିବୁ । କିନ୍ତୁ ତାଙ୍କର ପ୍ରଚାର କ୍ରିୟାରେ ଜାତିଭେଦ-ବିରୋଧୀ କଥା ଶୁଣି ଲୋକମାନେ ବିରକ୍ତ ହୋଇ ଭୀମଙ୍କୁ ପ୍ରହାର କଲେ ।

"ଭୀମ ତହୁଁ ଡୋର କୌପୀନ ପରିତ୍ୟାଗ କରି କପିଳାସକୁ ଆଗମନ କଲେ । ବାଟରେ ତାଙ୍କର ପ୍ରଭୁଙ୍କ ସଙ୍ଗେ ସାକ୍ଷାତ ହେଲା । ପ୍ରଭୁ କ୍ରୁଦ୍ଧ ହୋଇ ତାଙ୍କୁ କହିଲେ "ତୁମ୍ଭର ସିଦ୍ଧି ହୋଇ ନାହିଁ । ମାଡ଼ ଖାଇଲେ କି ବା ତୁମ୍ଭେ କାହିଁକି ସ୍ଥାନ ତ୍ୟାଗ କରିବ ?" ପ୍ରଭୁ ଭୀମଙ୍କୁ ରଜ୍ଜୁରେ ବନ୍ଧନ କରି ଯୋରନ୍ଧାକୁ ଘେନିଆସି ଏକ ମନ୍ଦିର ମଧ୍ୟରେ ଅବରୁଦ୍ଧ କଲେ । ସମସ୍ତ ଦ୍ୱାର ରୁଦ୍ଧକରି ସେ ଭୀମଙ୍କୁ କହିଲେ, "ମୁଁ ତିନି ଥର ତାଳି ମାରିବି । ଯେବେ ତୁମ୍ଭେ ସିଦ୍ଧିଲାଭ କରିଥାଅ, ତେବେ ତୁମ୍ଭେ ଅବରୋଧରୁ ମଧ୍ୟ ବହିର୍ଗତ ହୋଇ ମୋ ନିକଟରେ ଆସି ଉପସ୍ଥିତ ହୋଇ ପାରିବ ।" ଆଶ୍ଚର୍ଯ୍ୟର କଥା, ଭୀମ ତଦନୁରୂପ ଗୁରୁଙ୍କ ନିକଟରେ ଆସି ଉପସ୍ଥିତ ହେଲେ । ଗୁରୁ ପ୍ରସନ୍ନ ହୋଇ କହିଲେ, "ତୁମ୍ଭର ପୃଥିବୀପର୍ଯ୍ୟଟନରେ ପ୍ରୟୋଜନ ନାହିଁ । ତୁମ୍ଭେ ମହିମାଧର୍ମ ବିଷୟରେ ଗ୍ରନ୍ଥ ଲେଖି ଧର୍ମ ପ୍ରଚାର କର ।" ଭୀମ ଗୁରୁଙ୍କ ଆଜ୍ଞାମତେ ବିବାହ କରି ଗୃହୀ ହୋଇ ରହିଲେ । ତାଙ୍କ ରଚିତ ଗ୍ରନ୍ଥାବଳୀରେ ତାଙ୍କ ଯଶ ସର୍ବତ୍ର କାଳକ୍ରମେ ବ୍ୟାପିଗଲା । ମହିମା ଧର୍ମ ପ୍ରଚାରରେ ଜଗନ୍ନାଥଙ୍କର ପ୍ରଚ୍ଛନ୍ନ ବୁଦ୍ଧଭାବ ପ୍ରକଟିତ ହେବ ବୋଲି ଭୀମ ଆକାଶବାଣୀ ଶୁଣିଥିଲେ । ସେହି ଉକ୍ତିର ଚରିତାର୍ଥତା ସମ୍ଭାବନାରେ ଦୃଢ଼ ବିଶ୍ୱାସ ରଖି ସେ ତାଙ୍କର ବହୁ ଶିଷ୍ୟଙ୍କୁ ତାଙ୍କ ସଙ୍ଗରେ ଯୋଗ ଦେବାକୁ ଆହ୍ୱାନ କଲେ ।

"ଭକ୍ତି ଓ ଧର୍ମର ଆବେଗରେ ପ୍ରୋତ୍ସାହିତ ହୋଇ ଗୁରୁଙ୍କ ଆଜ୍ଞାରେ ଶିଷ୍ୟଗଣ ମହିମାଧ୍ୱଜାତଳରେ ସମବେତ

ହେଲେ । କଥିତ ଅଛି, ତରଶ ଗୋଟି ଗ୍ରାମର ଲୋକେ ତାଙ୍କ ସଙ୍ଗେ ଯୋଗଦାନ କରିଥିଲେ । ଦିବ୍ୟସିଂହ ଦେବଙ୍କ ୨୯ ଅଙ୍କରେ ଏ ଘଟନା ଘଟିଥିବାର ଯଶୋମଣ୍ଡ ମାଳିକାରେ ଲିଖିତ ଅଛି । ଭୀମଙ୍କ ଆଗମନବାର୍ତ୍ତା ଶୁଣି ପୁରୀରାଜା ତାଙ୍କୁ ଯଥାଯୋଗ୍ୟ ଗ୍ରହଣ କରିବାକୁ ପ୍ରସ୍ତୁତ ଥିଲେ । କିନ୍ତୁ ପରେ ଜଣାଗଲା ଯେ, କୁମ୍ଭୀପଟିଆମାନେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ବିଗ୍ରହକୁ ଭସ୍ମସାତ୍ କରି ନିରାକାର ମତ ସ୍ଥାପନ କରିବାକୁ ଆସୁଅଛନ୍ତି । ତହୁଁ ଭୀମଭୋଇଙ୍କ ଉପସ୍ଥିତିରେ ଯୁଦ୍ଧ ଆରମ୍ଭ ହେଲା । ରକ୍ତର ନଦୀ ପ୍ରବାହିତ ହେଲା । କିନ୍ତୁ ଶେଷରେ ଭୀମ ତାଙ୍କ ଅଭିଯାନର ବ୍ୟର୍ଥତା ହୃଦୟଙ୍ଗମ କରି ନିଜର ଅନୁଗତମାନଙ୍କୁ ଉପଦେଶ ଦେଲେ, "ପରହିଂସାରୁ ନିବୃତ୍ତି ହିଁ ଧର୍ମର ପ୍ରଧାନ ଭିତ୍ତି, ତେଣୁ ତହିଁରୁ ନିବୃତ୍ତ ହେବା ଉଚିତ । ଜଗନ୍ନାଥ ବୁଦ୍ଧ ରୂପରେ ପୁରୀ ଛାଡ଼ି ଚାଲି ଯାଇଅଛନ୍ତି । ଯୁଦ୍ଧ ଆଉ କାହା ପାଇଁ ?" ତାଙ୍କର ଅନୁଚରମାନଙ୍କ ମଧ୍ୟରୁ କେତେକ କାରାଗୃହରେ ଆବଦ୍ଧ ହେଲେ ଓ କେତେକ ଇଂରେଜ ସରକାରଙ୍କଦ୍ୱାରା ଦ୍ୱୀପାନ୍ତରିତ କରାଗଲେ । ମହିମା ଧର୍ମର ଏହି ଅବସାଦ କାଳରେ ଭୀମ ପ୍ରଚାର କଲେ ଯେ, "ଆତ୍ମତ୍ୟାଗ ଓ ଆତ୍ମ-ସଂହୃତି ବିନା କୌଣସି ଧର୍ମ କେବେ ସ୍ଥାପିତ ହୋଇ ନାହିଁ । ଏଣୁ ବିଧର୍ମୀଙ୍କ ହସ୍ତରେ ନିର୍ଯ୍ୟାତିତ ମହିମାଧର୍ମୀଙ୍କ ବିଷୟରେ ଶୋକ ପ୍ରକାଶ କରିବା ଉଚିତ ନୁହେଁ ।"

ଭୀମ ସୋନପୁର ରାଜ୍ୟର ଖଳିଆପାଲି ଗ୍ରାମରେ ୧୮୯୫ ଅବ୍ଦରେ ଦେହତ୍ୟାଗ କରିଥିଲେ । ଭୀମ ଯେ ବାଲ୍ୟକାଳରେ ଲେଖାପଢ଼ା ଶିକ୍ଷା କରିଥିଲେ, ସେ ବିଷୟରେ କୌଣସି ପ୍ରମାଣ ନାହିଁ; ପରନ୍ତୁ ସେ ଯେ ଶିକ୍ଷା କରି ନ ଥିଲେ, ସେ ବିଷୟରେ ପ୍ରମାଣ ବହୁଳ । ଜନ୍ମାନ୍ଧ ଥିବାରୁ ଓ ଅତିଶୟ ଦୁଃସ୍ଥ ଥିବା ହେତୁ

ଲେଖାପଢ଼ା ଶିକ୍ଷା କରିବାର ସୁବିଧା ତାଙ୍କ ଭାଗ୍ୟରେ ଘଟି ନ ଥିଲା । କିନ୍ତୁ ସେ ସାତିଶୟ ବୁଦ୍ଧିମାନ୍ ଥିଲେ ଓ ତାଙ୍କର ଗ୍ରାହିକା ଶକ୍ତି ଅତ୍ୟନ୍ତ ପ୍ରବଳ ଥିଲା । ହେଣୁ ଭାଗବତ ଓ ପୁରାଣାଦି ଶୁଣି ତାହା ଅବିକଳ ମନେରଖି ପାରିବା ଓ ଜଗନ୍ନାଥ, ବଳରାମ, ଅଚ୍ୟୁତାନନ୍ଦ ଏବଂ ଅରକ୍ଷିତ ଦାସ ପ୍ରଭୃତିଙ୍କ ଗୀତାଦି ଶ୍ରବଣ କରି ହୃଦୟଙ୍ଗମ କରିବା ବିଷୟରେ ସୁବିଧା ପାଇଥିବା ଆମ୍ଭେମାନେ ଅନୁମାନ କରୁଁ । ପରେ ଗୁରୁ ଓ ପ୍ରଭୁ ଅଲେଖ ସ୍ୱାମୀଙ୍କ ଠାରୁ ପ୍ରାପ୍ତ ଅଲେଖ-ଧର୍ମୋପଦେଶରୂପ ବହ୍ନି ତାଙ୍କ ତମୋଜାଲକୁ ଭସ୍ମୀଭୂତ କରି ତାଙ୍କର ଆତ୍ମଜ୍ୟୋତିକୁ ଉଦ୍ଦୀପିତ କରିଥିଲା । ଈଶ୍ୱରାନୁଗ୍ରହ ଛାଡ଼ିଦେଲେ ମଧ୍ୟ ଭୀମ ଯେ ଜଣେ ପ୍ରତିଭାଶାଳୀ ଲୋକ, ତାହା କହିବା ବାହୁଲ୍ୟ ମାତ୍ର ।

---

("ସ୍ତୁତିଚିନ୍ତାମଣି" ପୁସ୍ତକର ମୁଖବନ୍ଧରୁ ଗୃହୀତ)

# ଗାନ୍ଧୀ ଓ ଉତ୍କଳ

## ଶ୍ରୀ ଗୋପବନ୍ଧୁ ଚୌଧୁରୀ

ପାଦଯାତ୍ରାକୁ ପୁରୀ ଗାଡ଼ିରେ ଗାନ୍ଧୀ ବେଶ୍ୱଠାରେ ଓହ୍ଲାଇଥିଲେ । ସେ ଗାଡ଼ି ବେଶ୍ୱ ଷ୍ଟେସନରେ ରହେ ନାହିଁ; ଆଗରୁ ଲେଖାଲେଖି କରି ଗାଡ଼ିକୁ ଅଟକାଇବାର ବ୍ୟବସ୍ଥା ହୋଇଥିଲା । ସେ ଦିନ ଗାନ୍ଧୀଙ୍କର ମୌନଦିବସ ଥାଏ । ଗାନ୍ଧୀ ରେଲରୁ ଓହ୍ଲାଇବା କ୍ଷଣି ଆଗ ଜିନିଷପତ୍ର ଠିକ୍ ଅଛି କି ନାହିଁ ଏବଂ କାହା ଜିମାରେ ଯିବ, ତାହା ନ ଜାଣି ଜିନିଷପତ୍ର ଛାଡ଼ି ଯାଆନ୍ତି ନାହିଁ । ସେଦିନ ମଧ୍ୟ ଠାରି କରି ଜିନିଷପତ୍ର ଉଠାଇବାର ବ୍ୟବସ୍ଥା କରିବାକୁ କହି ଅପେକ୍ଷା କରିଥିଲେ; ସବୁ ବଳଦ ଗାଡ଼ିରେ ବୋଝାଇ ହେଲାପରେ ଗାନ୍ଧୀ ବାହାରିଥିଲେ ।

ଚମ୍ପାପୁର ଆଶ୍ରମରେ ପହଞ୍ଚି ଗସ୍ତକ୍ରମ ପକ୍କା କରାଗଲା । ଆଗରୁ ଗୋଟିଏ କଚା ହୋଇଥାଏ । ଏଥର ଠକ୍କର ବାପା ଆସି ନ ଥିବାରୁ ହରିଜନ ସେବକ ସଙ୍ଘର ସହକାରୀ ସମ୍ପାଦକ ଶ୍ରୀ ମାଲକାଣୀଜୀ ଆସିଥିଲେ । ସେ ନୂଆ ଲୋକ; ସେଥିପାଇଁ ନକ୍ସା ପକାଇ ଗସ୍ତକ୍ରମ ଗାନ୍ଧୀ ନିଜେ ଯାଞ୍ଚ କରି ନେଇଥିଲେ । ଦୁଇ ତିନି ଯାଗା ଓଳକେ ୭ ମାଇଲ ଓ ଦିନରେ ୧୨ ମାଇଲ ହୋଇ ଯାଇଥିବାରୁ ଲେଖକ ଗାନ୍ଧୀଙ୍କଠାରୁ ମଧୁର ଗାଳି ଶୁଣିଥିଲା ଏବଂ ଗାନ୍ଧୀ କହିଥିଲେ, "ଏ ଦେହକୁ ଶେଷ ମୁଣ୍ଡପାଏ ନେଇଯିବାକୁ ହେବ ତ ? ଜଗି ଜଗି ସୀମା ଭିତରେ ନ ରହିଲେ ବାଟରେ ଭାଙ୍ଗି ପଡ଼ିବ ତ କ'ଣ ହେବ ?"—ପୁଣି ଥରେ କଟାକଟି କରି ଠିକ୍ କରାଗଲା । ଦିନକୁ ୮।୯ ମାଇଲ ଚାଲିବା ଭଳି ରହଣୀ ସ୍ଥାନ ବଛାଗଲା ।

ଚମ୍ପାପୁର ଆଶ୍ରମ କେମିତି ଚଳୁଛି, ଲୋକଙ୍କର କ ସେବା କରୁଛି, ଗାନ୍ଧୀ ସବୁ ଭଲକରି ବୁଝିଥିଲେ ଏବଂ ଖୁସି ହୋଇଥିଲେ । ଏଭଳି ଆଶ୍ରମ ଚଳାଇବାରେ ଯେଉଁସବୁ ତ୍ରୁଟି ସାଧାରଣତଃ ଦେଖାଯାଏ ଏବଂ ସେଥିରେ ପ୍ରତିକାର କ'ଣ, ସେ ବିଷୟ ସେଦିନ ସଭାରେ କହିଥିଲେ । ବହୁ ଦିନପରେ ୩୧-୮-୩୪ରେ ସେହି ବିଷୟକୁ ହରିଜନ କାଗଜରେ ଲେଖିଥିଲେ— "ଗ୍ରାମସେବକ ନିଜେ ଡାକ୍ତର ହେବାକୁ ଚେଷ୍ଟା କରିବ ନାହିଁ ବା ଗାଁରେ ଡାକ୍ତରଖାନାଟାଏ ବସେଇବା ଉଦ୍ୟମ କରିବ ନାହିଁ । ଏହା ଏକ ମୋହ, ଏ ଫାଶରୁ ସେ ମୁକ୍ତ ରହିବ । ମୋର ହରିଜନ ଗସ୍ତରେ ମୁଁ ଏକ ଗାଁରେ ଆମର ଜଣେ କର୍ମୀ କାମ କରୁଥିବା ଦେଖିଲି । ଏସବୁ ବିଷୟ ତାଙ୍କର ଭଲ କରି ବୁଝିବାର ଉଚିତ ଥିଲା; ମାତ୍ର ସେ ଗୋଟିଏ ବଡ଼ ପକ୍କାଘର ତିଆରି କରି ସେଠାରେ ଏକ ଡାକ୍ତରଖାନା ବସେଇଛନ୍ତି । ସେ ପାଖଗାଁରେ ଔଷଧ ବାଣ୍ଟିଛନ୍ତି । ସ୍ୱେଚ୍ଛାସେବକମାନେ ଗାଁକୁ ଗାଁ ଔଷଧ ନେଇ ଦେଇଆସୁଛନ୍ତି । ଔଷଧବଣ୍ଟା ତାଲିକାରେ ମାସକୁ ହଜାର ବାରଶହ ରୋଗୀ ହୁଅନ୍ତି ବୋଲି ସେ ଗର୍ବ କରିଥିଲେ; ଅତଏବ ମତେ ଏହାର ଖୁବ୍ କଡ଼ା ସମାଲୋଚନା କରିବାକୁ ପଡ଼ିଥିଲା । ମୁଁ ସ୍ପଷ୍ଟ କହିଥିଲି, ଯେ ଗାଁ କାମ କରିବାର ଠିକ୍ ରୀତି ଏହା ନୁହେଁ । ଗାଁ ଲୋକଙ୍କୁ ସଫା ସୁତୁରା ରହିବା ପାଇଁ ଶିଖାଇବା ଓ ରୋଗ ଭଲ କରିବାକୁ ଚେଷ୍ଟା ନ କରି କେମିତି ରୋଗ ମୂଳରୁ ନ ହେବ, ତା'ର ବାଟ ଗାଁ ବାଲାଙ୍କୁ ଦେଖାଇବା, ଗାଁ କର୍ମୀର ପ୍ରଧାନ କାମ ହେବ । ରଜାଙ୍କ ନଅର ଭଳି କୋଠାଟିକୁ ଛାଡ଼ି ଓ ତାକୁ ଜିଲ୍ଲାବୋର୍ଡ଼କୁ ଭଡ଼ା ଲଗାଇଦେଇ ଗୋଟିଏ ଘରେ ଯାଇ ରହିବାକୁ ମୁଁ ପରାମର୍ଶ ଦେଇଥିଲି । ଔଷଧ ଭିତରେ ଟିକିଏ

କୁଇନାଇନ୍, ଆଇଡିନ, ଜଡ଼ାତେଲ, ଏମିତି ଦୁଇ ଗୃହଟା ରଖିଲେ ଯଥେଷ୍ଟ ହେବ । ନିଜକୁ ସଫାସୁତୁରା ରଖିବାରେ ଜିଲ୍ଲା, ସେତିକି ଗାଁ ଲୋକ ବୁଝିବାରେ କର୍ମୀ ସାହାଯ୍ୟ କରିବା ଉଚିତ ।"

ଚମ୍ପାପୁର ହାଟରୁ ସନ୍ଧ୍ୟାକୁ ବାହାରି ଭେଡ଼ାଠାରେ ରାତିରେ ରହି ସକାଳୁ ସେ ଲେଖନପୁରରେ ପହଞ୍ଚିଲେ । ଯେଉଁଠାରେ ହରିଜନ ବସ୍ତି ପାଖରେ ଥାଏ, ସେଠାରେ ଗାନ୍ଧୀ ତାହା ଦେଖିବାକୁ ଯା'ନ୍ତି; ସେମାନଙ୍କ ଘରେ ପଶି ଦେଖନ୍ତି ଓ ସେମାନଙ୍କ ସଙ୍ଗେ କଥାବାର୍ତ୍ତା କରନ୍ତି । ଏଣିକି ମଝିରେ ମଝିରେ ସେମାନଙ୍କୁ ଖାଇବାକୁ ନିମନ୍ତ୍ରଣ କରି ଆସୁଥିଲେ । ମଜାର କଥା, ନିମନ୍ତ୍ରଣ କରିବା ଆଗରୁ ସ୍ଥାନୀୟ କର୍ମୀମାନଙ୍କର ଅନୁମତି ନେଉଥିଲେ ଓ ପଚାରୁଥିଲେ, "ମୁଁ କେଇଜଣ ହରିଜନଙ୍କୁ ଆଜି ନିମନ୍ତ୍ରଣ କରିପାରିବି କି ?" କାରଣ, ସେ ନିଜେ ଗାଁ ଲୋକଙ୍କର ଅତିଥି ହୋଇ ରହୁଥିଲେ, ସେତିକି ସେ ପାଶୋରି ପକାଉ ନ ଥିଲେ । ଗୃହସ୍ଥର ଅନୁମତି ନ ନେଇ ଅତିଥି କିପରି ପୁଣି ସାଙ୍ଗସାଥିଙ୍କୁ ଡାକି ଆଣି-ପାରିବ ? ସେଥିଯୋଗୁଁ ସେ ଆଗରୁ ଅନୁମତି ନେଉଥିଲେ । ହରିଜନ ଭାଇଙ୍କୁ ଖୁଆଇଲା ବେଳେ ନିଜେ ଠିଆ ହୋଇ ରହୁ-ଥିଲେ, ଖାଇବା ଖୁଆଇବା ଦେଖୁଥିଲେ । ସେମାନଙ୍କର ଖାଇବାର ଢଙ୍ଗ, ପରିଷ୍କାର ପରିଚ୍ଛନ୍ନତା ଦେଖି ଗାନ୍ଧୀ ବିଶେଷ ଖୁସି ହେଉଥିଲେ, ଆଶ୍ଚର୍ଯ୍ୟ ହେଉଥିଲେ; ଏତେ ଅଭାବ ଅତ୍ୟାଚାର ସତ୍ତ୍ୱେ ସେମାନେ ଆପଣାର ସଂସ୍କୃତି, ସ୍ୱଚ୍ଛତାବୋଧ କେମିତି ଠିକ୍ ରଖିଥିଲେ ।

କେତେଜଣ ସାହେବ ଓ ମେମ୍ ବିଲାତରୁ ଭାରତକୁ ଆସି-ଥିଲେ ; ସେମାନେ ଏହି ପଦଯାତ୍ରା ବେଳେ ଗାନ୍ଧୀଙ୍କ ସଙ୍ଗେ

ଦେଖା କରିବାକୁ ଆସିଥିଲେ ଏବଂ ଗସ୍ତ ଭିତରେ ଆପଣାର କଥାବାର୍ତ୍ତା ସାରିନେଲେ । ସେମାନଙ୍କ ଭିତରେ ଜଣେ ବିଲାତର ଦେଶସେବକ ଥିଲେ; ତାଙ୍କ ଘର ସ୍ୱିଜରଲାଣ୍ଡରେ; ସେ ଜଣେ ଶାନ୍ତିବାଦୀ—ଲୋକସେବାରେ ନିଜର ଜୀବନ ଉତ୍ସର୍ଗ କରିଛନ୍ତି ଏବଂ ଗୋଟିଏ ଦଳ ଗଢ଼ିଛନ୍ତି, ଯେଉଁମାନେ ଯେଉଁଠି ସେଠି ବିପଦ ପଡ଼ିଲେ ଲୋକଙ୍କ ସେବା କରିବାକୁ ଯାଉଥାନ୍ତି । ଭିନ୍ନ ଭିନ୍ନ ଜାତିର ଲୋକ ମିଶି ଏ ଦଳ ବାନ୍ଧିଛନ୍ତି । ପରସ୍ପର ଭିତରେ ବନ୍ଧୁଭାବ ବଢ଼ିବ, ଶାନ୍ତି ତିଷ୍ଠି ରହିବ, ଯୁଦ୍ଧ କନ୍ଦଳ ବଢ଼ିବ ନାହିଁ, ଏହା ତାଙ୍କର ଉଦ୍ଦେଶ୍ୟ ଥିଲା । ତାଙ୍କର ନାମ ଥିଲା "ପିୟର ସେରିସୋଲ" । ସେ ଜଣେ ଇଞ୍ଜିନିୟର ଥିଲେ । ବିହାରରେ ଯେଉଁ ଭୂମିକମ୍ପ ହୋଇଥିଲା, ସେଥିରେ ବି ସେ ସାହାଯ୍ୟ କରିବାକୁ ଆସିଥିଲେ ।

ହରିଜନଙ୍କୁ ନିମନ୍ତ୍ରଣ କରିବା ସଙ୍ଗେ ସଙ୍ଗେ ହରିଜନ ପିଲାଙ୍କୁ ଆଣି ତାଙ୍କୁ ଗାଧୋଇଦେଇ, ସଫାସୁତୁରା କରି, ଭଜନ ଶିଖାଇବା କାମ ନାରୀକର୍ମୀଙ୍କ ଉପରେ ଦିଆଯାଇଥିଲା । ଯେସବୁ ଫଳ ବା ଖାଇବା ଚିଜ ବାହାରୁ କେହି ପଠାଇ ଦେଉଥିଲେ, ସେସବୁ ଏ ହରିଜନ ପିଲାଙ୍କୁ ଦିଆଯାଉଥିଲା ।

ଲେଖନପୁରଠାରୁ ସନ୍ଧ୍ୟାକୁ ଯାଇ ଗାନ୍ଧୀ ସତ୍ୟଭାମାପୁରଠାରେ ୬ ମଧୁବାବୁଙ୍କ ଘରେ ରହିଥିଲେ । ପରଦିନ ସକାଳୁ ସେ ବନ୍ଧୁକୁଦ ଚଟୀକୁ ବାହାରିଥିଲେ । ଗାଉଁଲି ବାଟରେ ଯାଉ ଯାଉ ଲୋକେ ମଇଳା କରିଥିବାର ଦେଖାଗଲା । ଡେଇଁ ଡେଇଁ ସମସ୍ତଙ୍କୁ ଯିବାକୁ ପଡ଼ୁଥିଲା । ସେଦିନ ସଭାରେ "ମୋର ଆଜ ସାକ୍ଷାତ୍ ଅସ୍ପୃଶ୍ୟତାର ଦର୍ଶନ ମିଳିଛି-—"ଏହି ସ୍ୱରରେ ଗାନ୍ଧିଜୀ ବକ୍ତୃତା

ଆରମ୍ଭ କରିଥିଲେ । ଗାନ୍ଧୀ ଏ ଗାଁ ସଫେଇ ସମ୍ବନ୍ଧରେ ଉକ୍ତଳ ଗସ୍ତ କଥା ମନେ ପକେଇ ତାଙ୍କ ଖବରକାଗଜରେ ଲେଖିଥିଲେ, "ଯଦି ସେବକମାନେ ନିଜେ ମେହେନ୍ତର ଭଳି କାମ ନିଜେ ନିଜେ ଆରମ୍ଭ କରିଦେବେ, ନିତି ନିତି ନିୟମ କରି ସେହି କାମ କରି ଯାଉଥିବେ ; ଅଥଚ ଗାଁଲୋକଙ୍କୁ ବୁଝାଉଥିବେ ଯେ ଏ କାମ ଗାଁ-ଲୋକଙ୍କର, ତେବେ ନିଶ୍ଚୟ ଦିନେ ଗାଁ-ଲୋକେ ଏ କାମକୁ କରିବେ । ସେବକମାନେ ଜାଣି ରଖନ୍ତୁ, ଏପରି କଲେ ଶୀଘ୍ର ହେଉ ବା ବିଳମ୍ବ ହେଉ, ଗ୍ରାମବାସୀମାନେ ନିଶ୍ଚୟ ସେ କାମରେ ଯୋଗ ଦେବେ । ଦକ୍ଷିଣ-ଆଫ୍ରିକା ଓ ଚମ୍ପାରନରେ ମୋର ଏହି ଅନୁଭୂତି, ଏପରି କି ଉତ୍କଳରେ ଯେ ପଦଯାତ୍ରା ଗତବର୍ଷ କରିଥିଲି, ସେଥିରେ ମଧ୍ୟ ଏହି ଅନୁଭୂତି ପାଇଛୁ ।" (୮-୨-୩୫)

ବହୁରୂପଠାରେ ଗାନ୍ଧୀଙ୍କର କ୍ଷୌରପାଳି ଥିଲା । ତେଣୁ ତାଙ୍କ ସହଚର ଗାଁ ଭଣ୍ଡାରିକୁ ଡକାଇ ପଠାଇଥିଲେ । ଭଣ୍ଡାରି ଆସିଲାଣି ବୋଲି ଖବର ଦେବା ସଙ୍ଗେ ସଙ୍ଗେ ଗାନ୍ଧୀ କହିଥିଲେ, "ମୁଁ ମଧ୍ୟ କ୍ଷୌର ପାଇଁ ପ୍ରସ୍ତୁତ ।" ଏତିକରେ ଜଣେ ଗାଉଁଲି ସ୍ତ୍ରୀଲୋକକୁ ଆଣି ହାଜର କରାଯାଇଥିଲା ; ସେ ସାଙ୍ଗରେ ଭଣ୍ଡାରି ମୁଠି ଆଣିଥାଏ । ଗାନ୍ଧୀ ହସି ହସି ପଚାରିଲେ, "ବାଃ ! ବେଶ ଭଲକଥା । ତେମେ କ'ଣ ମତେ କ୍ଷୌର କରିବ ?" ସେ ଗାଁ ଭଣ୍ଡାରୁଣୀ ହସିକରି ଜବାବ ଦେଇଥିଲା ଏବଂ ଚଟାପଟ କ୍ଷୁର ଧାର ଦେବାକୁ ଆରମ୍ଭ କରିଥିଲା । କ୍ଷୌର କଲାବେଳେ ଗାନ୍ଧୀଙ୍କର ନଜର ତାହା ହାତ-ଗହଣା ଉପରେ ପଡ଼ିଥିଲା । ସେ ବସ୍ତୁତଃ ଗରିବ ଲୋକ, ତଥାପି ଶଙ୍ଖା ମୁଠାକ ଛଡ଼ା ଯୋଡ଼ାଏ ରୂପା ଖଡ଼ୁ ଓ ନାକରେ ସୁନା

ଗହଣାଟିଏ ପିନ୍ଧିଥିଲା । ଗାନ୍ଧୀ କହିଲେ, "ଏସବୁ କଦର୍ଯ୍ୟ ଜିନିଷ-ଗୁଡ଼ିକ କ'ଣ ? ସେଗୁଡ଼ିକ ପିନ୍ଧି ତୁମେ ତ ଅଧିକ ସୁନ୍ଦର ଦିଶୁ ନାହଁ ? ସେଗୁଡ଼ିକ ଭିତରେ କଦର୍ଯ୍ୟ ଓ ସେଥିରେ ମଳି ଜମି ରହେ ।" ବିଚାରୀ ଝିଅଟିର ମୁହଁ ଶୁଖି ଯାଇଥିଲା । ସେ କୈଫିୟତ ଦେଲା ଭଳି କହିଥିଲା, "ମୁଁ ତ ଏ ଶୁଭ କାମ ପାଇଁ ଏ ସବୁ ଉଧାର ଆଣିଛି । ମୁଁ ଦି'ଖଣ୍ଡ ଭଲ ଗହଣା ନ ନାଇ ଆପଣଙ୍କ ଆଗକୁ ଆସନ୍ତି କେମିତି ?"

ଗାନ୍ଧୀ ତାକୁ ବୁଝାଉଥିଲେ । ସେସବୁ ଧୀରସ୍ଥିର ହୋଇ ଶୁଣିଥିଲା । ......ସେ ଟିକିଏ ହସି ଚୁପ୍ ରହିଥିଲା । ସେ ଚାଲି-ଗଲା; ଆଉ ଦୁଇ ଜଣଙ୍କୁ ଷୋରି କଲା ଏବଂ ସବୁ ମଞ୍ଜୁଷାପାକ ଆଣି ଗାନ୍ଧୀଙ୍କ ପାଖରେ ଥୋଇଦେଇ ଚାଲିଗଲା ।

ଏହି ସମୟରେ ବମ୍ବେରୁ ଶ୍ରୀ ମଶାନି ନାମରେ ଜଣେ ସାମ୍ୟବାଦୀ ନେତା ଗାନ୍ଧୀଙ୍କ ସଙ୍ଗେ ଦେଖା କରିବାକୁ ଆସିଥିଲେ । ସେତିକିବେଳେ ଭାରତବର୍ଷରେ ସାମ୍ୟବାଦର ହାଓ୍ୱା ଖୁବ୍ ଜୋର ବହୁଥାଏ । ପଶ୍ଚିମରୁ ନୂଆ ଚିନ୍ତାଧାରା ଆସିଥାଏ ବୋଲି ଅନେକଙ୍କ ମନ ସେଆଡ଼କୁ ଢଳିଥାଏ । ଗାନ୍ଧୀଙ୍କ ମତ ସଙ୍ଗେ ସାମ୍ୟବାଦର ମତ ମିଳେ ନାହିଁ; ସେଥିପାଇଁ ସାମ୍ୟବାଦ • ହୁଁ କରି କଂଗ୍ରେସୀ ମହଲରେ ବଢ଼ିପାରି ନ ଥାଏ । ସେହି ବର୍ଷ ସେପ୍ଟେମ୍ବର ସତର ତାରିଖରେ ଓ୍ୱାର୍ଦ୍ଧାଠାରୁ ଗାନ୍ଧୀ ଯେ ବିଖ୍ୟାତ ବିବୃତି ପ୍ରକାଶ କରିଥିଲେ, ସେଥିରେ ଏ ସାମ୍ୟବାଦ ସମ୍ବନ୍ଧରେ ତାଙ୍କର ମତ ଜଣାଇ ଦେଇଥିଲେ । କଂଗ୍ରେସର ପାଠୁଆ ଲୋକଙ୍କ ସଙ୍ଗେ ତାଙ୍କର କପରି ମୌଳିକ ମତଭେଦ ଅଛି ଏବଂ ସେ କପରି ସେମାନଙ୍କଠୁଁ ଓଲଟା ବାଗରେ ଯାଉଛନ୍ତି, ତାହା

ସେଥିରେ ସେ ଟିକିନିଖି କରି ବୁଝାଇ ଦେଇଥିଲେ । ସାମ୍ୟବାଦ ସମ୍ପର୍କରେ ସେ କହିଛନ୍ତି, "ଯେ ସାମ୍ୟବାଦୀ ଦଳ ଗଢ଼ାହୋଇଛି, ମୁଁ ସେମାନଙ୍କୁ ସ୍ୱାଗତ କରୁଛି । ତାଙ୍କ ଭିତରେ ଅନେକ ସ୍ୱାର୍ଥତ୍ୟାଗୀ ଓ ସମ୍ମାନିତ ସହକର୍ମୀ ଅଛନ୍ତି । ସେମାନେ ତାଙ୍କର କାର୍ଯ୍ୟକ୍ରମ ଆପଣା ପ୍ରଚାରପତ୍ରରେ ପ୍ରକାଶ କରିଛନ୍ତି । ସେ କାର୍ଯ୍ୟକ୍ରମ ସଙ୍ଗେ ମୋର ମୌଳିକ ମତଭେଦ ଅଛି; କିନ୍ତୁ ମୋର ନୈତିକ ପ୍ରଭାବ ପକାଇ ମୁଁ ତାଙ୍କର ଏ ପ୍ରଚାରରେ ବାଧା ଦେବାକୁ ଚାହେଁ ନାହିଁ । ସେ ସବୁ ଚିନ୍ତାଧାରା ମଧ୍ୟରୁ ଅନେକ ମତେ ଆଦୌ ରୁଚେ ନାହିଁ; ତଥାପି ସେସବୁ ବିଷୟର ଅବାଧ ପ୍ରକାଶରେ ହସ୍ତକ୍ଷେପ କରିବି ନାହିଁ । କଂଗ୍ରେସର ଅଧିକ ଲୋକେ ସେ ଭାବଧାରାକୁ ଗ୍ରହଣ କରିପାରନ୍ତି; ତାହାହେଲେ ମୁଁ ଆଉ କଂଗ୍ରେସ ଭିତରେ ରହିପାରିବି ନାହିଁ । କାରଣ ତା' ଭିତରେ ସେ ମତ ସଙ୍ଗେ ବିରୋଧ କରିବା କଥା ମୁଁ ପାରିବି ନାହିଁ, ସେକଥା ମୋ ମନକୁ ଆସୁ ନାହିଁ । ଜୀବନରେ ବହୁ କାଳ ଧରି ସେବାକ୍ଷେତ୍ରରେ ମୁଁ ଅନେକ ଅନୁଷ୍ଠାନ ସଙ୍ଗେ ସମ୍ପର୍କ ରଖିଛି; ମାତ୍ର ସେଭଳି ବହୁମତ ବିରୁଦ୍ଧରେ ରହି କାମ କରିବା ମୁଁ କେବେହେଁ ପସନ୍ଦ କରି ନାହିଁ ।"

---

(ଲେଖକଙ୍କର "ଗାନ୍ଧୀ ଓ ଉତ୍କଳ" ପୁସ୍ତକରୁ ଗୃହୀତ)

# ଚରିତ୍ର ସମସ୍ୟା

## ଅଧ୍ୟାପକ ଶ୍ରୀ ରତ୍ନାକର ପତି

ମାନବଜୀବନ ପ୍ରତି ଦୃଷ୍ଟିପାତ କଲେ ଦେଖାଯାଏ ଯେ, ଏକ ବ୍ୟକ୍ତି ଅବସ୍ଥାଭେଦରେ ନାନାପ୍ରକାର କାର୍ଯ୍ୟ କରିଥାଏ । କାଲି ଯେ ଭଲ, ଆଜି ସେ ମନ୍ଦ; କାଲି ଯାହାକୁ ଆମ୍ଭେମାନେ ମୁକ୍ତକଣ୍ଠରେ ପ୍ରଶଂସା କରି ଗର୍ବ ଓ ଆନନ୍ଦ ପ୍ରକାଶ କରିଥିଲୁଁ, ଆଜି ତାକୁ ଠିକ୍ ବିପରୀତ ଭାବରେ ଦେଖୁଅଛୁଁ; ଆଜି ତାହାର ବିଷୟ ଆଲୋଚନା କଲାବେଳେ କପରି ଦୁଃଖିତ ଓ ଲଜ୍ଜିତ ହେଉଅଛୁଁ । ପକ୍ଷାନ୍ତରେ ଯେ ବ୍ୟକ୍ତି ପୂର୍ବେ ଜଘନ୍ୟ କାର୍ଯ୍ୟ କରୁଥିଲେ, ସେ ଆଜି ତାହାଙ୍କର ଆଦର୍ଶ କାର୍ଯ୍ୟଦ୍ୱାରା ଜନ-ସମାଜରେ ପ୍ରଶଂସିତ । ଚଣ୍ଡାଶୋକ ଦିନେ ଧର୍ମାଶୋକରେ ପରିଣତ ହେଲେ; ସେକ୍‌ସ୍‌ପିଅର ହରିଣ ଚୋରି କରି କାରାରୁଦ୍ଧ ହେଲା ପରେ ଇଂଲଣ୍ଡର କବିବରଙ୍କର ଆସନ ଅଧିକାର କଲେ । ଏହିପରି ଏକ ବ୍ୟକ୍ତି କାଳ ଓ ଅବସ୍ଥାଭେଦରେ ନାନାବିଧ କର୍ମ କରି ଜନ ସମାଜରେ ବିଭିନ୍ନ ଭାବରେ ସମାଲୋଚିତ ହୋଇଥାନ୍ତି ।

କୌଣସି ବ୍ୟକ୍ତିଙ୍କର ଚରିତ୍ର ତାହାଙ୍କର ଏହି ଜୀବନଗତ କାର୍ଯ୍ୟକଳାପରେ ସମାଲୋଚନା ଦ୍ୱାରା ନିଶ୍ଚିତ ହୋଇଥାଏ । ଏହି ସମାଲୋଚନା ସାହାଯ୍ୟରେ ଆମ୍ଭେମାନେ ଲୋକର ଭଲ ମନ୍ଦ ଗୁଣ ବାଛିନେଉଁ । କାରଣ କୌଣସି ଲୋକର କାର୍ଯ୍ୟକଳାପ ତାହାର ଭଲ ବା ମନ୍ଦ ଗୁଣର ପରିଚାୟକ । ତେଣୁ "ସେ ବ୍ୟକ୍ତି ସମୟ ବା ଅବସ୍ଥାଭେଦରେ ଯେଉଁ ଯେଉଁ କାର୍ଯ୍ୟଗୁଡ଼ିକ କରନ୍ତି, ସେଗୁଡ଼ିକ ଦେଖି ଆମ୍ଭେମାନେ ତାହାଙ୍କର ଗୁଣନିର୍ଣ୍ଣୟ କରିଥାଉଁ । ଏହି ଗୁଣନିର୍ଣ୍ଣୟ ମାନବର ଚରିତ୍ର ନିର୍ଣ୍ଣୟ ନାମରେ ଅଭିହିତ ହୋଇଥାଏ ।

ଉପରୋକ୍ତ ବିଷୟରୁ ବୁଝାଯାଉଅଛି ଯେ, ଚରିତ୍ର ମାନବର କାର୍ଯ୍ୟକଳାପ ଉପରେ ପ୍ରତିଫଳିତ ଭଲ ବା ମନ୍ଦଗୁଣ, ସତ୍ ଓ ଅସତ୍ କାର୍ଯ୍ୟଗୁଡ଼ିକ ଯଥାକ୍ରମେ ମାନବର ସତ୍ ଓ ଅସତ୍ ଚରିତ୍ରର ପରିଚାୟକ । ଏହି କାର୍ଯ୍ୟକଳାପ ଦେଖି ଆମ୍ଭେମାନେ ତାହାକୁ ସଚ୍ଚରିତ୍ର ବା ଅସଚ୍ଚରିତ୍ର ଆଖ୍ୟା ଦେଇଥାଉଁ; ମାତ୍ର ମନେ ରଖିବା ଉଚିତ ଯେ ଜୀବନର ନାନା ଘଟଣାପ୍ରଣୋଦିତ ସାମୟିକ ଗୁଣ ଓ କାର୍ଯ୍ୟ ପ୍ରଦର୍ଶନ ପ୍ରକୃତରେ ଚରିତ୍ର ନୁହେଁ । ଯେଉଁ ଗୁଣ ଗୁଡ଼ିକ ଥିଲେ ଲୋକ ସତ୍ ବା ଅସତ୍ ବୋଲି ବିବେଚିତ ହୁଏ, କାର୍ଯ୍ୟରେ ସେହି ଗୁଣଗୁଡ଼ିକର ସାମୟିକ ପ୍ରଦର୍ଶନ ତାହାର ସଚ୍ଚରିତ୍ରତା ବା ଅସଚ୍ଚରିତ୍ରତାର ଚିହ୍ନ ହୋଇ ନ ପାରେ । ଏହି ବିଷୟରେ ଅନଭିଜ୍ଞତା ଅନେକଙ୍କୁ କୌଣସି ଲୋକର ଆଂଶିକ ବା ସାମୟିକ ଗୁଣପ୍ରଦର୍ଶନକୁ ଚରିତ୍ର ନାମରେ ଅଭିହିତ କରିବାକୁ ପ୍ରବର୍ତ୍ତାଇଥାଏ, ମାତ୍ର ଏହା ଭ୍ରମମୂଳକ ଅଟେ । ତେଣୁ ଦେଖିବାକୁ ହେବ, ଚରିତ୍ର କଣ ? ସଚ୍ଚରିତ୍ରତାର ଚିହ୍ନ କଣ ? ଓ କିପରି ଅବସ୍ଥାରେ ଆମ୍ଭେମାନେ କୌଣସି ବ୍ୟକ୍ତିର ଚରିତ୍ର ଗଠିତ ହୋଇଅଛି ବୋଲି ଜାଣିବୁ ?

ପୂର୍ବେ କୁହାଯାଇଅଛି ଯେ, ଚରିତ୍ର ମାନବର କାର୍ଯ୍ୟ-କଳାପରେ ପ୍ରତିଫଳିତ ହୁଏ; ମାତ୍ର ଯେ କୌଣସି କାର୍ଯ୍ୟ କଳାପରେ ନୁହେଁ । ଉଦାହରଣ ସ୍ୱରୂପ ମନେ କର ଜଣେ ଲୋକ ଦୁଇ ତିନିଥର ସତ୍ୟ କହିଅଛି । ତାର ଏପରି ଅବସ୍ଥା ଘଟି ନାହିଁ, ଯହିଁରେ କି ସେ ସତ୍ୟ ଛାଡ଼ି ମିଥ୍ୟା କହିବ କି ନା, ଏପରି ପ୍ରଶ୍ନ ତାହାର ମନରେ ଉଠି ନାହିଁ । ଏପରି ସ୍ଥଳେ କଣ ତାହାର ଏହି ଦୁଇ ତିନି ଥର ସତ୍ୟକଥନ ଦେଖି ଆମ୍ଭେମାନେ ତାକୁ

ପ୍ରକୃତରେ ସତ୍ୟବାଦୀ ବୋଲି କହିବା ? ନା, କାରଣ ସେ ବ୍ୟକ୍ତି ସ୍ୱତଃ ନିରବଚ୍ଛିନ୍ନ ଭାବରେ ଓ ଅବିଚଳିତ ଚିତ୍ତରେ ସତ୍ୟ କହିବା ପାଇଁ ହୃଦୟରୁ ଗଢ଼ି ନାହାନ୍ତି । ତେଣୁ ତାଙ୍କର ଚରିତ୍ର ସତ୍ୟକଥନ ଦିଗରେ ଗଠିତ ହୋଇନାହିଁ । ସେହିପରି ଏହି ଚରିତ୍ର ଘଟନା-ବିଶେଷରେ ମଧ୍ୟ ମନ୍ଦ ଦିଗରେ ଗଠିତ ହୋଇନାହିଁ । ଯଦି କୌଣସି ବ୍ୟକ୍ତି ଘଟଣା ବଶତଃ ଥରେ ଦୁଇ ଥର ଗୋଟିଏ ମନ୍ଦ କାର୍ଯ୍ୟ କରନ୍ତି, ତାହାହେଲେ ତାହାଙ୍କୁ ଆମ୍ଭେମାନେ ହଠାତ୍ ଅସଚ୍ଚରିତ୍ର ଆଖ୍ୟା ଦେଇ ନ ପାରୁଁ । ଯଦି ଦେଖୁଁ ଯେ କୌଣସି ଲୋକ ସର୍ବଦା ସ୍ୱତଃ କ୍ରମିକ ଭାବରେ ଓ ଅବିଚଳିତ ଚିତ୍ତରେ ସେହି ମନ୍ଦ କାର୍ଯ୍ୟ ଦିଗରେ ପ୍ରଧାବିତ ହେଉଅଛି, ତାହାହେଲେ ଆମ୍ଭେମାନେ ହୀନଚରିତ୍ର ବୋଲି ମୁକ୍ତକଣ୍ଠରେ କହିପାରୁଁ ।

ତେବେ ବର୍ତ୍ତମାନ ଦେଖାଯାଉ, ସଚ୍ଚରିତ୍ର କିପରି ଗଠିତ ହୁଏ । ସର୍ବଦା ସତ୍ୟ-ପଥରେ କାର୍ଯ୍ୟ କରି କରି ସେହି କାର୍ଯ୍ୟ କରିବାର ଇଚ୍ଛାଟି ଏପରି ଗୋଟିଏ ଅଭ୍ୟାସରେ ପରିଣତ ହୋଇ ପଡ଼େ ଯେ, ମାନବ ଯେତେ ପ୍ରଲୋଭନରେ ପଡ଼ିଲେହେଁ ତିଳେ ମାତ୍ର ତହିଁରୁ ବିରତ ହୁଏ ନାହିଁ । ଏହିପରି କାର୍ଯ୍ୟ କରିବାର ଗୁଣଟି ଯେଉଁ ଲୋକଠାରେ ଦେଖାଯାଏ, ତାହାକୁ ହିଁ ଆମ୍ଭେମାନେ ଚରିତ୍ରବାନ୍ ବୋଲି କହୁଥାଉଁ । ମନେକର, ଜଣେ ଲୋକ ନିଜର ସାଧନା ବଳରେ ଏପରି ଭାବରେ ଦାନଶୀଳତା ଶିଖିଅଛି ଯେ, ସେହି କାର୍ଯ୍ୟଟି ତାହାର ଜୀବନରେ ଗୋଟିଏ ଅଭ୍ୟାସରେ ପରିଣତ ହୋଇ ତାହାକୁ ସର୍ବଦା ସେହି ଦିଗରେ ଚାଳିତ କରୁଅଛି । ଏଠାରେ ତାହାର ଦାନଶୀଳତା ଚରିତ୍ରର ଉତ୍କର୍ଷ ରୂପରେ ଦଣ୍ଡାୟମାନ ହୁଏ । ଏହି କ୍ରମିକ ସ୍ୱତଃପ୍ରଣୋଦିତ କାର୍ଯ୍ୟଜନିତ ଚରିତ୍ର-ଉତ୍କର୍ଷ ହିଁ ସଚ୍ଚରିତ୍ରତା ।

ଉପରୋକ୍ତ ଆଲୋଚନାରୁ ଦେଖାଗଲା ଯେ, ଏକ ଦିଗରେ ସାମୟିକ ଅବସ୍ଥା ଓ ସାମୟିକ ଉତ୍ତେଜନାଜନିତ ଭୁଲ ବା ମନ୍ଦ କାର୍ଯ୍ୟ, ଅନ୍ୟ ଦିଗରେ ସୁପ୍ରବୃତ୍ତିସାଧିତ ନୈତିକ; ସୁତରାଂ ଅଭ୍ୟାସ-ଗତ କାର୍ଯ୍ୟକଳାପ—ଏହି ଦୁଇଟି ମଧ୍ୟରୁ ଯେ କୌଣସି ଦିଗରେ ମାନବ ଗତି କରିପାରେ । ଶେଷୋକ୍ତ କାର୍ଯ୍ୟକଳାପର ଫଳ ହେଲା ସଚ୍ଚରିତ୍ରତା; ଅନ୍ୟ କାର୍ଯ୍ୟର ଫଳ କଣ ହେବ ? ସାମୟିକ ଉତ୍ତେଜନାରେ ପଡ଼ି ମାନବ ଦାନଶୀଳ ହୋଇଥାଏ; ମାତ୍ର ତା' ପରେ ପୁନର୍ବାର ତାହାର ପୂର୍ବାବସ୍ଥାକୁ ଅବଲମ୍ବନ କରେ । ଆଜି ପିତାର ମୃତ୍ୟୁରେ ଜନୈକ ଭଦ୍ରବ୍ୟକ୍ତି ଦୁଃଖରେ ପଡ଼ି ଜଳକୁ ଡେଇଁପଡ଼ିବାକୁ ଇଚ୍ଛା କରିଅଛନ୍ତି; କିନ୍ତୁ କାଲିକି ସେ ସମସ୍ତ ଭୁଲି ପୁନର୍ବାର ପୂର୍ବ ବୀର୍ଯ୍ୟ ଓ ସାହସ ନେଇ ସଂସାରରେ ଯୁଦ୍ଧ କରୁଅଛନ୍ତି । ଆଜି ପୁରୁଷ ସ୍ତ୍ରୀବିରହରେ ପାଗଳପ୍ରାୟ କହୁଅଛି, 'କା ତବ କାନ୍ତା, କସ୍ତେ ପୁତ୍ର'—ଏ ସଂସାରଟା ବୃଥା ଇତ୍ୟାଦି; ଏବଂ ସେଥିପାଇଁ ଆଜି ଋଷିଜୀବନ ଯାପନରେ ବ୍ରତୀ ହୋଇ ସଂସାର ପ୍ରତି ପୂର୍ଣ୍ଣ ବୈରାଗ୍ୟ ଦେଖାଇଅଛନ୍ତି । ମାତ୍ର ବଡ଼ ଆଶ୍ଚର୍ଯ୍ୟ ବିଷୟ, କିଛି ଦିନ ପରେ ସେ ପୁନଃ ସଂସାର ଗ୍ରହଣ କରି ସେହି ବିଷୟବାସନାରେ ବଦ୍ଧ ହୋଇ କହୁଅଛନ୍ତି, ସନ୍ନ୍ୟାସୀ ଜୀବନ ଜୀବନ ନୁହେଁ । କାରଣ ତାହା ମନୁଷ୍ୟକୁ ସଂସାରପ୍ରତି ଉଦାସୀନ କରାଇଦିଏ ।' ସେହିପରି ଆଜି ମଧ୍ୟ ମାନବ ବନ୍ଧୁ-ସ୍ୱଜନ ପ୍ରୀତିରେ ମୁଗ୍ଧ ହୋଇ କହୁଅଛି, "ବନ୍ଧୁ ମୋର, ଧନ ମୋର, ଜନ ମୋର" କାଲି ସେ ସେହି ବନ୍ଧୁବାନ୍ଧବ-ମାନଙ୍କଠାରୁ କେତେକ ମର୍ମସ୍ପର୍ଶୀ ବ୍ୟବହାର ପାଇ ଚିତ୍କାର କରୁଅଛି, 'ନିଃସଙ୍ଗତା ମୁକ୍ତିପଦଂ ଯତୀନାମ୍' ଏହିରୂପେ ନାନା ପ୍ରକାର କାର୍ଯ୍ୟ ଚାଲି ଅଛି, ଏକ ମାନବ କେତେ ଅବସ୍ଥା

ଭୋଗ କରୁଅଛି; ସେ ଆଜ ଦାଣ୍ଡର ଭିକାରୀ ତ କାଲି ଗୋଟିଏ ଉଚ୍ଚପଦସ୍ଥ ବ୍ୟକ୍ତି; କେହି ଆଜ ଚୋର ତ କାଲି ସାଧୁପୁରୁଷ, ଇତ୍ୟାଦି, ଇତ୍ୟାଦି ।

ତେବେ ବ୍ୟକ୍ତିର ଏହିପ୍ରକାର କାର୍ଯ୍ୟଗୁଡ଼ିକୁ କଣ କହିବା ? ଏଗୁଡ଼ିକୁ ଦେଖି କଣ ଆମ୍ଭେମାନେ ତାହାର ସତ୍ ବା ଅସତ୍ ଚରିତ୍ର ନିର୍ଦ୍ଦେଶ କରିବା ? ନା, ଏଗୁଡ଼ିକ ମାନବର ପ୍ରକୃତ ଚରିତ୍ରର ଆଭାସ ହୋଇ ପାରିବେ ନାହିଁ । ଉପରୋକ୍ତ ଅବସ୍ଥାକୁ ଆମ୍ଭେମାନେ ମାନବର ସାଧନାର ଅବସ୍ଥା ବୋଲି କହିପାରୁଁ । ଏ ଅବସ୍ଥାରେ ତାହାର କାର୍ଯ୍ୟରେ କେତେ ଉତ୍ଥାନ ଓ କେତେ ପତନ ହୋଇଯିବ; ସେ କୌଣସି ଗୋଟିଏ ଆଦର୍ଶକୁ ଲକ୍ଷ୍ୟ କରି ଜୀବନ ଗଢ଼ିବାକୁ ଗଲେ କେତେ-ବେଳେ ସହଜରେ ସେହି ଆଦର୍ଶ ଦିଗକୁ ଅଗ୍ରସର ହେଉଥିବ; କେତେବେଳେ ପୁଣି ସେହି ଆଦର୍ଶ ଦିଗରୁ ବିଚଳିତ ହେଉଥିବ, କେତେବେଳେ ସେହି ଆଦର୍ଶକୁ ସମ୍ମୁଖରେ ରଖି ଅନ୍ୟାନ୍ୟ ସମସ୍ତ ଭୁଲିଯିବ; କେତେବେଳେ ସେହି ଦିଗରୁ ବିଚ୍ୟୁତ ହେଉଥିବ —ଏହିପରି ତାହାର ଜୀବନରେ ଉତ୍ଥାନ ପତନ,ଚଳନ ଓ ସ୍ଖଳନ ହେଉଥିବ । ଏହି ଅବସ୍ଥା ମାନବର ନୈତିକ ଜୀବନରେ କେବଳ ସାଧକର ଅବସ୍ଥା; ତାହା କେତେବେଳେ ତାହାର ଚରିତ୍ର ଗଠନର ଉତ୍କୃଷ୍ଟାବସ୍ଥା ନୁହେଁ । ଯେ ପର୍ଯ୍ୟନ୍ତ ସେ ସମସ୍ତ ବାଧାବିଘ୍ନ ମଧ୍ୟରେ ଗୋଟିଏ ଉଜ୍ଜ୍ୱଳ ଆଦର୍ଶ ଦିଗରେ ଧାବମାନ ହେଉଥିବ, ସେହି ସମସ୍ତ ମଧ୍ୟରେ ହୁଏତ ଏପରି ପ୍ରଲୋଭନରେ ସେ ପଡ଼ିପାରେ, ଯାହା କି ତାକୁ ତାହାର ଆଦର୍ଶ ଦିଗରୁ ଅନ୍ୟ ଦିଗକୁ ଟାଣି ଆଣିବ । ବାସ୍ତବିକ୍ ଏହି ଅବସ୍ଥାଟି ଗୋଟିଏ ବଡ଼

ସନ୍ଧିସ୍ଥଳ, ଏଠାରେ ଏକ ଦିଗରେ ତାହାର ଆଦର୍ଶ ଉଜ୍ଜ୍ୱଳ କିରଣ ଏବଂ ଅନ୍ୟ ଦିଗରେ ପାପଚିନ୍ତା ଓ ଇନ୍ଦ୍ରିୟମାନଙ୍କର ଆପାତ-ମଧୁର ଆହ୍ୱାନ—ସେ ଏହି ସଙ୍କଟସ୍ଥଳରେ ଉପସ୍ଥିତ ହୋଇ କଣ କରିପାରେ ?

ହୁଏତ ଆଦର୍ଶର ଜ୍ୟୋତିରେ ଅନୁପ୍ରାଣିତ ହୋଇ ସମସ୍ତ ପାପ ପ୍ରଲୋଭନ ଓ ଇନ୍ଦ୍ରିୟସୁଖ ଏକାବେଳକେ ଭୁଲିଯାଇ ପାରେ, ନ ହୁଏତ ଇନ୍ଦ୍ରିୟଲାଳସାରେ ପଡ଼ି ଆଦର୍ଶକୁ ଏଡ଼ିଦେଇ ପାରେ; କାରଣ ମାନବଜୀବନ ସର୍ବଦା କର୍ମମୟ, ତେଣୁ ସେ ସ୍ଥିର ହୋଇ କେବେହେଁ ରହିପାରିବ ନାହିଁ । ଏହି ଟଣାଟଣି ଅବସ୍ଥାଟି ମାନବ ଚରିତ୍ର-ଗଠନର ସାଧାରଣ ସ୍ଥଳ । ହୁଏତ ସେ ଏକାବେଳକେ ପଶୁ ହେଉ, ଅଥବା ଏକାବେଳକେ ଗୋଟିଏ ଈଶ୍ୱରୋପମ ସାଧୁପୁରୁଷ-ରୂପେ ଦଣ୍ଡାୟମାନ ହେଉ । ଏପରି ଅବସ୍ଥାରେ ଯେତେବେଳେ ସେ ସର୍ବଦା ଇଚ୍ଛାକ୍ରମେ ଇନ୍ଦ୍ରିୟପ୍ରଲୋଭନ ଦମନ ପୂର୍ବକ ଆଦର୍ଶକାର୍ଯ୍ୟ ଦିଗରେ ନିଜକୁ ପ୍ରଯୋଜିତ କରିବ ଏବଂ ଯେତେବେଳେ ସେ ଏପରି ଗୋଟିଏ ଅବସ୍ଥାରେ ଉପନୀତ ହେବ ଯେ, ସେ କୌଣସି ପ୍ରଲୋଭନ ଅନୁଭବ କରି ପାରିବ ନାହିଁ, ସେତେବେଳେ ଯାଇ ସେ ତାହାର ଚରିତ୍ର ଗଠନ କରିଅଛି ବୋଲି କହିବାକୁ ହେବ ।

ପାଠକ ଦେଖନ୍ତୁ, କେତେ ଗୁରୁତର ବିଷୟ । ମାନବର ଚରିତ୍ରଗଠନ ବହୁ ସମୟସାପେକ୍ଷ ଓ ବହୁ ସାଧନମୂଳକ । ତାହା କେବଳ ଗୋଟିଏ ଦୁଇ ଗୋଟି ଭଲ କାର୍ଯ୍ୟ କରି ହୁଏତ ଗଠିତ ହୁଏ ନାହିଁ, ମାନବର ଚରିତ୍ର ଗଠନ ଦୁଇ ଚାରି ଜଣ ଭଦ୍ର-ଲୋକଙ୍କଠାରୁ ପ୍ରଶଂସାପତ୍ର ପ୍ରଦର୍ଶନରେ ସାଧିତ ହେବ ନାହିଁ । ତୁମ୍ଭେ ଆଜ ଭାବିଅଛ, ସମାଜ ଉଚ୍ଚପଦସ୍ଥ ବ୍ୟକ୍ତିଙ୍କଠାରୁ

କେତେକ ଅନୁକୂଳ ମତ ଦେଖାଇ ତୁମ୍ଭ ଚରିତ୍ରର ଉଜ୍ଜ୍ୱଳତା ପ୍ରତିପାଦନ କରିବ; ମାତ୍ର ମନେ ରଖ ଯେ ସେ ଆଶା ବୃଥା । ତୁମ୍ଭେ ଗୋଟିଏ ଭଲ କାର୍ଯ୍ୟ କରିଦେଇ ଚରିତ୍ରବାନ୍ ବୋଲି ଜନ-ସମାଜରେ ଅଭିହିତ ହେଲ, ମାତ୍ର କାଲିକି ଆଉ ସେ କାର୍ଯ୍ୟ ପ୍ରତି ଆସ୍ଥା ନାହିଁ ।

ବାହାରେ ଆଡ଼ମ୍ବର ଦେଖାଇ ଭିତରେ ନାନା ପ୍ରକାର କୁକାର୍ଯ୍ୟ କଲେ, ତୁମ୍ଭର ପ୍ରକୃତ ଚରିତ୍ର ଗଠିତ ହେଲା ନାହିଁ । ଏପରି ଲୋକ କେବଳ ମୟୂରପୁଚ୍ଛଧାରୀ କାକମାତ୍ର । ମନେରଖ, ଯେତେବେଳେ ତୁମ୍ଭର ହୃଦୟରେ ଏପରି ବଳ ଆସିବ ଯେ, ତୁମ୍ଭେ ଯେତେ ପ୍ରଲୋଭନରେ ପଡ଼ିଲେ ମଧ୍ୟ କେବଳ ସତ୍ପଥରୁ ବିଚଳିତ ହେବ ନାହିଁ; ଯେତେବେଳେ ବିବେକର ଉଜ୍ଜ୍ୱଳ କିରଣରେ ତୁମ୍ଭେ ଜୀବନ ପଥରେ ଗତି କରିବ ଏବଂ ଯେତେ ବେଳେ ସମସ୍ତ ଦୁଷ୍ପ୍ରବୃତ୍ତି ଦମନ କରି ସତ୍‌ଚିନ୍ତା ଓ ଅସତ୍ କାର୍ଯ୍ୟ ଛଡ଼ା ଆଉ କିଛି କରିପାରିବ ନାହିଁ, ସେତେବେଳେ ଯାଇ ତୁମ୍ଭେ ଚରିତ୍ର ଗଢ଼ିଅଛ ବୋଲି ଭାବିବ । ଏହି ଚରିତ୍ର ଗଠନ କାହାର ହାତରେ ନାହିଁ । ଅଛି କେବଳ ତୁମ୍ଭର ହାତରେ । ଅବଶ୍ୟ ତୁମ୍ଭେ ନାନା ଉପଦେଶ ଲାଭ କରିବ; ମାତ୍ର ସେଗୁଡ଼ିକୁ କାର୍ଯ୍ୟରେ ପରିଣତ କରିବା ତୁମ୍ଭ ଉପରେ ନିର୍ଭର କରେ । ତୁମ୍ଭର ଅନ୍ୟଠାରୁ ପ୍ରାପ୍ତ ଉପଦେଶଗୁଡ଼ିକ କିଛି ନୁହେଁ, ଯଦି ସେଗୁଡ଼ିକ ତୁମ୍ଭର ନୈତିକ ଜୀବନର ଭିତ୍ତିରେ ପରିଣତ ନ ହୁଏ; ଏବଂ ସେହି କାର୍ଯ୍ୟଟି ତୁମ୍ଭେହିଁ କରିପାରିବ, ଅନ୍ୟ କେହି ନୁହେଁ । 'ଚରିତ୍ର' 'ଚରିତ୍ର' ବୋଲି ଆଜି ଚିତ୍କାର ପଡ଼ୁଅଛି । ଉପଦେଷ୍ଟାଙ୍କର ଅଭାବ ନାହିଁ । ମାତ୍ର ସେସବୁ ବୃଥା, ଯେ ପର୍ଯ୍ୟନ୍ତ ତୁମ୍ଭେ ଚରିତ୍ର

ଗଢ଼ିବାରେ ତୁମ୍ଭର ନିଜ ପ୍ରାଣକୁ ଢାଳିଦେଇ ନାହିଁ । ଆସ ତେବେ ଅଣ୍ଟାଭିଡ଼ି; ହୃଦୟରେ ସାହସ ନିଅ, ବିବେକର ଉଜ୍ଜ୍ୱଳ କିରଣରେ ପ୍ରତିଭାତ ହୁଅ । ହୃଦୟରେ ଅଟଳ ପ୍ରତିଜ୍ଞା ଧରି ବସ, ଦେଖିବ ଚରିତ୍ରଗଠନ ସହଜସାଧ୍ୟ ହେବ । ତୁମ୍ଭେ ଆଉ ନାନାଆଡ଼େ ପ୍ରଧାବିତ ହେବ ନାହିଁ । ଆଉ କେବେ ତୁମ୍ଭେ ଜୀବନର ସାମୟିକ ଓ ଆକସ୍ମିକ-ଉତ୍କର୍ଷରେ ଗର୍ବିତ ହେବ ନାହିଁ ।

ବାସ୍ତବିକ ଚରିତ୍ରହୀନ ବ୍ୟକ୍ତି ଜଗତର କଳଙ୍କ ସ୍ୱରୂପ; ଚରିତ୍ର ମାନବର ମେରୁଦଣ୍ଡ ସ୍ୱରୂପ । ମାନବର ନୈତିକ ଜୀବନ ଉପରେ ତାହାର ସମସ୍ତ ଜୀବନ ନିର୍ଭର କରେ । ଯଦି ତୁମ୍ଭେ ଗୋଟିଏ ସୁଦୃଢ଼ ଭିତ୍ତି ଉପରେ ତୁମ୍ଭର ଜୀବନରୂପ ଅଟ୍ଟାଳି ଗଢ଼ିବାକୁ ଚାହଁ, ତାହାହେଲେ ମନେରଖ, ନୈତିକ ବଳହିଁ- କେବଳ ଚରିତ୍ରବଳହିଁ—ତୁମ୍ଭର ସେହି ସୁଦୃଢ଼ ଭିତ୍ତି । ମୁଁ ଶୁଣିଅଛି, ଲୋକେ କହନ୍ତି, "ଅମୁକର ଜୀବନରେ କୌଣସି ଗୋଟିଏ ( Principle ) ଶୃଙ୍ଖଳା ନାହିଁ । ନୀତି ବା ଶୃଙ୍ଖଳା କଣ ତାହା ମୋ ମତରେ ଅନ୍ୟ କିଛି ନୁହେଁ, ତାହା କେବଳ ଜୀବନର ଚରିତ୍ରଗଠନଜନିତ ଶୃଙ୍ଖଳା ବା ନିୟମିତ ଗତିଶୀଳତା । ତୁମ୍ଭେ ଆଜି ସତ୍ୟ କହି କାଲି ମିଥ୍ୟା କହିଲେ ଲୋକେ କହିବେ, ତୁମ୍ଭର ଜୀବନରେ କୌଣସି ଶୃଙ୍ଖଳା ବା ନୀତି ନାହିଁ । ତୁମ୍ଭ ଜୀବନର ଏହି ବିଶୃଙ୍ଖଳା ବା ଅସଂଯତତାର କାରଣ କଣ ? ତାହାର କାରଣ ଏହି ଯେ, ତୁମ୍ଭେ ପୂର୍ବସୂଚିତ ପ୍ରଣାଳୀ ଅନୁସାରେ ତୁମ୍ଭର ହୃଦୟ ଗଢ଼ିପାରି ନାହଁ, ଅର୍ଥାତ୍ ସତ୍ୟକଥନ ଦ୍ୱାରାରେ ତୁମ୍ଭର ଚରିତ୍ର ଗଠିତ ହୋଇନାହିଁ । ତେଣୁ କହେଁ, ଚରିତ୍ର କଣ ଭଲକରି ବୁଝ; ଏହି ବିଷୟରେ ତୁମ୍ଭର ପ୍ରକୃତ ଜ୍ଞାନ

ଜାଗ୍ରତ ହେଲେ ତୁମ୍ଭେ ଜୀବନର ସମସ୍ତ ଉତ୍‌ଥାନପତନ ମଧ୍ୟରେ ନିର୍ବିଘ୍ନରେ ଗତି କରିପାରିବ ଏବଂ ଅସତ୍ ପଥରେ କେବେହେଁ ସ୍ଖଳିତ ହୋଇ ପାରିବ ନାହିଁ । ଏପରି କି ସମୟରେ ଟିକିଏ ସତ୍ ପଥରୁ ବିଚ୍ୟୁତ ହେଲେ ତତ୍‌କ୍ଷଣାତ୍ ଚିତ୍କାର କରି ଉଠିବ, ଓହୋ ଫେରିଯାଏଁ, ଫେରିଯାଏଁ ଆଉ ରକ୍ଷା ନାହିଁ ।

ଯଥାର୍ଥରେ ସକଳ ସ୍ଥାନର ଓ ସକଳ ସମୟର ମନୀଷୀମାନେ ଏହି ନୀତି ଅବଲମ୍ବନ କରିଅଛନ୍ତି । ମହାତ୍ମା ମାନେ ଚରିତ୍ର-ଗଠନରେ ତିଳେମାତ୍ର ଅବହେଳା କରି ନାହାନ୍ତି । ସେମାନେ ଜୀବନବ୍ୟାପୀ ସାଧନାରେ ନିଜକୁ ନିୟୋଜିତ କରି ଜୀବନର ପ୍ରକୃତ ଉଦ୍ଦେଶ୍ୟ ଓ ପ୍ରକୃତ ଆଦର୍ଶ ବୁଝିଅଛନ୍ତି । ସେଥିପାଇଁ ସଂସାର ସେମାନଙ୍କଠାରେ ନାନାଭାବରେ ଋଣୀ । କହି ପାରନ୍ତି, କେତେ ମହାତ୍ମାନାମଧାରୀ ଚରିତ୍ରର ଅଭାବସତ୍ତ୍ୱେ ସଚ୍ଚରିତ୍ର ବୋଲି କଥିତ ଅଛନ୍ତି; ମାତ୍ର ମନେରଖିବାକୁ ହେବ ଯେ— ସେମାନଙ୍କର ମାହାତ୍ମ୍ୟ ପ୍ରକୃତ ନୁହେଁ ; କି କେବେହେଁ ନିତ୍ୟ-ବର୍ତ୍ତମାନ ରହିବ ନାହିଁ । ସେମାନଙ୍କର ଜୀବନର ମହତ୍ତ୍ୱପ୍ରକାଶ କେବଳ କ୍ଷଣିକ, କେବେହେଁ ଚିରସ୍ଥାୟୀ ନୁହେ । ଯଥାର୍ଥରେ ସଚ୍ଚରିତ୍ର ଲୋକ ସମସ୍ତ ଇନ୍ଦ୍ରିୟବାସନାର ବାହାରେ ଥାନ୍ତି । ସେ ସାଂସାରିକ କୌଣସି ପ୍ରଲୋଭନର ଅଧୀନ ନୁହନ୍ତି । ରାମକୃଷ୍ଣ ପରମହଂସଙ୍କର ଏ ବିଷୟରେ ଗୋଟିଏ ମନ୍ତବ୍ୟ ଯଥାର୍ଥରେ ସତ୍ୟ ଅଟେ । ସେ କହିଅଛନ୍ତି, ସଂସାର ଜଳ ସ୍ୱରୂପ ଓ ମାନବର ନବୀନ ଜୀବନ ଦୁଗ୍ଧ ସ୍ୱରୂପ ; ଦୁଗ୍ଧ ଯେପରି ଜଳ ସଙ୍ଗରେ ସହଜରେ ମିଶିଯାଏ, ମାନବଜୀବନର ପ୍ରଥମାବସ୍ଥା ସେହିପରି କ୍ଷଣକେ ସଂସାରର ପାପପ୍ରଲୋଭନ ସଙ୍ଗରେ ମିଶିଯାଏ । ମାତ୍ର କଠୋର

ସାଧନା ଓ ତପସ୍ୟାବଳରେ ଯେତେବେଳେ ମାନବ ତାହାର ଚରିତ୍ର ଗଢ଼ିପାରେ, ସେତେବେଳେ ତାହାର ସେହି ସଚ୍ଚରିତ୍ରତାମୟ ଜୀବନ-ମନ୍ଥିତ ଦୁଗ୍ଧରୁ ଜାତ ହୁଏ ନବନୀତ । ନବନୀତ ଯେପରି ଜଳରେ ଭାସୁଥାଏ, ମାତ୍ର ଜଳୀଭୂତ ହୋଇ ପାରେ ନାହିଁ, ଚରିତ୍ର-ମଣ୍ଡିତ ମାନବଜୀବନ ସେହିପରି ସାଂସାରିକ ସମସ୍ତ ଦୁଷ୍ପ୍ରବୃତ୍ତି ମଧ୍ୟରେ ଥିଲେହେଁ ସେମାନଙ୍କ ପ୍ରଭାବରେ କେବେହେଁ ପ୍ରଭାବିତ ହୁଏ ନାହିଁ । ଏପରି ଜୀବନହିଁ ପ୍ରକୃତରେ ଆଦର୍ଶ ଜୀବନ ଏବଂ ତାହାହିଁ ଚରିତ୍ର-ପାଠର ଚରମସୀମା ।

---

( ପ୍ରାଚୀନପ୍ରସ୍ତ 'ସତ୍ୟବାଦୀ' ପତ୍ରିକାରୁ ଗୃହୀତ )

# ଦାସେ ଆପଣେ

## ୭ ପଣ୍ଡିତ ଲିଙ୍ଗରାଜ ମିଶ୍ର

ମୋର ବେଶ୍ ମନେଅଛି, ଦାସେ ଆପଣଙ୍କୁ ପ୍ରଥମେ ଦେଖିଲି, ୧୯୦୩ କିମ୍ବା ୧୯୦୪ ମସିହାରେ ଆମ ଗାଁଠାରେ ହୋଇଥିବା ଗ୍ରାମସମ୍ମିଳନୀରେ । ସେତେବେଳକୁ ମୋର ବୟସ ୯ କିମ୍ବା ୧୦ ବର୍ଷ ହେବ । ଭୁବନେଶ୍ୱର ମିଃ ଇଃ ସ୍କୁଲରେ ପଢୁଥାଏଁ । ପୁରୀ ଜିଲାରେ ସେପରି ସମ୍ମିଳନୀ ବୋଧହୁଏ ସେହି ପ୍ରଥମ । ଦାସେ ଆପଣେ, ବ୍ରଜସୁନ୍ଦର ବାବୁ, ରାମଚନ୍ଦ୍ର ଦାସ ମୋକ୍ତାର, ପଣ୍ଡିତ ଗୋପାଳ ହୋତା ପ୍ରଭୃତି ବାହାର ଅତିଥି ଭାବରେ ଏଥିରେ ଯୋଗଦେଇ ମୁଖ୍ୟଭାଗ ନେଇଥିଲେ । ଆମେ ପିଲାମାନେ ସଭାମଣ୍ଡପ ସଜାସଜି ଆଦିରେ ଉତ୍ସାହର ସହିତ କାମ କରିଥିଲୁଁ, ତାହା ଏବେ ମଧ୍ୟ ମନେପଡ଼ୁଛି । ସେ ସମ୍ମିଳନୀରେ ଦାସେ ଆପଣଙ୍କର ବକ୍ତୃତା ସମସ୍ତଙ୍କଠାରୁ ଭଲ ହୋଇଥିଲା ବୋଲି ଆମେ ପିଲାମାନେ ମଧ୍ୟ ଅନୁଭବ କରିପାରିଥିଲୁଁ । ତାଙ୍କର ବେଳେ ବେଳେ ଥଟ୍ଟାଳିଆ, ବେଳେ ବେଳେ ଆବେଗପୂର୍ଣ୍ଣ ଭାବପ୍ରବଣ ଭାଷା, ସବୁବେଳେ ସବୁ ବୟସର ଲୋକଙ୍କୁ ଭଲ ଲାଗେ ।

ତା ପରେ ୧୯୦୮ ମସିହାରେ ପୁରୀଜିଲାସ୍କୁଲରେ ପଢ଼ିଲି ବେଳେ ତାଙ୍କ ସାଙ୍ଗେ ବେଳେ ବେଳେ ସଂସର୍ଗରେ ଆସିଲି । ସେ ସେତେବେଳକୁ ପୁରୀରେ ଓକିଲାତି ଆରମ୍ଭ କରିଥାନ୍ତି । ସବୁ ଦିନ ଆମ ଜିଲାସ୍କୁଲ ବାଟେ ଧଳା ପେଣ୍ଟ ଓ କଳା ଚପ୍‌କନ୍ ପିନ୍ଧି କଚେରୀକୁ ଯାଆସ କରନ୍ତି । ବେଳେ ବେଳେ ସ୍କୁଲ ଭିତରକୁ ଆସି

ମଧ୍ୟ ମହାମହୋପାଧ୍ୟାୟ ପଣ୍ଡିତ ସଦାଶିବ କାବ୍ୟକଣ୍ଠଙ୍କ ସହିତ କଥାବାର୍ତ୍ତା ହୁଅନ୍ତି । ସେତେବେଳେ ଦାସେ ଆପଣଙ୍କ ପ୍ରେରଣାରେ ଆମେ ପୁରୀଜିଲ୍ଲାସ୍କୁଲର ପଞ୍ଚାଏ ଛାତ୍ର ଜଗନ୍ନାଥବଲ୍ଲଭ ବଗିଚା ପଛପଟେ ଥିବା ଚୂଡ଼ଙ୍ଗ ସାହିର ଗୋଟିଏ ଭଙ୍ଗା ଜାଗା ଘରେ କେତେ ଦିନ କୁସ୍ତିକସରତ ଓ ଲୁଠି, ଖଣ୍ଡା, ବନାଟି-ଖେଳ ଆଦି ନିୟମିତ ଭାବରେ ଅଭ୍ୟାସ କରିଥିଲୁଁ ।

ପୁରୀ ଜିଲ୍ଲାସ୍କୁଲ ଛାତ୍ର ଜୀବନର ଗୋଟିଏ ଘଟଣା ମନେ ପଡ଼ୁଛି । ଗ୍ରୀଷ୍ମଛୁଟି ଭିତରେ ଦାସେ ଆପଣେ ଆମ ଗାଁଠାରେ ହରି ଭାଇନାଙ୍କ ଦାଣ୍ଡପିଣ୍ଡାରେ ହରି ଭାଇନା, ନୀଳକଣ୍ଠବାବୁ ପ୍ରଭୃତିଙ୍କ ସହିତ ବସି କଥାବାର୍ତ୍ତା ହେଉଥିଲେ । ଆମେ ପୁରୀଜିଲ୍ଲାସ୍କୁଲର ତିନି ଜଣ ଛାତ୍ର ସେ ବାଟେ ଯାଇ ନମସ୍କାର କଲୁଁ । ଦାସେ ଆପଣେ ହଠାତ୍ କହିଉଠିଲେ, "ଦେଖିଲ ଏ ପିଲାଙ୍କୁ, କିପରି Sun-burnt ନହେଲେ ମୁରୁକୁଟିଆ ଚେହେରା ଦେଖାଯାଉଛି । ଚେହେରାରୁ ଜଣାପଡ଼ୁଛି, ମନରେ କୌଣସି କାମ ପ୍ରତି ଗୋଟିଏ ଦମ୍ଭ-ଉତ୍ସାହ ନାହିଁ ।" ସେତେବେଳେ ତାଙ୍କର ଏ କଥା କାହିଁକି ମୋତେ ଭଲ ଲାଗିଲାନାହିଁ; ଦାସେ ଆପଣଙ୍କ ପ୍ରତି ମନରେ ଟିକିଏ ବିରକ୍ତ ଜାତ ହୋଇଥିଲା ।

ପୁରୀଜିଲ୍ଲାସ୍କୁଲରେ ସବୁ ବର୍ଷ ଶିବରାତ୍ରି ମେଳାଦିନ ଆମ ସ୍କୁଲ ତରଫରୁ ଲୋକନାଥଙ୍କ ବାଲିରେ ତମ୍ବୁ ପଡ଼ି ମୌଜ ମଜଲିସ, ଥିଏଟର ଆଦି ହୁଏ । ଆମେ ପୂର୍ବ ବର୍ଷମାନଙ୍କ ପରି ଉତ୍ସାହରେ ଆମ ପ୍ରଥମ ଶ୍ରେଣୀ-ବର୍ଷ ଶିବରାତ୍ରି ଉତ୍ସବର ଆୟୋଜନ କରୁଥାଉଁ । ସେହି ସମୟରେ "ନୀଳାଚଳ ସଂମାଦ୍ଭର" ବୋଲି ଗୋଟିଏ ଦ୍ରେଙ୍କିଆ ମାପ୍ତାହିକ ଓଡ଼ିଆ କାଗଜ ଶ୍ରୀ ବୈଦ୍ୟନାଥ ସିଂହଙ୍କ ସମ୍ପାଦକତ୍ୱରେ

ବାହାରୁଥିଲା । ସେତେବେଳେ ଆମ ଉପର ଶ୍ରେଣୀର ଜଣେ ଘୁଅବନ୍ଧୁ ଆମମାନଙ୍କର ଏ ଉଦ୍ୟମ ଉତ୍ସାହକୁ ବ୍ୟଙ୍ଗବିଦ୍ରୂପ ଓ କଡ଼ା ସମାଲୋଚନା କରି ଗୋଟିଏ ଲେଖା "ନୀଳାଚଳ ସମାଚାର"ରେ ପ୍ରକାଶ କରିଥିଲେ । ମୋର ମନେଅଛି, ଆମେ ସେତେବେଳେ ଏହି ଲେଖାର ପ୍ରତିଶୋଧ ନେଇ ଜାଗର ଦିନ ଆମର ଅଭିନୀତ ହେଉଥିବା ନାଟକଶେଷକୁ ଗୋଟିଏ ପ୍ରହସନ ଦେଖାଇଥିଲୁ । ସେଥିରେ ସମ୍ପାଦକ ଓ ସମ୍ବାଦଦାତା ଉଭୟଙ୍କୁ ଖୁବ୍ ବ୍ୟଙ୍ଗବିଦ୍ରୂପ କରି ସମସ୍ତଙ୍କୁ ହସାଇଥିଲୁ । ସେତେବେଳେ ପ୍ରଥମେ ଆମ୍ଭ କେତେ ଜଣଙ୍କ ମନରେ ସନ୍ଦେହ ହୋଇଥିଲା ଯେ, ସେ ଲେଖାର ପ୍ରେରଣା ଆମର ଅଦ୍ୟାପି ଜୀବିତ ବନ୍ଧୁ ହୁଏ ତ ଦାସେ ଆପଣଙ୍କଠାରୁ ପାଇଥିଲେ ମାତ୍ର ପରେ ବୁଝିଥିଲି, ତାହା ନୁହେ ।

କଟକଠାରେ ରେଭେନ୍ସା କଲେଜ ଓଲ୍ଡ ବ୍ଲକ ହଷ୍ଟେଲର ଗୋଟିଏ ଘରେ ଥରେ ଦାସେଆପଣଙ୍କ ଉପରେ କେତେଜଣ ଉପର କ୍ଲାସର ବୟସ୍କ ବନ୍ଧୁ କପଟ ଗାଳି ଓ ଅଭିଯୋଗବର୍ଷଣ କରିଥିଲେ, ତାହା ମୋର ମନେଅଛି । ଆମେ ଫାଷ୍ଟଇୟର କ୍ଲାସରେ ଭର୍ତ୍ତିହେବା ପରେ, ବୋର୍ଡ଼ିଂରେ ଦେଖିଲୁଁ ଯେ, ବ୍ରାହ୍ମଣ-କରଣ ବିରୋଧ ଭାବ ପ୍ରକାଶରେ ଏବଂ ବୁଢ଼ ବୁଢ଼ ପ୍ରସରୁଛି । ସେଥିପାଇଁ ମୁଁ ଓ ମୋର ସ୍ୱର୍ଗୀୟ ବନ୍ଧୁ ଡାକ୍ତର ବାଳକୃଷ୍ଣ ମିଶ୍ର ଦୁହେଁ ଯାଇ ଥରେ ଦାସେ-ଆପଣଙ୍କୁ ବୋର୍ଡ଼ିଂକୁ ଡାକିଆଣିଲୁ । ଆମ ଲାଗି ଦାସେଆପଣେ ସେଦିନ ଅନେକ ଅହେତୁକ ଅପମାନ ଓ ପରାଭବ ପାଇଲେ । ମନରେ କିନ୍ତୁ ସନ୍ତୋଷ ଯେ, ଦାସେ ଆପଣଙ୍କର ସେ ରାତିର କାର୍ଯ୍ୟ ଫଳରେ ବୋର୍ଡ଼ିଂରୁ ସଂକୀର୍ଣ୍ଣ ଜାତିଗତ ବିରୋଧଭାବ ଅନେକ ପରିମାଣରେ କମିଯାଇଥିଲା ।

ଗ୍ରାଜୁଏଟ ଜୀବନରେ କଲିକତାରେ ଶେଷ ପରୀକ୍ଷାରେ ପାସ କରିବା ପର୍ଯ୍ୟନ୍ତ ମୁଁ ସବୁବେଳେ ଘନିଷ୍ଠଭାବରେ ସତ୍ୟବାଦୀର କର୍ମୀଗୋଷ୍ଠୀଙ୍କ ସହିତ ସମ୍ପୃକ୍ତ ରହି ଆସିଥିଲି। ପ୍ରତି ଗ୍ରୀଷ୍ମ ଓ ପୂଜାଛୁଟିରେ ସ୍କୁଲରେ ପାଠ ପଢ଼ାଏଁ ଏବଂ ଅଧିକାଂଶ ସମୟ ଦାସେ ଆପଣେ ଓ ଅନ୍ୟ କର୍ମୀମାନଙ୍କ ସଙ୍ଗରେ ସେଠାରେ କଟାଏଁ। କଲିକତାରେ ଏମ୍. ଏ. ଏବଂ ଲ ପଢ଼ିବା ପାଇଁ ତିନି ବର୍ଷ ରହିଥିବା ବେଳେ ଦାସେଆପଣେ ଓଡ଼ିଶାର ମ୍ୟୁନିସିପାଲିଟିମାନଙ୍କ ତରଫରୁ ପ୍ରତିନିଧି ହୋଇ ସେତେବେଳେ ବିହାର-ଓଡ଼ିଶା ବ୍ୟବସ୍ଥାସଭାକୁ ଗଲେ। ଏ ନିର୍ବାଚନ ସନ୍ଧାନ୍ତରେ ମୁଁ ଯାଜପୁର ଯାଇଥିଲି। ସେଠାରେ ଦାସେଆପଣେ ସବୁଠିକ ଭୋଟ ପାଇଲେ, ମାତ୍ର ମୁଁ ସେହି ରାତିରେ ଫେରୁଥିବାରୁ ଆଜ ତାରଦ୍ୱାରା ନିର୍ବାଚନ ଫଳ କଟକକୁ ଜଣାଇଲି ନାହିଁ। ସେଥିପାଇଁ ମିଷ୍ଟର ଦାସଙ୍କଠାରୁ କପର ପଠାଏ ଆଚ୍ଛା ଶୋଧନ ପାଇଥିଲି, ତାହା ମନେପଡ଼ୁଛି।

ସେତେବେଳେ ଦାସେଆପଣେ ବ୍ୟବସ୍ଥା ସଭା ପାଇଁ ପାଟନା ଯିବା ବାଟରେ କଲିକତାରେ ଦିନେ ଦୁଇ ଦିନ ଆମମାନଙ୍କ ସାଙ୍ଗରେ ନଅ-ପଞ୍ଚାନନ ଘୋଷ ଲେନ୍‌ରେ ରହୁଥିଲେ। ତାଙ୍କୁ ବ୍ୟବସ୍ଥା ସଭାରେ ଲାଗିବା ଭଳି ତଥ୍ୟ, କାଗଜପତ୍ର ଇମ୍ପିରିଆଲ ଲାଇବ୍ରେରୀ ବା ଇଣ୍ଡିଆନ ସାଇନ୍‌ସ ଆସୋସିଏସନ୍ ପ୍ରଭୃତିରୁ ସଂଗ୍ରହ କରିବାରେ ସେ ଆମ ଦୁଇ ତିନି ଜଣଙ୍କୁ ବ୍ୟବହାର କରୁଥିଲେ। ଆମେମାନେ ଆଗ୍ରହ ସହକାରେ ଏହି କାର୍ଯ୍ୟ କରିବା-ଦ୍ୱାରା ନିଜେ ବହୁତ କଥା ଜାଣିବାର ସୁବିଧା ପାଇ ପାରୁଥିଲୁଁ। ଚିଲିକାରେ ଲୁଣମରା ବ୍ୟବସାୟ ପୁନରୁଜ୍ଜୀବିତ କରିବା ପାଇଁ ଦାସେଆପଣେ ବହୁତ ତଥ୍ୟ ସଂଗ୍ରହ କରି ବିହାର-ଓଡ଼ିଶା ବ୍ୟବସ୍ଥାସଭାରେ ଲଢ଼ିଥିଲେ।

ମୁଁ ଗୃହଶିକ୍ଷକ ସାଙ୍ଗକରି ଅବସ୍ଥାଚକ୍ରରେ ପଡ଼ି ଦାସେ-ଆପଣଙ୍କ ପରାମର୍ଶରେ କିଛି ଦିନ ସରକାରୀ ଚାକିରୀ ପୂର୍ବଠାରେ ଓ ମୁଜାଫରପୁରଠାରେ କରିଥିଲି । ସତ୍ୟବାଦୀ ସ୍କୁଲ କଲେଜକୁ ଉନ୍ନୀତ ହେଲାବେଳକୁ ମୁଁ ଆସି ଯୋଗଦେବି ବୋଲି ଦାସେ-ଆପଣେ ନିଷ୍ପତ୍ତି କରିଥାନ୍ତି । ଏହି ସମୟରେ ୧୯୨୦ ମସିହାରେ ମହାତ୍ମାଜୀଙ୍କ ଅସହଯୋଗ ଆନ୍ଦୋଳନ ଦେଶରେ ଆରମ୍ଭ ହେଲା । ସେତେବେଳେ ମୋର ମନେଅଛି, ଦାସେଆପଣେ ସତ୍ୟବାଦୀ-ଠାରେ ତାଙ୍କ ଘରେ ମୋତେ କହିଲେ, ଲିଙ୍ଗରାଜ, ଏଥର ଏକାକି ତପ୍ପର ହୁଅ ।' ତାହାର ଦୁଇ ତିନି ମାସ ପରେ ଯେଉଁ ଦିନ ଭଦ୍ରକଠାରେ ଦାସେଆପଣଙ୍କର ବକ୍ତୃତା ହୋଇ ଦଣ୍ଡବିଧାନ ହେଲା, ସେଦିନ ମୁଁ ସରକାରୀ ଚାକିରୀରୁ ଇସ୍ତଫା ଦେଇଦେଲି ।

ସତ୍ୟବାଦୀ ସ୍କୁଲରେ ଯୋଗ ଦେବାର କିଛି ଦିନ ପରେ ସତ୍ୟବାଦୀ ଜାତୀୟ ବିଦ୍ୟାଳୟ ପାଇଁ ଅର୍ଥ ସଂଗ୍ରହ କରିବା ଉଦ୍ଦେଶ୍ୟରେ ମୁଁ ଦାସେଆପଣଙ୍କ ସହିତ ବମ୍ବେ ଯାଇ ତିନି ସପ୍ତାହ କାଳ ସେଠାରେ ରହିଥିଲି । ପୂଜ୍ୟ ଠକ୍କରବାପାଙ୍କର ପରାମର୍ଶ ଅନୁସାରେ ଆମ୍ଭେମାନେ ଯାଇଥିଲୁଁ ଓ ତାଙ୍କରି ପ୍ରଭାବ ଏବଂ ସହଯୋଗରେ କିଛି ଅର୍ଥ ସଂଗ୍ରହ କରିପାରିଥିଲୁଁ । ଏ କେତେ ଦିନ ମୋ ଜୀବନରେ ଗୋଟିଏ ଶିକ୍ଷାର ସମୟ । ପ୍ରତି ଦିନର କାର୍ଯ୍ୟ ପୂର୍ବ ରାତିରୁ ସ୍ଥିର କରି ଉପଯୁକ୍ତ ନୋଟ, ଡାଏରୀ ଓ ହିସାବକିତାବ ରଖି କିପରି ଶୃଙ୍ଖଳିତ ଭାବରେ ସାଧାରଣ କାର୍ଯ୍ୟ କରାଯାଏ, ମୁଁ ଏ କେତେ ଦିନ ଠକ୍କରବାପାଙ୍କଠାରୁ କିଛି-ପରିମାଣରେ ତାହା ଶିଖି ପାରିଥିଲି ।

ତାହା ପରେ ପ୍ରାୟ ଦୁଇ ବର୍ଷ ଦାସେଆପଣେ ଯାଇ ହଜାରିବାଗ ଜେଲରେ ରହିଲେ । ସେତେବେଳେ ସ୍ୱର୍ଗୀୟ କୃପାସିନ୍ଧୁ ମିଶ୍ର, ହରି ରାଉନା, ନନ୍ଦ ବାବୁ, ମୁଁ ଓ ରାଧାନାଥବାବୁ ତଥା ଅନ୍ୟ କର୍ମୀମାନେ ସାମ୍ରାଜ୍ୟବାଦ ସମାଜ ଏବଂ ସତ୍ୟବାଦୀ ଜାତୀୟ ବିଦ୍ୟାଳୟ ପରିଚାଳନା କରୁଥିଲୁଁ । ଦାସେଆପଣେ ଜେଲରୁ ଫେରିବା ବେଳକୁ କେନ୍ଦ୍ରବ୍ୟବସ୍ଥାପକ ଏବଂ ବିହାର-ଓଡ଼ିଶା ବ୍ୟବସ୍ଥାପକ ନିର୍ବାଚନ ହେଲା । ସେତେବେଳେ ଦାସେ-ଆପଣେ ମୋତେ ପୁରୀ ସଦର ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀ-କରାଇଲେ । ସେତେବେଳକୁ ମୋତେ କେହି ଜାଣନ୍ତି ନାହିଁ । କେବଳ ତାଙ୍କରି କଥାରେ ଲୋକେ ମୋତେ ଅଧିକ ଭୋଟ ଦେଇ ପଠାଇଲେ ।

୧୯୨୭ ମସିହାରେ ଦାସେଆପଣେ ମୋତେ ଲାଲାଜୀଙ୍କ ପ୍ରତିଷ୍ଠିତ ଲୋକସେବକ-ମଣ୍ଡଳରେ ଆଜୀବନ ସଭ୍ୟ ରୂପେ ଗ୍ରହଣ କରାଇଲେ । ମୋର ମନେଅଛି, ମୋର ପିତୃବିୟୋଗର ଠିକ୍ ପରଦିନ ସନ୍ଧ୍ୟାରେ ମୁଁ ଦାସଆପଣେଙ୍କଠାରୁ ଏ ସମ୍ବାଦ ପାଇଲି । ଦାସେଆପଣେ ତାହା ପୂର୍ବରୁ ବର୍ଷେ ଦେଢ଼ ବର୍ଷ ଆଗରୁ ସେହି ଲୋକସେବକ ମଣ୍ଡଳ ( Seivuts of the people Society )ରେ ଲାଲାଜୀଙ୍କର ଆହ୍ୱାନ କ୍ରମେ ଯୋଗ ଦେଇଥାନ୍ତି । ୧୯୨୮ ମସିହା ଆରମ୍ଭରେ ଲାହୋରଠାରେ ଦାସେଆପଣେ ଆମ ମେମ୍ବରମାନଙ୍କ ବାର୍ଷିକ ସାଧାରଣ ଅଧିବେଶନରେ ସୋସାଇଟିର ଭାଇସ୍ ପ୍ରେସିଡେଣ୍ଟ ରୂପେ ନିର୍ବାଚିତ ହେଲେ ।

ମାତ୍ର କାଳ ଆଜ ବେଶି ଦିନ ସହିଲା ନାହିଁ । ଲାହୋରରୁ ଆମେ ଦୁଇ ଜଣ ସାଙ୍ଗ ହୋଇ ଫେରିଲୁ ବେଳେ ଦାସେଆପଣେ

କାଟରେ ଅସୁସ୍ଥ ହୋଇପଡ଼ିଲେ । ହାବଡ଼ା ଷ୍ଟେସନଠାରେ ତାହାଙ୍କୁ ଆସ୍ରାମ ଚଉକରେ ବସାଇ ଗାଡ଼ିକୁ ଆଣିବାକୁ ହୋଇଥିଲ । କିନ୍ତୁ ଦିନ ପରେ ସେ ଟିକିଏ ସୁସ୍ଥହେଲେ ସତ; ମାତ୍ର ସେ ଅସୁସ୍ଥତା ପୁଣି ଲେଉଟିଲ ଏବଂ ଜ୍ୱର ଓ ପ୍ଲୁରେସିରେ ଆକ୍ରାନ୍ତ ହୋଇ ସେ ଦୁଇ ତିନ ଦିନ ମାତ୍ର ଶଯ୍ୟାଗତ ରହି ସମସ୍ତଙ୍କର ମାୟା ତୁଟାଇ ଗ୍ୟଲଗଲେ । ଦାସେଆପଣଙ୍କର ଅଧିକାଂଶ ସହକର୍ମୀ ତାଙ୍କ ମୃତ୍ୟୁ ବେଳକୁ ଶଯ୍ୟାପାଖରେ ବେଢ଼ି ରହିଥିଲେ । ମୋର ପରମସୌଭାଗ୍ୟ ଯେ, ମୃତ୍ୟୁର ଅଢ଼େଇ ଘଣ୍ଟା ପୂର୍ବରୁ ଦାସେଆପଣେ ପୂର୍ଣ୍ଣ ସଚେତନ ଥାଇ ନିଜର ଶେଷ ଉଇଲ ଡାକିଥିଲେ ଏବଂ ତାହା ମୁହିଁ ଲେଖିଥିଲି ।

ଦାସେଆପଣଙ୍କର ସ୍ନେହ, ସୌହାର୍ଦ୍ଦ୍ୟ, ସରସତା ଏବଂ ସରଳତାର ଗୋଟିଏ ବିଶେଷ ଆକର୍ଷଣୀ ଶକ୍ତି ଥିଲ; ତାହା ମୁଁ ଜୀବନରେ ପ୍ରତି ମୁହୂର୍ତ୍ତରେ ଅନୁଭବ କରିଛି ଏବଂ ଏବେ ବି ବିପୁଳ ପରିମାଣରେ କରୁଛି । ଦାସେଆପଣଙ୍କର ସଦ୍‌ଗୁଣାବଳୀ ଓଡ଼ିଶାର ଯୁବଶକ୍ତିକୁ ଉଦ୍‌ବୁଦ୍ଧ କରୁ—ଏହାହିଁ ଆଜି ଭଗବାନଙ୍କ ନିକଟରେ ପ୍ରାର୍ଥନା ।



( ଗୋପବନ୍ଧୁ ସଂଖ୍ୟା "ସମାଜ"ରୁ ଗୃହୀତ )

# ଧଉଲି ଅନୁଶାସନ

## ଡକ୍‌ଟର ହରେକୃଷ୍ଣ ମହତାବ

ଅଶୋକଙ୍କ କଳିଙ୍ଗ ବିଜୟ କାଳ ପୃଥିବୀ ଇତିହାସରେ ଏକ ପ୍ରସିଦ୍ଧ ଘଟଣା ହୋଇ ରହିଥିବ । ପରାଜିତର ଅକାତର ପ୍ରାଣଦାନରେ ବିଜେତାର ହୃଦୟପରିବର୍ତ୍ତନ ଓ ତା'ର ମାନସିକ ସୁପ୍ରବୃତ୍ତିର ଜାଗରଣ ଅଶୋକଙ୍କଠାରେ ପ୍ରତିପନ୍ନ ହୋଇ, ଯେତେ କାଳ ମନୁଷ୍ୟ ମନୁଷ୍ୟ ମଧ୍ୟରେ ହିଂସା ଦ୍ୱେଷ ଚାଲିଥିବ, ସେତେକାଳ ଜଗତ୍ ସମକ୍ଷରେ ଏକ ମହାନ୍ ଆଦର୍ଶ ହୋଇ ରହି ହିଂସାର ବିଜୟକୁ ତିରସ୍କାର କରୁଥିବ ।

ଅଶୋକଙ୍କ ଯେଉଁ ସବୁ ଅନୁଶାସନ ଧଉଳି ଓ ଜଉଗଡ଼-ଠାରେ ଖୋଦିତ ହୋଇଅଛି, ସେସବୁର ଐତିହାସିକ ମୂଲ୍ୟ ଅତି ଅଧିକ । ସେଥିରୁ କେବଳ ରାଜାଙ୍କର ନୁହେଁ; ସେ ସମୟରେ ଦେଶ ତଥା ଶାସନର ବ୍ୟବସ୍ଥା ସ୍ପଷ୍ଟଭାବରେ ପ୍ରକଟିତ ହେଉଛି । ତେଣୁ ସେ ସବୁର ଅବିକଳ ପୂର୍ଣ୍ଣ ଅନୁବାଦ ତଳେ ଦିଆହେଉଛି ।

**୧ମ ଅନୁଶାସନ**—ଦେବତାଙ୍କ ପ୍ରିୟ ପ୍ରିୟଦର୍ଶୀ ରାଜାଙ୍କ ଆଦେଶରେ ଏହି ଧର୍ମ ଲିପି ଖୋଦିତ ହୋଇଅଛି—

ରାଜ୍ୟରେ ଯଜ୍ଞପାଇଁ ପଶୁବଧ ହେବ ନାହିଁ ବା କୌଣସି ସମାଜ (ଉତ୍ସବ) ଅନୁଷ୍ଠିତ ହେବ ନାହିଁ । କାରଣ ସମାଜରେ ବହୁ ଦୋଷଥିବାର ଦେବତାଙ୍କ ପ୍ରିୟ ପ୍ରିୟଦର୍ଶୀ ରାଜା ଜାଣୁଛନ୍ତି, ଅବଶ୍ୟ ଏପରି ଅନେକ 'ସମାଜ' ଅଛି, ଯାହା ଦେବତାଙ୍କ ପ୍ରିୟ ପ୍ରିୟଦର୍ଶୀ ରାଜାଙ୍କ ବିଚାରରେ ଶୁଦ୍ଧ, ପୂର୍ବେ ଦେବତାଙ୍କ ପ୍ରିୟ ପ୍ରିୟଦର୍ଶୀ ରାଜାଙ୍କ ରନ୍ଧନଶାଳାରେ ବହୁ ସହସ୍ର ସୂପ ପାଇଁ ବଧ କରା

ହେଉଥିଲେ । କିନ୍ତୁ ଏ ଧର୍ମଲିପି ଲେଖାହେବା ସମୟରେ ସୂପ ପାଇଁ ତିନୋଟି ପ୍ରାଣୀମାନ ବଧ କରା ହେଉଅଛନ୍ତି—ଦୁଇଟି ମୟୂର ଓ ଗୋଟିଏ ମୃଗ । ମୃଗ ବଧ ମଧ୍ୟ ଦୈନିକ ହେଉ ନାହିଁ । ଭବିଷ୍ୟତରେ ଏ ତିନି ଜୀବ ବଧ ମଧ୍ୟ କରାହେବ ନାହିଁ ।

୨ୟ ଅନୁଶାସନ—ଦେବତାଙ୍କ ପ୍ରିୟ ପ୍ରିୟଦର୍ଶୀଙ୍କ ରାଜ୍ୟରେ ସର୍ବତ୍ର ତଥା ତାମ୍ରପର୍ଣ୍ଣୀ ପର୍ଯ୍ୟନ୍ତ ଚୋଳ, ପାଣ୍ଡ୍ୟ, ସତ୍ୟପୁତ୍ର, କେରଳ ପୁତ୍ର ଆନ୍ଧ୍ର ସୀମାନ୍ତ ରାଜାମାନଙ୍କ ରାଜ୍ୟରେ ଓ ଯବନ ରାଜା ଏଣ୍ଟିଓକସ୍ ଓ ତାଙ୍କର ପ୍ରତିବେଶୀ ରାଜାମାନଙ୍କ ରାଜ୍ୟରେ, ଦେବତାଙ୍କ ପ୍ରିୟ ପ୍ରିୟଦର୍ଶୀ ଦୁଇ ପ୍ରକାର ଚିକିତ୍ସାର ବ୍ୟବସ୍ଥା କରିଛନ୍ତି—ମନୁଷ୍ୟମାନଙ୍କ ଚିକିତ୍ସା ଓ ପଶୁମାନଙ୍କ ଚିକିତ୍ସା । ମନୁଷ୍ୟ ଓ ପଶୁମାନଙ୍କ ଚିକିତ୍ସା ପାଇଁ ଔଷଧ ସର୍ବତ୍ର ପଠାହୋଇ ଗୃଷ କରାହେଉଛି । ଯେଉଁଠାରେ ଫଳ ଓ ମୂଳର ଅଭାବ, ସେଠାରେ ତାହା ଉତ୍ପନ୍ନ କରାହୋଇଛି । ରାଜମାର୍ଗରେ କୂପମାନ ଖୋଳିତ ହୋଇଛି ଓ ମନୁଷ୍ୟ ପଶୁମାନଙ୍କୁ ଛାୟାଦାନ କରିବା ପାଇଁ ବୃକ୍ଷମାନ ରୋପିତ ହୋଇଛି ।

୩ୟ ଅନୁଶାସନ—ଦେବତାଙ୍କ ପ୍ରିୟ ପ୍ରିୟଦର୍ଶୀ କହୁଛନ୍ତି—ମୋ ରାଜ୍ୟରେ 'ଯୁକ୍ତ' (ଅଧସ୍ତନ ରାଜ କର୍ମଚାରୀ) 'ରାଜୁକ' (ଲକ୍ଷ ଲକ୍ଷ ଲୋକଙ୍କ ଶାସକ, ଗଭର୍ଣ୍ଣର) ଓ ପ୍ରାଦେଶିକ (ରାଜସ୍ୱ ସଂଗ୍ରହ ଓ ପୋଲିସ ବିଭାଗର ଭାରପ୍ରାପ୍ତ କର୍ମଚାରୀ ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ)ମାନେ ପ୍ରତି ପାଞ୍ଚବର୍ଷରେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ପରିବର୍ତ୍ତିତ ହେବେ । ସେମାନେ ନିଜ କାର୍ଯ୍ୟ ବ୍ୟତୀତ ନିମ୍ନଲିଖିତ ଧର୍ମ ପ୍ରଚାର ମଧ୍ୟ କରିବେ—ପିତାମାତାଙ୍କ ବଚନ ପାଳନ କରିବା ମହତ୍; ବନ୍ଧୁ ବାନ୍ଧବ, ବ୍ରାହ୍ମଣ ଶ୍ରମଣମାନଙ୍କୁ

ଦାନ କରିବା ମହତ୍; ଜୀବ-ହିଂସାରୁ ନିବୃତ୍ତ ହେବା ମହତ୍ ଓ ଅଳ୍ପ ବ୍ୟୟ ଓ ଅଳ୍ପ ପରିଗ୍ରହ ମହତ୍ ।

ପରିଷଦ୍ (ମନ୍ତ୍ରୀ) ଏହି ଧର୍ମଲିପି ଓ ତାର ମାନଙ୍କୁ ଗଣନା କାଯାଗ । (ଏକାଉଣ୍ଟସ୍ ଡିପାର୍ଟମେଣ୍ଟର କର୍ମକର୍ତ୍ତାମାନଙ୍କୁ ଶିକ୍ଷା ଦେବେ ।

୪ର୍ଥ ଅନୁଶାସନ—ବହୁ ଶତାବ୍ଦୀ କାଳ ଅତୀତରେ ଯଜ୍ଞ ପାଇଁ ଜୀବହତ୍ୟା ଓ ଅନ୍ୟ 'କାରଣରୁ ମଧ୍ୟ ପ୍ରାଣୀହତ୍ୟା, ବନ୍ଧୁ ବାନ୍ଧବ, ବ୍ରାହ୍ମଣ ଶ୍ରମଣମାନଙ୍କ ପ୍ରତି ଦୁଷ୍ଟ ଆଚରଣ କରା-ହୋଇଛି, କିନ୍ତୁ ବର୍ତ୍ତମାନ ଦେବତାଙ୍କ ପ୍ରିୟ ପ୍ରିୟଦର୍ଶୀ ଧର୍ମ ଆଚରଣ କରି 'ବିମାନ' 'ହସ୍ତୀ' 'ଅଗ୍ନିଖଣ୍ଡ' ପ୍ରଭୃତି ଦେବତାଙ୍କ ଉତ୍ସବମାନ ପାଳନ କରିବା ଫଳରେ ସମର ଡିଣ୍ଡିମର ପ୍ରତିଧ୍ୱନି ଧର୍ମ ଡିଣ୍ଡିମର ପ୍ରତିଧ୍ୱନିରେ ପରିଣତ ହୋଇଅଛି । ଯଜ୍ଞ ପାଇଁ ପଶୁ ବଧରୁ ନିବୃତ୍ତି, ଅନ୍ୟଥା ଜୀବ ହତ୍ୟାରୁ ନିବୃତ୍ତି, ବନ୍ଧୁ ବାନ୍ଧବ ବ୍ରାହ୍ମଣମାନଙ୍କ ପ୍ରତି ସଦାଚରଣ ଓ ପିତା ମାତା ଗୁରୁ-ଜନଙ୍କ ବଚନ ପାଳନ, ଏସବୁ ବିଗତ ଶତ ଶତ ବର୍ଷରେ ସେପରି ହୋଇ ନ ଥିଲା, ଯେପରି ଦେବତାଙ୍କ ପ୍ରିୟ ପ୍ରିୟଦର୍ଶୀଙ୍କ ପ୍ରଚାର ହୋଇଛି । ଏହିରୂପେ ଅନ୍ୟ ଅନେକ ଉପାୟରେ ଧର୍ମାଚରଣ ବୃଦ୍ଧି ଲାଭ କରିଅଛି ଓ ଦେବତାଙ୍କ ପ୍ରିୟ ପ୍ରିୟଦର୍ଶୀଙ୍କ ପୁତ୍ର, ପୌତ୍ର ଓ ପ୍ରପୌତ୍ରମାନେ ଏ ଧର୍ମାଚରଣକୁ ସବର୍ତ୍ତ କଳ୍ପ (ପ୍ରଳୟ) ପର୍ଯ୍ୟନ୍ତ ବଢ଼ାଇବାକୁ ଚେଷ୍ଟା କରିବେ । ଧର୍ମ ଓ ଶୀଳରେ ଦୃଢ଼ ରହି ସେମାନେ ଧର୍ମାଚରଣ ଶିକ୍ଷା ଦେବେ । କାରଣ ଧର୍ମ ଶିକ୍ଷା ହିଁ ସର୍ବୋତ୍କୃଷ୍ଟ କାର୍ଯ୍ୟ । ଦୁଃଶୀଳ ଲୋକ ଧର୍ମାଚରଣ କରି ପାରେ ନାହିଁ । ଏହାକୁ ବୃଦ୍ଧି କରିବା ଓ ଏହାର ହ୍ରାସ ନ କରିବା ମହତ୍ । ଏହି ଉଦ୍ଦେଶ୍ୟରେ ଏହା ଲିପିବଦ୍ଧ କରାହୋଇଛି କି

ସେମାନେ ଏହାର ବୃଦ୍ଧିସାଧନ କରିବେ ଓ ଏହାର ହ୍ରାସ ଘଟିବାରେ ପ୍ରଶ୍ରୟ ଦେବେ ନାହିଁ । ଦ୍ୱାଦଶ ବର୍ଷର ଅଭିଷେକ ପରେ ଦେବତାଙ୍କ ପ୍ରିୟ ପ୍ରିୟଦର୍ଶୀ ଏହା ଲିପିବଦ୍ଧ କରାଇଲେ ।

**୫ମ ଅନୁଶାସନ**—ଦେବତାଙ୍କ ପ୍ରିୟ ପ୍ରିୟଦର୍ଶୀ କହୁଛନ୍ତି—ସତ୍‌କାର୍ଯ୍ୟ କଠିନ ବସ୍ତୁ । ଯେ ସତ୍‌କାର୍ଯ୍ୟ କରେ, ସେ ଏକ କଠିନ କାର୍ଯ୍ୟ କରେ, ବର୍ତ୍ତମାନ ମୋ ଦ୍ୱାରା ଅନେକ ସତ୍‌କାର୍ଯ୍ୟ ସାଧିତ ହୋଇଅଛି । ଯଦି ମୋର ପୁତ୍ର, ପୌତ୍ର ପ୍ରପୌତ୍ରମାନେ ସମ୍ବର୍ତ୍ତକଳ୍ପ ପର୍ଯ୍ୟନ୍ତ ତାଙ୍କର ଭବିଷ୍ୟତ ବଂଶଧରମାନେ ଏ ପଥ ଅନୁସରଣ କରନ୍ତି ତେବେ ସେମାନଙ୍କ ମଙ୍ଗଳ; କିନ୍ତୁ ଏ ବିଷୟରେ ଯେ ଅବହେଳା କରିବ, ତା'ର ଅମଙ୍ଗଳ ଘଟିବ, କାରଣ ତାକୁ ପାପ ଘୋଟିଯିବ ।

ପୂର୍ବ ଅତୀତରେ 'ଧର୍ମ ମହାମାତ୍ର' ବୋଲି—ରାଜ କର୍ମଚାରୀ ନ ଥିଲେ; କିନ୍ତୁ ମୋର ଅଭିଷେକରେ ୧୩ଶ ବର୍ଷରେ 'ଧର୍ମ ମହାମାତ୍ର' ମାନ ନିଯୁକ୍ତ କରିଛି । ପାଷାଣ୍ଡମାନଙ୍କ ମଧ୍ୟରେ ଧର୍ମ ସଂସ୍ଥାପନ ଓ ବୃଦ୍ଧି କରିବା ପାଇଁ 'ଧର୍ମଯୁକ୍ତ' (ଧର୍ମ ବିଭାଗର ଅଧସ୍ତନ କର୍ମଚାରୀ), ତଥା ମୋର ରାଜ୍ୟର ଅପରାନ୍ତବର୍ତ୍ତୀ ଯବନ, କାମ୍ବୋଜ, ଗାନ୍ଧାର, ରଷ୍ଟ୍ରିକ, ପିଟନିକ ପ୍ରଭୃତି ଜାତିମାନଙ୍କର ସୁଖ ଶାନ୍ତି ପାଇଁ ଧର୍ମ-ମହାମାତ୍ରମାନେ ନିଯୁକ୍ତ ହୋଇଛନ୍ତି । ଭୃତ୍ୟ ଓ ସ୍ୱାମୀ, ବ୍ରାହ୍ମଣ ଓ ଧନୀ, ଅନାଥ ଓ ବୃଦ୍ଧମାନଙ୍କ ମଧ୍ୟରେ କାର୍ଯ୍ୟ କରୁଥିବା ଧର୍ମ ବିଭାଗର ନିମ୍ନତନ କର୍ମଚାରୀମାନଙ୍କୁ ସାଂସାରିକ ଚିନ୍ତାରୁ ମୁକ୍ତ କରିବା ପାଇଁ ସେମାନେ ନିଯୁକ୍ତ । ଦଣ୍ଡାଦେଶପ୍ରାପ୍ତ ଲୋକମାନଙ୍କ ଉଦ୍ଦେଶ୍ୟ, ସନ୍ତାନ ସନ୍ତତି,

ପ୍ରରୋଚନା ଓ ବୃଦ୍ଧ ବୟସ ବିଚାର କରି ସେମାନଙ୍କ ପ୍ରତି ଦଣ୍ଡ ହୋଇଥିବା କାରା ବା ବଧ ଆଦେଶ ପରିବର୍ତ୍ତନ କରି, ଦଣ୍ଡ ଲାଘବ କରିବା ବା ମୁକ୍ତ ଦେବା ପାଇଁ ମଧ୍ୟ ସେମାନେ ନିଯୁକ୍ତ ହୋଇଛନ୍ତି ।

ଏଠାରେ ପାଟଳିପୁତ୍ରରେ ଓ ଅନ୍ୟ ସମସ୍ତ ପ୍ରଦେଶମାନଙ୍କ ନଗରରେ ମୋର ଭାଇ, ଭଉଣୀ, ତଥା ଅନ୍ୟ ବନ୍ଧୁ ବାନ୍ଧବମାନଙ୍କ ଅବରୋଧରେ ସର୍ବତ୍ର ସେମାନେ ନିଯୁକ୍ତ ହୋଇଛନ୍ତି । ମୋ ରାଜ୍ୟରେ ସର୍ବତ୍ର 'ଧର୍ମଯୁକ୍ତ'ମାନଙ୍କ ମଧ୍ୟରେ ଧର୍ମ ସ୍ଥାପନ ଓ ଭିକ୍ଷାଦାନ ପାଇଁ 'ଧର୍ମ ମହାମାତ୍ର'ମାନେ ନିଯୁକ୍ତ ହୋଇଛନ୍ତି ।

ଏ ଉଦ୍ଦେଶ୍ୟରେ ଏ ଧର୍ମାନୁଶାସନ ଲିପିବଦ୍ଧ କରାହୋଇଛି ଯେ, ଏହା ସ୍ଥାୟୀ ହେଉ ଓ ମୋର ପ୍ରଜାମାନେ ତଦନୁସାରେ କାର୍ଯ୍ୟ କରନ୍ତୁ । ସମ୍ପୂର୍ଣ୍ଣ ଉଦ୍ୟମ ନ କଲେ ଲୋକର ମଙ୍ଗଳ ସାଧନ କରିବା ଦୁଷ୍କର ।

---

( ଧଉଳି ଅନୁଶାସନର କିୟଦଂଶର ଅନୁବାଦ
'ଓଡ଼ିଶା ଇତିହାସ'ରୁ ସଂଗୃହୀତ )

# ଅଣୁଶକ୍ତିର ଶାନ୍ତିକାଳୀନ ପ୍ରୟୋଗ

## ଡକ୍ଟର ବ୍ରହ୍ମାନନ୍ଦ ମିଶ୍ର

ଆଣବିକ ଶକ୍ତିର ଆବିଷ୍କାର ଯୁଦ୍ଧ ସମୟରେ ହୋଇଥିବାରୁ ବୈଜ୍ଞାନିକମାନେ ଆଣବିକ ଶକ୍ତିକୁ ପ୍ରଥମେ ଧ୍ୱଂସକାରୀ ଅଣୁବୋମା ରୂପରେ ପ୍ରୟୋଗ କରିଥିଲେ । ଯୁଦ୍ଧ ପରେ ଏହି ବିଶାଳଶକ୍ତିକୁ କିପରି ମାନବ ସମାଜର କଲ୍ୟାଣ ଦିଗରେ ପ୍ରୟୋଗ କରାଯାଉଅଛି, ତାହା ଏହି ପ୍ରବନ୍ଧରେ ଆଲୋଚନା କରାଯିବ । ବିଶ୍ୱଧ୍ୱଂସ କରିବାରେ ଆଣବିକ ଶକ୍ତିର ଯେଉଁ ଅଖଣ୍ଡ ପ୍ରତାପ, ବିଶ୍ୱର ମଙ୍ଗଳ କରିବାରେ ମଧ୍ୟ ତାହାର ସେହିପରି ପ୍ରଭାବ । ସେଥିପାଇଁ ତାକୁ ପ୍ରୟୋଗ କରିପାରିଲେ ହେଲା ।

ଅଣୁର ଅଭ୍ୟନ୍ତରର ଗଠନ ଗୋଟିଏ କ୍ଷୁଦ୍ର ସୌରଜଗତର ଗଠନ ସହିତ ତୁଳନୀୟ । ସୌରଜଗତରେ ସୂର୍ଯ୍ୟଙ୍କୁ କେନ୍ଦ୍ରରେ ରଖି ପୃଥିବୀ ତା ଚାରିପାଖଯାକ ଏକ କକ୍ଷରେ ଘୂରୁଅଛି । ଅଣୁରେ ବ୍ୟୂହାଣୁକୁ କେନ୍ଦ୍ରରେ ରଖି ବିଯୁକ୍ତ ତଡ଼ିତାଣୁମାନ ବିଭିନ୍ନ କକ୍ଷରେ ବ୍ୟୂହାଣୁର ଚାରିପାଖରେ ଘୂରୁଛନ୍ତି । ବ୍ୟୂହାଣୁର ଚାରିପାଖରେ ଗୋଟିଏ ବ୍ୟୂହ ବା ପ୍ରାଚୀର ଅଛି । ଏହି ପ୍ରାଚୀର ମଧ୍ୟରେ ସୂକ୍ଷ୍ମାଣୁମାନ ରହି ଅଛନ୍ତି । ବ୍ୟୂହ ମଧ୍ୟସ୍ଥ ସୂକ୍ଷ୍ମାଣୁମାନଙ୍କ ସଂଖ୍ୟା ଉପରେ ଅଣୁର ନାମ ନିର୍ଭର କରେ; ଯଥା—ଯେଉଁ ବ୍ୟୂହାଣୁ ମଧ୍ୟରେ ୫୬ଟି ସୂକ୍ଷ୍ମାଣୁ ଅଛି, ସେହି ଅଣୁର ନାମ ଲୁହା । ଯେଉଁ ବ୍ୟୂହାଣୁ ମଧ୍ୟରେ ୧୬ଟି ସୂକ୍ଷ୍ମାଣୁ ଅଛି, ସେହି ଅଣୁର ନାମ ଅମ୍ଳଜାନ । ଯେଉଁ ବ୍ୟୂହାଣୁ ମଧ୍ୟରେ ୧୨ଟି ସୂକ୍ଷ୍ମାଣୁ ଅଛି, ସେହି ଅଣୁର ନାମ ଅଙ୍ଗାର । ଯେଉଁ ବ୍ୟୂହାଣୁ ମଧ୍ୟରେ ୧୦୮ଟି

ସୂକ୍ଷ୍ମାଣୁ ଅଛି, ସେହି ଅଣୁର ନାମ ରୂପା । ଯେଉଁ ବ୍ୟୂହାଣୁ ମଧ୍ୟରେ ଗୋଟିଏ ସୂକ୍ଷ୍ମାଣୁ ଅଛି, ସେହି ଅଣୁର ନାମ ଉଦ୍‌ଯାନ ।

ବ୍ୟୂହାଣୁ ମଧ୍ୟସ୍ଥ ସୂକ୍ଷ୍ମାଣୁମାନେ ଦୁଇ ପ୍ରକାରର । କେତେକ ସୂକ୍ଷ୍ମାଣୁ ତଡ଼ିତ୍‌ଶକ୍ତି ବହନ କରନ୍ତି ନାହିଁ । ଉକ୍ତ ସୂକ୍ଷ୍ମାଣୁମାନେ କ୍ଲୀବ ହୋଇଥିବାରୁ ସେମାନଙ୍କର ନାମ କ୍ଲୀବାଣୁ ଅଟେ । ଅନ୍ୟ କେତେକ ସୂକ୍ଷ୍ମାଣୁଯୁକ୍ତ ତଡ଼ିତ୍‌ଶକ୍ତି ବହନ କରିଥିବାରୁ ସେମାନଙ୍କର ନାମ ଯୁକ୍ତତଡ଼ିତାଣୁ ଅଟେ । ବ୍ୟୂହାଣୁ ମଧ୍ୟରେ ଯୁକ୍ତ ତଡ଼ିତାଣୁ ପ୍ରାୟ ସମାନ ସଂଖ୍ୟାରେ ଥାଆନ୍ତି ଓ କ୍ଲୀବାଣୁ ଯଥା— ଲୁହାର ବ୍ୟୂହାଣୁ ମଧ୍ୟରେ ୨୮ଟି ଯୁକ୍ତତଡ଼ିତାଣୁ ଓ ୨୮ଟି କ୍ଲୀବାଣୁ ଅଛନ୍ତି । ରୂପାର ବ୍ୟୂହାଣୁ ମଧ୍ୟସ୍ଥ ସୂକ୍ଷ୍ମାଣୁଙ୍କ ସଂଖ୍ୟା ୧୦୮ । ତନ୍ମଧ୍ୟରୁ ୫୪ଟି ଯୁକ୍ତତଡ଼ିତାଣୁ ଓ ୫୨ଟି କ୍ଲୀବାଣୁ ଅଟନ୍ତି । ଅମ୍ଳଜାନର ବ୍ୟୂହାଣୁ ମଧ୍ୟସ୍ଥ ସୂକ୍ଷ୍ମାଣୁମାନଙ୍କ ସଂଖ୍ୟା ୧୬ । ତନ୍ମଧ୍ୟରୁ ୮ଟି ଯୁକ୍ତ ତଡ଼ିତାଣୁ ଓ ୮ଟି କ୍ଲୀବାଣୁ ଅଟନ୍ତି । ଅଣୁର କକ୍ଷରେ ବିଯୁକ୍ତ ତଡ଼ିତାଣୁମାନେ ଘୂରୁଛନ୍ତି ଓ ବ୍ୟୂହ ମଧ୍ୟରେ ଯୁକ୍ତତଡ଼ିତାଣୁମାନ ଅଛନ୍ତି । କକ୍ଷସ୍ଥ ବିଯୁକ୍ତ ତଡ଼ିତାଣୁମାନଙ୍କ ସଂଖ୍ୟା ଓ ବ୍ୟୂହମଧ୍ୟସ୍ଥ ଯୁକ୍ତ ତଡ଼ିତାଣୁମାନଙ୍କ ସଂଖ୍ୟା ସମାନ ହୋଇଥିବାରୁ ଅଣୁଟି କ୍ଲୀବ ଅଟେ ।

ବ୍ୟୂହାଣୁର ସୂକ୍ଷ୍ମାଣୁମାନେ ଶକ୍ତିର ଭଣ୍ଡାର ଅଟନ୍ତି । ବ୍ୟୂହାଣୁ ମଧ୍ୟରୁ ଶକ୍ତି ପାଇବାକୁ ହେଲେ ବ୍ୟୂହାଣୁର ଦୃଢ଼ତା ବିଷୟ ଆଲୋଚନା କରିବାକୁ ହେବ । ବ୍ୟୂହାଣୁର ଗଠନକୁ ଗୋଟିଏ କୋଠାଘର ଗଠନ ସହିତ ତୁଳନା କରାଯାଇପାରେ । ଗୋଟିଏ କୋଠାଘର ଇଟା, ଚୂନ, ସିମେଣ୍ଟ ଓ କେତେଖଣ୍ଡ କଡ଼ିବରଗା-ଦ୍ୱାରା ନିର୍ମିତ । ଇଟା, ଚୂନ, ସିମେଣ୍ଟ ଓ କଡ଼ିବରଗାମାନ ସୁସଜ୍ଜିତ ଭାବରେ ମାଧ୍ୟାକର୍ଷଣ ବିନ୍ଦୁ ସହିତ ଖାପ ଖାଇ ରହିଲେ ଠିକ ହିଁ

ଦୃଢ଼ ହୁଏ । ଆବର୍ତ୍ତାବର୍ତ୍ତ କର ମୌଳିକ ଉପକରଣମାନଙ୍କୁ ସଜାଡ଼ିଲେ ବା ମାଧ୍ୟାକର୍ଷଣ ବୃନ୍ଦ ସହିତ ଖାପ ଖାଇବାର ଅଭାବ ଘଟିଲେ, ଗୃହର ଗଠନଟି ଭଙ୍ଗୁର ହୋଇଯାଏ । ଗଠନର ସଜାଡ଼ିବା ଦୋଷ ଯୋଗୁଁ ଅନେକ କୋଠାଘର ଗଠନ ସମୟରେ ଭାଙ୍ଗିପଡ଼େ । ଅନ୍ୟ କେତେକ ଗୃହ ଗଠନ ପରେ ସାମାନ୍ୟ ଆଘାତରେ ଭାଙ୍ଗିପଡ଼େ । ବ୍ୟୂହାଣୁ ଠିକ୍ ସେହିପରି କେତେଗୁଡ଼ିଏ ଯୁକ୍ତତଡ଼ିତାଣୁ ଓ କେତେଗୁଡ଼ିଏ କ୍ଳୀବାଣୁଙ୍କଦ୍ୱାରା ଗଠିତ । ଯୁକ୍ତ ତଡ଼ିତାଣୁ ଓ କ୍ଳୀବାଣୁମାନଙ୍କର ସଜଡ଼ା ଉପରେ ବ୍ୟୂହାଣୁର ଦୃଢ଼ତା ଓ ପରମାୟୁ ନିର୍ଭର କରେ । ଅନେକ ବ୍ୟୂହାଣୁ ଚିରସ୍ଥାୟୀ ହୁଅନ୍ତି, ଅନେକ କ୍ଷଣଭଙ୍ଗୁର ଅଟନ୍ତି ଓ କେତେକ ଅନବରତ ଭାଙ୍ଗି ପଡ଼ୁଅଛନ୍ତି । ଅନବରତ ଭଗ୍ନମୁଖୀ ବ୍ୟୂହାଣୁର ଉଦାହରଣ ରେଡ଼ିଅମ୍ ଅଟେ । ଗଠନରେ ଶୃଙ୍ଖଳାର ଅଭାବରୁ ରେଡ଼ିଅମର ବ୍ୟୂହାଣୁ ଅନବରତ ଆପେ ଆପେ ଭାଙ୍ଗିପଡ଼ୁଛି । ରେଡ଼ିଅମର ବ୍ୟୂହାଣୁ ଭାଙ୍ଗି ଚୂନାହୋଇଗଲା ବେଳେ ତହିଁରୁ ଅଣୁଶକ୍ତି ଏକ ଅଦୃଶ୍ୟ ଆଲୋକ ଆକାରରେ ବାହାରେ । ସେହି ରେଡ଼ିଅମ ଆଲୋକ ପଡ଼ିଲେ କ୍ୟାନସର ପ୍ରଭୃତି ରୋଗମାନ ଭଲ ହୋଇଯାଏ । ଏକ ଗ୍ରାମ୍ ରେଡ଼ିଅମରେ କୋଟି କୋଟି ରେଡ଼ିଅମ୍ ଅଣୁ ଥାଆନ୍ତି, ତହିଁରୁ ପ୍ରତି ସେକେଣ୍ଡରେ ୧୦।୨୦ଟି ଅଣୁ ଭାଙ୍ଗିଲେ ଏକ ଗ୍ରାମ୍ ରେଡ଼ିଅମ୍‌ରୁ ଆମ୍ଭେମାନେ ବର୍ଷ ବର୍ଷ ଧରି ଦୀର୍ଘକାଳ ପର୍ଯ୍ୟନ୍ତ ରେଡ଼ିଅମ୍ ଆଲୋକ ପାଇପାରିବୁଁ । ତେଣୁ ସାମାନ୍ୟ ଟିକିଏ ରେଡ଼ିଅମ୍ ନେଲେ ତାହା ସରିଯିବ ବୋଲି ଭାବିବା ଭୁଲ; ତାହାର ପରମାୟୁ ଦୀର୍ଘକାଳ । କ୍ୟାନ୍‌ସର ପ୍ରଭୃତି ରୋଗମାନଙ୍କର ଆରୋଗ୍ୟ ଦେଖି ମନେହେବା ସ୍ୱାଭାବିକ ଯେ, ରେଡ଼ିଅମ୍ ସେବନକଲେ ଶରୀରମଧ୍ୟରେ ରେଡ଼ିଅମ୍ ଆଲୋକ ଖେଳି ରୋଗମାନଙ୍କୁ ଭଲ

କରିଦେବନି । ଏହା ସତକଥା ଯେ, ଅଳ୍ପକାଳ ମଧ୍ୟରେ ଶରୀରର ଆଭ୍ୟନ୍ତରୀଣ ଘା ପ୍ରଭୃତି ରେଡ଼ିଅମ୍ ଆରୋଗ୍ୟ କରିଦେଇପାରେ । କିନ୍ତୁ ରେଡ଼ିଅମ୍‌ର ଆୟୁ ଅତି ଦୀର୍ଘ ହୋଇଥିବାରୁ ରୋଗମୁକ୍ତ ଶରୀରରେ ରେଡ଼ିଅମ୍ ଆଲୋକ ଦୀର୍ଘକାଳ ଖେଳ ରୋଗୀକୁ ମାରି-ପକାଏ । ଏହି କାରଣରୁ ରେଡ଼ିଅମ୍‌କୁ ସେବନ କରିହେବ ନାହିଁ; କିନ୍ତୁ ରେଡ଼ିଅମର ଆୟୁ ଦୀର୍ଘକାଳ ନ ହୋଇ ଯଦି ସାମାନ୍ୟ କେତେ ଘଣ୍ଟା ହୋଇଥାନ୍ତା, ତେବେ ରେଡ଼ିଅମ୍‌କୁ ସେବନ କରି ରୋଗର ଚିକିତ୍ସାମାନ ହୋଇପାରନ୍ତା । ଆଣବିକଶକ୍ତି ସାହାଯ୍ୟରେ କୃତ୍ରିମ ରେଡ଼ିଅମ୍ ପ୍ରସ୍ତୁତ ହେଉଅଛି, ଯେଉଁମାନଙ୍କର କି ପରମାୟୁ ୬ ଘଣ୍ଟା, ୧୨ ଘଣ୍ଟା, ୨୪ ଘଣ୍ଟା ବା ୩୬ ଘଣ୍ଟା । ଏହି କୃତ୍ରିମ ରେଡ଼ିଅମ୍‌ମାନଙ୍କର ରେଡ଼ିଅମ୍ ଆଲୋକ ଉଲ୍ଲିଖିତମତେ ଅଳ୍ପକାଳ ପାଇଁ ପ୍ରକଟିତ ହେଲାପରେ କୃତ୍ରିମ ରେଡ଼ିଅମ୍‌ମାନେ ରେଡ଼ିଅମ୍‌ର ଗୁଣ ହରାଇ କ୍ଲୀବ ଅଣୁ ହୋଇଯାନ୍ତି । ତେଣୁ ସେମାନଙ୍କୁ ସେବନ କଲେ ଶରୀର ମଧ୍ୟରେ ଅଳ୍ପ କେତେକ ଘଣ୍ଟା ପାଇଁ ରେଡ଼ିଅମ୍‌ର ଆଲୋକ ଖେଳିଯାଏ । କୃତ୍ରିମ ରେଡ଼ିଅମ୍‌ମାନେ ମାରାତ୍ମକ ହୁଅନ୍ତି ନାହିଁ; କାରଣ ସେମାନେ କେବଳ ଅଳ୍ପ କେତେକ ଘଣ୍ଟା ପରେ କ୍ଲୀବ ହୋଇଯାଆନ୍ତି । କୃତ୍ରିମ ରେଡ଼ିଅମ୍-ମାନଙ୍କର ଆହୁରି ଗୋଟିଏ ଭଲ ଗୁଣ ଏହି ଯେ, ଭିନ୍ନ ଭିନ୍ନ କୃତ୍ରିମ ରେଡ଼ିଅମ୍ ଶରୀର ମଧ୍ୟରେ ଭିନ୍ନ ଭିନ୍ନ ସ୍ଥାନରେ ପହଞ୍ଚିପାରନ୍ତି । ଶରୀରର ଅଭ୍ୟନ୍ତରର ଭିନ୍ନ ଭିନ୍ନ ବନ୍ଧକୁ ଆକ୍ରମଣ କରିବା ଉପାୟ ହେଉଛି କେବଳ କୃତ୍ରିମ ରେଡ଼ିଅମ୍ । ଉଦାହରଣ ସ୍ୱରୂପ ଶ୍ୱେତ ଫସ୍‌ଫରସ୍‌କୁ କୃତ୍ରିମ ଆକାରରେ ସେବନ କଲେ, ତାହା ମେରୁଦଣ୍ଡର ଯେଉଁ ସ୍ଥାନରେ କ୍ୟାନସର ଜୀବାଣୁ ଜନ୍ମ ହେଉଛନ୍ତି, ସେଠାରେ ପହଞ୍ଚି ଜନ୍ମସ୍ଥଳରେ କ୍ୟାନ୍‌ସର ଜୀବାଣୁମାନଙ୍କୁ

ମାରିପକାଏ । ଶରୀର ମଧ୍ୟକୁ ଅଣୁ-ଗୁଳି ମାରିବାର ଉପାୟ କୃତ୍ରିମ ରେଡ଼ିୟମ୍ । କୃତ୍ରିମ ରେଡ଼ିୟମ୍ ପ୍ରବର୍ତ୍ତନ ଚିକିତ୍ସାଶାସ୍ତ୍ରରେ ବିପ୍ଳବ ଆଣିବାକୁ ବସିଲାଣି ।

ଯେଉଁ କୃତ୍ରିମ ରେଡ଼ିୟମ୍ ଚିକିତ୍ସାଶାସ୍ତ୍ରରେ ବିପ୍ଳବ ଜନ୍ମ ଦେବାକୁ ବସିଛି, ତାକୁ ଅତି ସହଜରେ ପ୍ରସ୍ତୁତ କରାଯାଉଛି । ପୂର୍ବରୁ କୁହା-ଯାଇଛି ଯେ, ବ୍ୟୂହାଣୁର ଗ୍ୟୂହମଧ୍ୟରେ ଅନେକଗୁଡ଼ିଏ ସୂକ୍ଷ୍ମାଣୁ ଅଛନ୍ତି । ବ୍ୟୂହକୁ ଭେଦକରି ବ୍ୟୂହମଧ୍ୟସ୍ଥ ସୂକ୍ଷ୍ମାଣୁମାନଙ୍କ ଭିତରକୁ ମନ୍ଥର ଗତିଶୀଳ କ୍ଲୀବାଣୁମାନଙ୍କୁ ଗୁଳି ଆକାରରେ ମାରିଲେ ନୂତନ କ୍ଲୀବାଣୁ-ଗୁଳିଟି ବ୍ୟୂହ ମଧ୍ୟସ୍ଥ ସୂକ୍ଷ୍ମାଣୁମାନଙ୍କ ମଧ୍ୟରେ ପ୍ରବେଶ କରି ବ୍ୟୂହମଧ୍ୟରେ ଏକ ଆନ୍ଦୋଳନ ସୃଷ୍ଟି କରିବ । ଗୋରୁଗୋଠରେ ଗୋଟିଏ ନୂଆ ଗୋରୁ ପହଞ୍ଚିଲେ ଗୋରୁପଲର ପୁରୁଣା·ଗୋରୁମାନେ ନୂଆ ଗୋରୁଟିକୁ ଶିଙ୍ଘରେ ଭୁଷନ୍ତି ଓ ପଲମଧ୍ୟକୁ ପୂରାଇ ଦିଅନ୍ତି ନାହିଁ । ଠିକ୍ ସେହିପରି ବ୍ୟୂହମଧ୍ୟସ୍ଥ ସମସ୍ତ ସୂକ୍ଷ୍ମାଣୁ ନୂତନ କ୍ଲୀବାଣୁଟିକୁ ଧକ୍କା ମାରନ୍ତି ଓ ଏକ ତୁମୁଳ ଆନ୍ଦୋଳନ ବ୍ୟୂହ-ମଧ୍ୟରେ ସୃଷ୍ଟି ହୁଏ । କେତେକ ଘଣ୍ଟାକାଳ ଏହି ·ଆନ୍ଦୋଳନ ଚାଲିବା ପରେ ସମସ୍ତ ସୂକ୍ଷ୍ମାଣୁ ଓ ନୂତନ କ୍ଲୀବାଣୁଟି ଶାନ୍ତ ପଡ଼ିଯାଆନ୍ତି । ତା ଫଳରେ ବ୍ୟୂହମଧ୍ୟସ୍ଥ ସୂକ୍ଷ୍ମାଣୁଙ୍କ ସଂଖ୍ୟା ଗୋଟିଏ ଅଧିକ ହୋଇଯାଏ ଏବଂ ଅଣୁଟି ପରିବର୍ତ୍ତିତ ହୋଇ ଗୋଟିଏ ନୂଆ ଅଣୁ ସୃଷ୍ଟି କରେ । ଏହି ଉପାୟରେ ଆମ୍ଭେମାନେ ଗୋଟିଏ ଧାତୁରୁ ଆଉ ଗୋଟିଏ ଧାତୁ ପାଇପାରିବୁ । ଯେତେବେଳେ ଧରି ବ୍ୟୂହମଧ୍ୟରେ ଆନ୍ଦୋଳନ ଚାଲିଥିଲା, ସେହି ସମୟରେ ରେଡିୟମ୍ ଆଲୋକ ସଦୃଶ ଆଲୋକ ବାହାରୁଥିଲା । ସେହି ଆଲୋକ ସବୁ ଗୁଣରେ ରେଡ଼ିୟମ୍ ଆଲୋକ ସହ ସମାନ । ବ୍ୟୂହ ମଧ୍ୟରେ ଆନ୍ଦୋଳନ ଚାଲୁଥିବା ସମୟରେ ବ୍ୟୂହାଣୁକୁ କୃତ୍ରିମ ରେଡ଼ିୟମ୍

କୁହାଯାଏ । ଏହି ସମୟ ସାଧାରଣତଃ ୬ ଘଣ୍ଟା, ୧୨ ଘଣ୍ଟା, ୧ ଦିନ, ଦେଢ଼ଦିନ, ଅଢ଼େଇଦିନ ହୋଇଥାଏ । ଉଲ୍ଲିଖିତ ପ୍ରସ୍ତୁତ ପ୍ରଣାଳୀରୁ ଜଣାଯାଉଛି ଯେ, ସମସ୍ତ ମୌଳିକ ଧାତୁମାନଙ୍କର ଅଣୁକୁ କୃତ୍ରିମ ରେଡ଼ିଅମ୍ ଆକାରରେ ପାଇପାରିବା । କେଉଁ କୃତ୍ରିମ ରେଡ଼ିଅମ୍ ଶରୀରର କେଉଁ ଅଂଶକୁ ଭେଦ କରିବ, ତାହା ଜାଣିବା ମଧ୍ୟ ଅତି ସହଜ । କିଛି ଗରମ ଦୁଧରେ ସାମାନ୍ୟ କିଛି କୃତ୍ରିମ ରେଡ଼ିଅମ୍ ପକାଇଦିଅ । ଉକ୍ତ ଦୁଧ ନେଇ ଗୋଟିଏ ମୂଷାକୁ ପିଆଇଦିଅ । କିଛି ସମୟ ପରେ ମୂଷାଟିକୁ ମାରି ତା'ର ଶିରାପ୍ରଶିରା ଓ ଅସ୍ଥିକୁ ଚୂନା ଚୂନା କରି କାଟିଦିଅ । ପ୍ରତ୍ୟେକ ଅଂଶଖଣ୍ଡକୁ Gold leaf electroscope ପାଖକୁ ଆଣି ଦେଖାଅ । ଯେଉଁ ଅଂଶଖଣ୍ଡକୁ Gold leaf electroscope ସମ୍ମୁଖକୁ ଆଣିଲେ Gold leaf electroscopeର ପତ୍ର ମେଲି ହୋଇଯିବ, କୃତ୍ରିମ ରେଡ଼ିଅମ୍ ଯୁକ୍ତ ମୂଷାର ଶରୀରର ଅଭ୍ୟନ୍ତରର ସେହି ଅଂଶକୁ ଭେଦ କରିଛି । କେଉଁ କୃତ୍ରିମ ରେଡ଼ିଅମ୍ ଶରୀରର କେଉଁ ଅଂଶକୁ ଭେଦ କରିବ, ତାହା ମୂଷା ସାହାଯ୍ୟରେ ଜାଣି-ହେବ । ଉକ୍ତ ଜ୍ଞାନଲାଭ କରିସାରିଲା ପରେ କୃତ୍ରିମ ରେଡ଼ିଅମ୍‌କୁ ମନୁଷ୍ୟଶରୀରରେ ପ୍ରୟୋଗ କରିବାକୁ ହେବ ।

କୃଷିଶିଳ୍ପର ଗବେଷଣାରେ କୃତ୍ରିମ ରେଡ଼ିଅମ୍‌ର ପ୍ରୟୋଗ ଅଦ୍ଭୁତ ଅଟେ । ମନେକର, ଆମ୍ଭେମାନେ ଜାଣିବାକୁ ଚାହୁଁ ଯେ, ସାର ଉଦ୍ଭିଦର କେଉଁ ଅଂଶକୁ ପୁଷ୍ଟିକର କରୁଅଛି । ଆମୋନିଅମ୍ ଫସ୍‌ଫେଟ୍ (Ammonium Phosphate) ସାର ବିଷୟ ପରୀକ୍ଷା କରାଯାଉ । ଆମୋନିଅମ୍ ଫସ୍‌ଫେଟ୍ ସାରରେ କିଛି କୃତ୍ରିମ ରେଡ଼ିଅମ୍ ମିଶାଇ ତାକୁ ଗଛମୂଳରେ ଦିଅ । କିଛି କାଳ ପରେ ଗଛଟିକୁ କାଟି ଖଣ୍ଡ ଖଣ୍ଡ କରିଦିଅ ଓ ପ୍ରତ୍ୟେକ ବିଭିନ୍ନ

ଅଂଶଖଣ୍ଡକୁ ପୃଥକ୍ ପୃଥକ୍ କରି Gold leaf electroscope ଆଗରେ ଆଣି ଦେଖାଅ । ସାର ଯେଉଁ ଅଂଶରେ ପଡ଼ିଥିବ; ସେହି ଅଂଶକୁ Gold leaf electroscope ପାଖକୁ ଆଣିଲା ବେଳକୁ Gold leaf electroscopeର ପତ୍ର ଦୁଇଟି ମେଲା ହୋଇଯିବ । ଏହି ଉପାୟରେ ଆମ୍ଭେମାନେ ଜାଣିପାରିବୁ ଯେ, ସାର ଗଛର କେଉଁ ଅଂଶକୁ ପୁଷ୍ଟିକର କରୁଅଛି—କାଣ୍ଡକୁ, ପତ୍ରକୁ, ଫଳକୁ କି ଫୁଲକୁ ।

ଉଡ଼ାଜାହାଜ ସାହାଯ୍ୟରେ ବର୍ତ୍ତମାନ ଆମ୍ଭେମାନେ କଲିକତାରୁ ଲଣ୍ଡନକୁ ୪୮ ଘଣ୍ଟା ସମୟ ମଧ୍ୟରେ ଯାଇପାରୁ ଅଛୁ । ଆଣବିକ ଶକ୍ତି ସାହାଯ୍ୟରେ ମଙ୍ଗଳ ଗ୍ରହକୁ ଯିବାର ଉଦ୍ୟମ ଚାଲିଅଛି । ଉଡ଼ାଜାହାଜ ବର୍ତ୍ତମାନ ବେଶି ଉଚ୍ଚକୁ ଯାଇପାରୁ ନାହିଁ । ଏହାର କାରଣ ପୃଥିବୀର ମାଧ୍ୟାକର୍ଷଣ । ଯଦି ଆମ୍ଭେମାନେ କୌଣସି ଉପାୟରେ ପୃଥିବୀର ମାଧ୍ୟାକର୍ଷଣକୁ କାଟିଦେଇ ପାରୁ, ତାହାହେଲେ ଉଡ଼ାଜାହାଜ ଅଧିକ ଉଚ୍ଚକୁ ଯାଇପାରିବ । ଏଥିପାଇଁ ଉଡ଼ାଜାହାଜ ପଛଆଡ଼େ ଗୋଟିଏ ଛତା ବାନ୍ଧି ତାହା ଉପରେ ଇଉରାନିଅମ୍ (Uranium) ବୋଳି ଦିଆଯାଏ । ଇଉରାନିଅମ୍‌ର ଅଣୁ ରେଡ଼ିଅମ୍‌ର ଅଣୁ ପରି ଅନବରତ ଭାଙ୍ଗି ଚୂନା ଚୂନା ହୋଇ ଯାଉଅଛି ଓ ତହିଁରୁ ସୂକ୍ଷ୍ମାଣୁଗୁଳି ଗୁଡ଼ିଏ ବର୍ଷି ଅଛି । ଶିକାରୀମାନେ ଜାଣନ୍ତି ଯେ, ବନ୍ଧୁକରୁ ଗୁଳି ଆଗ ଆଡ଼କୁ ମାରିଲେ ବନ୍ଧୁକଟି ବିପରୀତ ଦିଗରେ ପଛ ଆଡ଼କୁ ହଟିଆସି କାନ୍ଧ ଉପରେ ଧକ୍କା ଦିଏ । ସେହିପରି ଇଉରାନିଅମ ଛତାରୁ ସୂକ୍ଷ୍ମାଣୁ ତଳଆଡ଼କୁ ବର୍ଷା ହେଲାବେଳେ ଛତାଟି ବିପରୀତ ଦିଗରେ ଅର୍ଥାତ୍ ଉପରଆଡ଼କୁ ଏତେ ଜୋରରେ ଚାଲିଯାଏ ଯେ, ତାହା ପୃଥିବୀର ମାଧ୍ୟାକର୍ଷଣକୁ କାଟି ଉଡ଼ାଜାହାଜକୁ ଗ୍ରହମଣ୍ଡଳକୁ ନେଇଯାଏ । ତେଣୁ ଆଣବିକ

ଶକ୍ତି ସାହାଯ୍ୟରେ ଗ୍ରହ ଉପରକୁ ଯିବାର ଉପାୟର କଳ୍ପନା ଓ ବ୍ୟବସ୍ଥା ବୈଜ୍ଞାନିକମାନେ କରୁଅଛନ୍ତି ।

ଅଣୁଟିଏ ଫାଟିଗଲେ ଚହିଁରୁ ପ୍ରଚୁର ଉତ୍ତାପ ବାହାରେ । ଏହି ଉତ୍ତାପ ସାହାଯ୍ୟରେ ଆମ୍ଭେମାନେ ରେଳଗାଡ଼ି, ଜାହାଜ, ବୁଡ଼ାଜାହାଜ, ଡାଇନାମୋ ଓ ମଟର ଆଦି ଅକ୍ଳେଶରେ ଚଳାଇ ପାରିବୁ । ପେଟ୍ରୋଲ, କୋଇଲା ଓ ଜାଳେଣିକାଠର ପରିମାଣ ଭୂପୃଷ୍ଠରୁ ଦିନୁଦିନ କମିଆସୁଛି । ପୁଣି ରେଳଗାଡ଼ି ଓ ଜାହାଜ ଆଦି ଚଳାଇବା ପାଇଁ ପ୍ରଚୁର ପରିମାଣରେ କୋଇଲା ଆବଶ୍ୟକ; କିନ୍ତୁ ଟନ୍ ଟନ୍ କୋଇଲା ଜାଳି ଯେତେ ଉତ୍ତାପ ମିଳିବ, ଏକ ଗ୍ରାମ୍ ଅଣୁଶକ୍ତିରୁ ଚହିଁରୁ ଅଧିକ ଉତ୍ତାପ ମିଳିବ । ଯୁଦ୍ଧ ସମୟରେ ବୁଡ଼ାଜାହାଜମାନ ଶତ୍ରୁର ଅଗୋଚରରେ ପାଣିତଳେ ରହିବାକୁ ଚାହାନ୍ତି । କୋଇଲା ସରିଗଲେ ପୁଣି ନୂତନ କୋଇଲା ନେବାକୁ ସେଗୁଡ଼ିକ ପାଣି ଉପରକୁ ଆସିବାକୁ ବାଧ୍ୟ ହୁଅନ୍ତି । କିନ୍ତୁ ଆଣବିକ ଶକ୍ତି ବ୍ୟବହାର କଲେ ଅଳ୍ପ ଆଣବିକ ଜାଳ ସାହାଯ୍ୟରେ ବୁଡ଼ାଜାହାଜସବୁ ଦୀର୍ଘକାଳ ପାଇଁ ନିଜ କାର୍ଯ୍ୟ କରିପାରିବ, ଏହିପରି ଆଣବିକ ଶକ୍ତିକୁ ଲୋକ ସମାଜର ବିଭିନ୍ନ କଲ୍ୟାଣକର କାର୍ଯ୍ୟରେ ଲଗାଇବା ପାଇଁ ଉଦ୍ୟମମାନ ଚାଲିଅଛି ।

— ——

[ ଏହି ପ୍ରବନ୍ଧରେ ନିମ୍ନଲିଖିତମତେ ଶବ୍ଦମାନ ଅନୁବାଦ କରି ଯାଇଅଛି—Atom = ଅଣୁ ; Nucleus = ବ୍ୟୂହାଣୁ ; Nualeons = ସୂକ୍ଷ୍ମାଣୁ ; Electron = ବିଯୁକ୍ତ ତଡ଼ିତାଣୁ ; Proton = ଯୁକ୍ତ ତଡ଼ିତାଣୁ ; Neutron = କ୍ଳୀବାଣୁ ]

# ଜାପାନରେ ଧାନଚାଷ

## ଡକ୍ଟର ବିଦ୍ୟାଧର ମିଶ୍ର

ଧାନ କେବଳ ଆମ ଦେଶର ପ୍ରଧାନ ଶସ୍ୟ ନୁହେଁ, ଚୀନ୍, ଜାପାନ, ଇଣ୍ଡୋଚୀନ୍, ଶ୍ୟାମଦେଶ, ବ୍ରହ୍ମଦେଶ ଏବଂ ଇଣ୍ଡୋନେସିଆ ପ୍ରଭୃତି ପୂର୍ବ ଏବଂ ଦକ୍ଷିଣ-ପୂର୍ବ ଏସିଆର ସମସ୍ତ ଦେଶମାନଙ୍କର ପ୍ରଧାନ ଶସ୍ୟ । ଏହି ସମସ୍ତ ଦେଶର କୃଷୀମାନେ ସେମାନଙ୍କର ଖାଦ୍ୟ ପାଇଁ ଏବଂ ଜୀବିକାନିର୍ବାହ ପାଇଁ ଧାନ ଚାଷ ଉପରେ ନିର୍ଭର କରନ୍ତି । ଏପରି କି ବ୍ରହ୍ମଦେଶ ଓ ଶ୍ୟାମଦେଶ ପରି ଦେଶରେ କୃଷୀମାନେ ଧାନଛଡ଼ା ଅନ୍ୟ କିଛି ଚାଷ କରନ୍ତି ନାହିଁ ।

ଧାନ ଏସବୁ ଦେଶରେ ପ୍ରଧାନ ଶସ୍ୟ ହେଲେ ହେଁ, ଏହାର ଉତ୍ପାଦନପ୍ରଣାଳୀ ଏବଂ ଏକର ପ୍ରତି ଉତ୍ପାଦନମାତ୍ରା ସବୁ ଦେଶରେ ସମାନ ନୁହେଁ । ଗତ ତିରିଶ ବର୍ଷର ହିସାବ ଅନୁସାରେ ଜଣାଯାଏ, ଆମ ଭାରତବର୍ଷରେ ହାରାହାରି ଏକର ପ୍ରତି ୧୬ ମହଣରୁ ୨୧ ମହଣ ମଧ୍ୟରେ ଧାନ ଉତ୍ପାଦନ ହେଉଛି । ଉତ୍ପାଦନର ହାର ଭାରତର ସବୁ ପ୍ରଦେଶରେ କିମ୍ବା ଜିଲ୍ଲାରେ ସମାନ ନୁହେଁ । ସାଧାରଣତଃ ମାନ୍ଦ୍ରାଜ ଏବଂ ବଙ୍ଗଳାରେ ଏକର ପ୍ରତି ଉତ୍ପାଦନ ବେଶି ଏବଂ ଆମ ଓଡ଼ିଶାରେ ସବୁଠାରୁ କମ୍ । ଅନ୍ୟ ଦେଶମାନଙ୍କରେ ଉତ୍ପାଦନର ପରିମାଣ ଦେଖିଲେ ଜଣାଯାଏ ଯେ, ବ୍ରହ୍ମଦେଶ, ଶ୍ୟାମ, ଇଣ୍ଡୋଚୀନ ପ୍ରଭୃତି ଦକ୍ଷିଣ-ପୂର୍ବ ଏସିଆର ଦେଶମାନଙ୍କରେ ଏକର ପ୍ରତି ଉତ୍ପାଦନ ଭାରତବର୍ଷଠାରୁ ବେଶି

ନୁହେ, ମାତ୍ର ଚୀନ୍ ଏବଂ ଜାପାନରେ ଏକର ପ୍ରତି ଉତ୍ପାଦନ ଭାରତବର୍ଷର ଉତ୍ପାଦନଠାରୁ ଯଥେଷ୍ଟ ବେଶି । ଚୀନ ଦେଶରେ ଏକରପ୍ରତି ଉତ୍ପାଦନ ଭାରତଠାରୁ ଦେଢ଼ଗୁଣ ଏବଂ ଜାପାନରେ ପ୍ରାୟ ତିନି ଗୁଣ । ଜାପାନର ହାରାହାରି ଏକରେ ଜମିରେ ପ୍ରାୟ ପଚିଶ ମହଣ ଧାନ ଉତ୍ପାଦନ ହେଉଛି । ଆମ ଦେଶରେ ଯେତେବେଳେ ଲୋକସଂଖ୍ୟା ଦ୍ରୁତଗତିରେ ବଢ଼ୁଛି ଅଥଚ ଜମିର ପରିମାଣ ବଢ଼ୁ ନାହିଁ, ସେତେବେଳେ ପ୍ରତି ଏକରର ଉତ୍ପାଦନ ବୃଦ୍ଧି କରିବା ଅତ୍ୟନ୍ତ ଦରକାର ପଡ଼ୁଛି । ସେଥିପାଇଁ କୃଷି-ବିଭାଗ ପକ୍ଷରୁ ପ୍ରଚାର ହେଉଛି ଯେ, ଜାପାନରେ ଯେଉଁ ପ୍ରଣାଳୀରେ ଧାନ ଚାଷ କରାଯାଉଛି, ସେହି ପ୍ରଣାଳୀରେ ଚାଷ କଲେ ଆମ ଦେଶରେ ଏକର ପ୍ରତି ଅଧିକ ଉତ୍ପାଦନ ହୋଇପାରିବ ।

କେତେକ ବିଶେଷଜ୍ଞ କହୁଛନ୍ତି ଯେ, ଜାପାନର ସୁବିଧା-ଜନକ ଜଳବାୟୁ ହେତୁ ଦକ୍ଷିଣ-ପୂର୍ବ ଏସିଆ ଅପେକ୍ଷା ସେଠାରେ ପ୍ରତି ଏକରରେ ଅଧିକ ଉତ୍ପାଦନ ହେଉଛି । ଜଳବାୟୁ ଅଧିକ ଉତ୍ପାଦନର ଗୋଟିଏ କାରଣ ହୋଇପାରେ; ମାତ୍ର ପ୍ରଧାନତଃ ଉତ୍କୃଷ୍ଟ ପ୍ରଣାଳୀରେ ଚାଷ କରିବା ହେତୁ ସେଠାରେ ଉତ୍ପାଦନ ବେଶି ହେଉଛି ।

ପ୍ରଥମ କଥା—ଜାପାନରେ ସମସ୍ତ ଧାନଗଛ ରୁଆହୁଏ । ଚାଷୀମାନେ ଅଳ୍ପ ଅଧିକେ ହଳକରି ଜମିରେ ବିହନ ବୁଣିଦେଇ ଆସନ୍ତି ନାହିଁ । ଜାପାନରେ କାହିଁକି, ବ୍ରହ୍ମଦେଶ ଏବଂ ଭାରତ-ବର୍ଷର ମାନ୍ଦ୍ରାଜ, ବଙ୍ଗଳା ପ୍ରଭୃତି ପ୍ରଦେଶରେ ଅଧିକାଂଶ ଧାନ ରୁଆହୁଏ । କିନ୍ତୁ ଓଡ଼ିଶାରେ 'ରୁଆ ଧାନ ଥୁଆ' ବୋଲି ପ୍ରବାଦ ଥିଲେ ମଧ୍ୟ ଚାଷୀମାନେ ସାଧାରଣତଃ ଜମିରେ ହଳକରି

ବହନ ବୁଣି ଦଅନ୍ତି । ତାହାଦ୍ୱାରା ବହନ ବେଶି ଖର୍ଚ୍ଚ ହୁଏ ଏବଂ ସମୁଦାୟ ଜମିରେ ସମାନଭାବରେ ଗଛ ହୁଏ ନାହିଁ । ରୁଆ ଧାନର ଉତ୍ପାଦନ ଅଧିକ ବୋଲି ଜାଣି ସୁଦ୍ଧା ଚାଷୀମାନେ ତାହା କାହିଁକି ଗ୍ରହଣ କରନାହାନ୍ତି, ସେକଥା ପ୍ରବୀଣ ଚାଷୀମାନେ ଭଲ-ଭାବରେ ବୁଝାଇ ପାରିବେ । ଅନୁମାନ କରାଯାଏ ଧାନ ରୋଇବା ପ୍ରଣାଳୀରେ ଚାଷ କଲେ ଅଧିକ ମଜୁରି ଖର୍ଚ୍ଚ ହେବ ଏ ଆଶଙ୍କା ସେମାନଙ୍କର ରହିଛି । କିନ୍ତୁ ସରକାରୀ ଫାରମମାନଙ୍କରେ ଦେଖା-ଯାଉଛି ଯେ, ଧାନ ରୋଇଲେ ବରଂବରଂରେ ଖୁବ୍ ମଜୁରି କମ୍ ଲାଗେ । ବୁଣିବା, ବେହୁଡ଼ିବା, ବାଛିବା ପ୍ରଭୃତି ସମସ୍ତ କାର୍ଯ୍ୟରେ ମଜୁରି ମିଶାଇ ଦେଖିଲେ ଜଣାଯାଏ କି ରୋଇବା ପ୍ରଣାଳୀରେ ବୁଣିବା ପ୍ରଣାଳୀ ଅପେକ୍ଷା ଅତି ବେଶି ମଜୁରି ଖର୍ଚ୍ଚ ହୁଏ ନାହିଁ ।

ଦ୍ୱିତୀୟ କାରଣ ହେଉଛି, ପାଣି ଯୋଗାଇବା ବିଷୟରେ ଅନିଶ୍ଚିତ ହେଲେ ରୋଇବା ପ୍ରଣାଳୀରେ ଚାଷକରିବା ସମ୍ଭବପର ନୁହେଁ । ମାନ୍ଦ୍ରାଜର କାବେରୀ ଉପତ୍ୟକା ପରି ଜଳସେଚନର ସୁବିଧା ନ ଥିଲେ କିମ୍ବା ବଙ୍ଗଦେଶ ପରି ବର୍ଷାର ପରିମାଣ ବିଷୟରେ ନିଶ୍ଚିତତା ନ ଥିଲେ, ଧାନ ରୋଇବା ବିପଦଜନକ । ଆମ ଧୋଇଆ ଅଞ୍ଚଳରେ ବଢ଼ି ପାଣିର ସମୟ କିଛି ଠିକ୍ ନାହିଁ । ଯେ କୌଣସି ସମୟରେ ବଢ଼ି ଆସି ରୁଆ ଧାନ ଭସାଇ ନେବ । ଅନ୍ୟ ଅଞ୍ଚଳ-ମାନଙ୍କରେ ମଧ୍ୟ ବର୍ଷାର କିଛି ନିଶ୍ଚିତତା ନାହିଁ ଏବଂ ଉପଯୁକ୍ତ ପରିମାଣରେ ବର୍ଷାପାଣି ଜମିରେ ଧରି ରଖିବାର ବ୍ୟବସ୍ଥା ନାହିଁ । ସେଥିଯୋଗୁ ବୋଧହୁଏ ଚାଷୀମାନେ ବର୍ଷାକାଳ ଆଗରୁ ଜମିରେ ଧାନ ବୁଣିଦେଇ ଆସନ୍ତି । ଏହାଛଡ଼ା ଜମିର ମୃତ୍ତିକା ଏବଂ ଉଚ୍ଚତାର ପାର୍ଥକ୍ୟ ପ୍ରଭୃତି ଅନ୍ୟ କାରଣ ସବୁ ମଧ୍ୟ ଥାଇପାରେ ।

ମାନ ଉପଯୁକ୍ତ ସମୟରେ ପାଣି ପାଇବା ଏବଂ ଉପଯୁକ୍ତ ପରିମାଣ ପାଣି କିଆରୀରେ ଧରି ରଖିବା, ରୋଇବା ନିମିତ୍ତ ପ୍ରଧାନ ଦରକାରୀ ଜିନିଷ ବୋଲି ମନେହୁଏ । ଓଡ଼ିଶା ପରି ଯେଉଁ ଦେଶରେ ପାଣିର ଏପରି ଅନିଶ୍ଚୟତା, ସେଠାରେ ମଧ୍ୟ ଚାଷୀମାନେ ଏହି ପ୍ରଣାଳୀରେ ଚାଷ କରନ୍ତି । ଉଦାହରଣ ସ୍ୱରୂପ ଶ୍ୟାମଦେଶରେ ଚାଷୀମାନେ ଏହିପରି ଧାନ ବୁଣି ଚାଷ କରନ୍ତି ଏବଂ ସେଠାରେ ମଧ୍ୟ ଏକର ପ୍ରତି ଉତ୍ପାଦନ ଖୁବ୍ କମ ।

ଜାପାନରେ ପ୍ରଧାନତଃ ନିମ୍ନଲିଖିତ କାରଣଗୁଡ଼ିକ ହେତୁ ଏକର ପ୍ରତି ଉତ୍ପାଦନ ଅଧିକ ହେଉଛି ।

(୧) ଧାନ କ୍ଷେତକୁ ପାଣି ଯୋଗାଇବା ଏବଂ ସେଠାରୁ ଅଧିକା ପାଣି ବାହାର କରିଦେବାର ସୁବ୍ୟବସ୍ଥା ।

(୨) ପ୍ରତି ଏକର ଧାନଚାଷରେ ବହୁତ ମଜୁରି ଲଗାଇବା ।

(୩) ପ୍ରଚୁର ପରିମାଣରେ ଖତ, ସାର ପ୍ରଭୃତି ବ୍ୟବହାର କରିବା ।

(୪) ଉତ୍କୃଷ୍ଟ ଧରଣର ବିହନ ବ୍ୟବହାର କରିବା ।

(୫) ଧାନଗଛରେ ରୋଗ ଓ ପୋକ ପ୍ରଭୃତି ଦୂରକରିବା ପାଇଁ ବ୍ୟବସ୍ଥା ।

(୧) ଜାପାନର ଅଧିକାଂଶ ଜମି ଭାରତବର୍ଷରେ ଉପକୂଳ ଅଞ୍ଚଳ କିମ୍ବା ନଦୀ-ଉପତ୍ୟକା ପରି ସମତଳ ନୁହେଁ । ଜାପାନ ଦେଶର ମଧ୍ୟଭାଗ ପର୍ବତ ପାହାଡ଼ରେ ପୂର୍ଣ୍ଣ ଏବଂ ଚାରିପାଖରେ ଥିବା ଉପକୂଳ ଅଞ୍ଚଳରେ ଓସାର ଖୁବ୍ କମ୍ । ଚାଷୀମାନେ ନଦୀ-ଉପତ୍ୟକା କିମ୍ବା ଉପକୂଳ ଅଞ୍ଚଳମାନଙ୍କରୁ ପାହାଚ କରି ପରି ପର୍ବତ ଅଧ ପର୍ଯ୍ୟନ୍ତ ବହୁ ପରିଶ୍ରମ କରି ଧାନଜମି ପ୍ରସ୍ତୁତ କରି-

ଥାନ୍ତି । ଧାନଜମିରେ ପାଣି ଭର୍ତ୍ତିକରି ରଖିବା ଏବଂ ଅଧିକ ପାଣିକୁ ବାହାର କରିଦେବାର ବ୍ୟବସ୍ଥା ମଧ୍ୟ କରିଥାନ୍ତି । ସେଥିନିମିତ୍ତ ଅଧିକାଂଶ ଜମିରେ ପମ୍ପ୍ ବ୍ୟବହାର କରାଯାଇଥାଏ । ଏହିପରି ଜଳ-ସେଚନ ଏବଂ ନିଷ୍କାସନର ସୁବ୍ୟବସ୍ଥା ଯୋଗୁଁ ଯେଉଁ ଧୋଇ, ମରୁଡ଼ି ଆମ ଧାନଚାଷର ପ୍ରଧାନ କାଳ, ସେଥିରୁ ଜାପାନୀ ଚାଷୀ-ମାନେ ରକ୍ଷା ପାଇଥାନ୍ତି ।

(୨) ଦ୍ୱିତୀୟରେ ଜାପାନରେ ଧାନଚାଷର ଏକରପ୍ରତି ବହୁତ ମଜୁରି ଖର୍ଚ୍ଚ ହୁଏ । ଜାପାନରେ ପରିବାର ପ୍ରତି ଜମି ଭାରତବର୍ଷ ଅପେକ୍ଷା କମ୍ । ଅଧିକାଂଶ କୃଷକ ପରିବାରର ଏକଟନ୍ଦ୍ର ଦୁଇ ଏକରରୁ ବେଶି ଜମି ନାହିଁ । ଶିଳ୍ପର ପ୍ରସାର ହେତୁ ବହୁ ଲୋକ ସହରମାନଙ୍କରେ କାମରେ ଲାଗିଥିବା ସତ୍ତ୍ୱେ ପଲ୍ଲୀ ଅଞ୍ଚଳରେ ଜନବହୁଳତା ଖୁବ୍ ବେଶି । ଚାଷୀମାନେ ସେମାନଙ୍କର ଅଳ୍ପ ଜମିରେ ମନପ୍ରାଣ ଦେଇ ଲାଗିଥାନ୍ତି । ଜମି ତୁଳନାରେ ମଣିଷ ଏତେ ବେଶି ଯେ, ସେମାନେ ବଳଦ ସାହାଯ୍ୟରେ ଜମି ହଳ ନ କରି କୋଡ଼ି କୋଦାଳରେ ହାଣି ଚାଷ କରନ୍ତି । ଆମ ଦେଶରେ ବୁଣାଠାରୁ କଟା ପର୍ଯ୍ୟନ୍ତ ଏକରେ ଜମିରେ ହାରାହାରି ୫ ମୂଲ ଖର୍ଚ୍ଚ ହେଉଥିବା ସ୍ଥଳେ ଜାପାନରେ ୧୦୦ ମୂଲ ଖର୍ଚ୍ଚ ହେଉଛି; ସୁତରାଂ ଧାନକିଆରୀରେ ଅଧିକ ଯତ୍ନ ଯୋଗୁଁ ଏକରପ୍ରତି ଅଧିକ ଉତ୍ପାଦନ ହେଉଛି ।

(୩) ତୃତୀୟରେ ଜାପାନୀ ଚାଷୀମାନେ ଧାନ ଚାଷରେ ପ୍ରଚୁର ପରିମାଣରେ ଖତ ଏବଂ ବୈଜ୍ଞାନିକ ସାର ବ୍ୟବହାର କରନ୍ତି । ଚୀନ ଓ ଜାପାନର ଚାଷୀମାନେ ଅତି ପୂର୍ବକାଳରୁ

ଖତର ମୂଲ୍ୟ ଯେପରି ବୁଝିଛନ୍ତି, କୌଣସି ଦେଶର ଚାଷୀମାନେ ସେପରି ବୁଝିଛନ୍ତି ବୋଲି ମନେହୁଏ ନାହିଁ । ଜାପାନୀ ଚାଷୀମାନେ ସେମାନଙ୍କର ଘରବାଡ଼ିରୁ ଏବଂ ଖେତରୁ ବାହାରୁଥିବା ମଇଳାରୁ ଟିକିଏ ହେଲେ ବାହାରେ ପକାଇ ଦିଅନ୍ତି ନାହିଁ । ମନୁଷ୍ୟମାନଙ୍କର ମଇଳା, ଗୋବର, ସୋୟାବିନ୍ ପିଡ଼ିଆ ପ୍ରଭୃତି ସମସ୍ତ ପ୍ରକାର ଖତ ସେମାନେ ଧାନଚାଷରେ ବ୍ୟବହାର କରନ୍ତି । ତା ଛଡ଼ା ଧାନ ରୋଇବା ପୂର୍ବରୁ ଖେତରେ ଧନିଚା ପ୍ରଭୃତି ବୁଣି ଗଛସବୁ କାଟି ମାଟି ସଙ୍ଗରେ ମିଶାଇଦିଅନ୍ତି । ସେଥି ସଙ୍ଗେ ସଙ୍ଗେ ବହୁଳ ପରିମାଣରେ ବୈଜ୍ଞାନିକ ସାର ବ୍ୟବହାର କରନ୍ତି । ପ୍ରତ୍ୟେକ ଚାଷୀ ମୋଟଉପରେ ଧାନଚାଷରେ ଯାହା ଖର୍ଚ୍ଚ କରେ, ସେଥିରୁ ଶତକଡ଼ା ୩୫ ଭାଗ ଏହି ଖତ ପିଡ଼ିଆ ଲାଗି ଖର୍ଚ୍ଚ ହୁଏ । ଜାପାନରେ ଧାନ ଉତ୍ପାଦନ ବୃଦ୍ଧିର ସେଇଟା ସବୁଠାରୁ ବଡ଼ କାରଣ ।

ଏହା ତୁଳନାରେ ଆମ ଓଡ଼ିଶାରେ ଚାଷୀମାନେ ଧାନକିଆରୀରେ ଯାହା ଖତ ପକାନ୍ତି, ତାହା କିଛି ନୁହେଁ କହିଲେ ଚଳେ । ଆମ ଚାଷୀମାନେ ଧାନକିଆରୀରେ ମନୁଷ୍ୟମାନଙ୍କର ମଇଳାକୁ ବ୍ୟବହାର କରିବାକୁ ଘୃଣା କରନ୍ତି; ଗୋବର ଯାକ ଘସିକରି ଜାଳନ୍ତି; ଗୋରୁମୂତ ଗୁହାଳରୁ କାଢ଼ି ଫିଙ୍ଗିଦିଅନ୍ତି । ପାଉଁଶ କମ୍ବା ଅନ୍ୟାନ୍ୟ ଅଳିଆ ଯାହା ଗାଡ଼ିଏ ଦୁଇଗାଡ଼ି ହୁଏ, ତାକୁ ନକଟବର୍ତ୍ତୀ ଖଣ୍ଡିଏ ଦୁଇଖଣ୍ଡି ବିଲରେ ପକାଇ ଦିଅନ୍ତି । ଆଜିକାଲି ଆଳୁ, ସାରୁ ପ୍ରଭୃତି ପନିପରିବା ପାଇଁ ଚାଷୀମାନେ ପିଡ଼ିଆ ଏବଂ ଆମୋନିଆ ସଲ୍‌ଫେଟ ପ୍ରଭୃତି ବ୍ୟବହାର କରୁଛନ୍ତି; କିନ୍ତୁ ଧାନବିଲରେ ସେଗୁଡ଼ିକ କେହି

ବ୍ୟବହାର କରୁ ନାହାଁନ୍ତି । ସରକାରୀ ଫାର୍ମମାନଙ୍କରେ ଦେଖା- ଯାଉଛି ଯେ, ଖଣ୍ଡିଏ ବିଲରେ ସାର ନ ଦେଇ ଯାହା ଉତ୍ପାଦନ ହେଉଛି, ଉପଯୁକ୍ତ ପରିମାଣରେ ସାର ଦେଲେ ତାର ଦୁଇ ଗୁଣରୁ ବେଶି ଉତ୍ପାଦନ ହେଉଛି । ସାରର ଦାମ ଏବଂ ଧାନର ଦାମ ତୁଳନା କରି ବୁଝାଯାଉଛି ଯେ ସାର ଦେଇ ଅଧିକା ଧାନ ଉତ୍ପାଦନ କଲେ ଚାଷୀମାନେ ବିଶେଷ ଲାଭବାନ୍ ହୁଅନ୍ତେ ।

ତେବେ ଜାଣିବା କଥା ହେଉଛି, ଦେଶସାରା ଚାଷୀ କଅଣ ଏତେ ନିର୍ବୁଦ୍ଧିଆ ଯେ, ଏପରି ଲାଭ କରିବାର ପନ୍ଥା ଜାଣି ସୁଦ୍ଧା ଲାଭ କରୁ ନାହାନ୍ତି ? ମାତ୍ର ଧାନଚାଷରେ ବହୁପରିମାଣରେ ମୂଲ୍ୟବାନ୍ ସାର ବ୍ୟବହାର କରିବା ପୂର୍ବରୁ ଚାଷୀମାନଙ୍କର କେତେଗୁଡ଼ିଏ ବିଷୟରେ ନିଶ୍ଚିତ ହେବା ଦରକାର । ପ୍ରଥମରେ ସରକାରୀ ଫାର୍ମମାନଙ୍କରେ ଆମୋନିଆ ପ୍ରଭୃତିର ବ୍ୟବହାର ଏବଂ ତହିଁର ଲାଭ କ୍ଷତି ବିଷୟରେ ଯାହା ଗବେଷଣା ହେଉଛି, ତାହା ସାଧାରଣ ଚାଷୀମାନଙ୍କ ନିକଟରେ ସହଜରେ ପହଞ୍ଚୁ ନାହିଁ । ସାଧାରଣ ଚାଷୀମାନେ କୌଣସି ଉନ୍ନତ ଧରଣର ଚାଷ ସରକାରୀ ଫାର୍ମରୁ ଶିଖନ୍ତି ନାହିଁ । ପ୍ରଥମେ ଜଣେ ଦୁଇଜଣ ଆଗୁଆ ହୋଇ ଗୋଟିଏ କଥା ଶିଖି ବ୍ୟବହାର କଲେ ଅନ୍ୟମାନେ ସେମାନଙ୍କୁ ଅନୁକରଣ କରନ୍ତି । ସୁତରାଂ କୃଷିବିଭାଗ କେତେକ ଆଗୁଆ ଚାଷୀଙ୍କ ସହଯୋଗରେ ସେମାନଙ୍କ ଜମିରେ ଆଧୁନିକ ଖତସାରର ବ୍ୟବହାର ଫଳ ଦେଖାଇଦେବା ଉଚିତ ।

ଦ୍ୱିତୀୟରେ ବର୍ତ୍ତମାନ ଆବଶ୍ୟକତା ତୁଳନାରେ ସାର ପିଡ଼ିଆର ଉତ୍ପାଦନ ଦେଶରେ ଖୁବ୍ କମ୍ ଏବଂ ତାହାର ଦାମ ମଧ୍ୟ ଅତି ବେଶି । ଅନ୍ୟ ଦିଗରେ ଚାଷୀମାନଙ୍କ ନିକଟରେ ମୂଳଧନର ଅଭାବ

ଏବଂ ଚାଷୀମାନେ ଧାନର ଦର ଏବଂ ଉତ୍ପାଦନ ବିଷୟରେ ନିଶ୍ଚିତ ନ ହୋଇ ସାର ପିଡ଼ିଆ ପାଇଁ କରଜ କରିବେ ନାହିଁ । ତାହା ପରେ ସବୁଠାରୁ ବଡ଼ କଥା ହେଉଛି, ବର୍ଷାପାଣି ଏବଂ ବଢ଼ିପାଣି ଉପରେ କର୍ତ୍ତୃତ୍ୱ ନ ଥିଲେ ଚାଷୀମାନେ ମହାଜନଠାରୁ କରଜ କରି ଶହ ଶହ ଟଙ୍କାର ସାର ପିଡ଼ିଆ ଖୋଲା କିଆରିରେ ମଡ଼ାଇ ଦେଇ ଆସିବେ ନାହିଁ । ବର୍ତ୍ତମାନ ଅବସ୍ଥାରେ ହୁଏତ ଗୋଟିଏ ରାତିରେ ବଢ଼ିପାଣି ଆସି ସାର ପିଡ଼ିଆ ସହିତ ଫସଲଯାକ ଭସାଇ ନେବ କିମ୍ବା ଗୋଟିଏ ରାତିରେ ବର୍ଷାପାଣିରେ ସାର ପିଡ଼ିଆସବୁ ନଈ ଘୋଳିଆକୁ ବୋହିଯିବ କିମ୍ବା ଜଣକ କିଆରିରୁ ଅନ୍ୟ ଜଣକ କିଆରିକୁ ଚାଲିଯିବ କିମ୍ବା ବର୍ଷା ଅଭାବରୁ ଫସଲ ନଷ୍ଟ ହେଲେ ଶହ ଶହ ଟଙ୍କାର ସାର ନଷ୍ଟ ହେବ । ସୁତରାଂ ଜଳସେଚନ ବ୍ୟବସ୍ଥାର ସ୍ଥାୟୀ ପ୍ରତିକାର ନ ହେବା ପର୍ଯ୍ୟନ୍ତ ଧାନ କିଆରିରେ ବହୁ ପରିମାଣରେ ବୈଜ୍ଞାନିକ ସାରର ବ୍ୟବହାର ଆଶା କରାଯାଏ ନାହିଁ ।

(୪) ଉତ୍କୃଷ୍ଟ ପ୍ରକାରର ବିହନ ବ୍ୟବହାର କରିବା ମଧ୍ୟ ଜାପାନୀ ଧାନଚାଷର ଗୋଟିଏ ବିଶେଷତ୍ୱ । ଏ ବିଷୟରେ ସେ ଦେଶର ସରକାର ଚାଷୀମାନଙ୍କୁ ବିଶେଷ ସାହାଯ୍ୟ କରିଛନ୍ତି । ଜାପାନ ଦ୍ୱୀପପୁଞ୍ଜ ପ୍ରାୟ ୨୩୦୦ ମାଇଲ ଲମ୍ବ । ଉତ୍ତରରେ 'ହୋକୋଡ଼ୋ' ଦ୍ୱୀପଠାରୁ ଦକ୍ଷିଣରେ 'କ୍ୟୁସୁ' ଦ୍ୱୀପ ମଧ୍ୟରେ ବହୁପ୍ରକାର ଜଳବାୟୁ ଦେଖାଯାଏ । ଦେଶ ପର୍ବତସଙ୍କୁଳ ଥିବା ହେତୁ ପ୍ରତି ଜିଲ୍ଲାର ଜଳବାୟୁ ଭିନ୍ନ ପ୍ରକାର । ଦେଶଯାକ ଏହି ପୃଥକ୍ ପୃଥକ୍ ଜଳବାୟୁ ମଧ୍ୟରେ ଧାନଗଛ କିପରି ସୁନ୍ଦରରୂପେ ହୋଇପାରିବ; ସେଥିନିମିତ୍ତ ସରକାରୀ କୃଷି ଗବେଷଣାକେନ୍ଦ୍ରମାନ

ବିଭିନ୍ନ ପ୍ରକାରର ବିହନ ବାହାର କରିଛନ୍ତି । ଗରମ ଓ ଥଣ୍ଡା ଅଞ୍ଚଳ, ବର୍ଷାଦିନ ବା ଶୀତଦିନ ଉପରେ କମ୍ବା ଚଞ୍ଚଳ ହେଉଥିବା ସ୍ଥାନମାନଙ୍କ ପାଇଁ ପୃଥକ୍ ପ୍ରକାରର ବିହନ ବ୍ୟବହୃତ ହୁଏ । କୃଷିଗବେଷଣା କେନ୍ଦ୍ରସବୁ ଜଳବାୟୁର ଉପଯୋଗୀ କରାଇ ବେଶି ଉତ୍ପାଦନ ହେଉଥିବା ବହୁତ ପ୍ରକାର ବିହନ କୃଷୀମାନଙ୍କ ମଧ୍ୟରେ ପ୍ରଚଳିତ କରିପାରିଛନ୍ତି । ଜାପାନ ସରକାର ଏହି ଗବେଷଣା-ମାନଙ୍କରେ ବହୁ ଅର୍ଥ ବ୍ୟୟ କରିଛନ୍ତି ।

ଆମ ଦେଶରେ ମଧ୍ୟ କୃଷୀମାନେ ବହୁ ପୂର୍ବକାଳରୁ ବିଭିନ୍ନ ପ୍ରକାର ବିହନ ଯତ୍ନରେ ରଖି ବ୍ୟବହାର କରନ୍ତି । କେଉଁ ଧାନ ଖାଲ ଜମିରେ ହେବ ଏବଂ କେଉଁଟା ଉଚ୍ଚ ଜମିରେ ହେବ, କେଉଁଟା ମଟାଳ ମାଟିରେ ହେବ ଏବଂ କେଉଁଟା ବାଲିଆ ମାଟିରେ ହେବ, କୃଷୀମାନେ ତାହା ଭଲରୂପେ ଜାଣନ୍ତି । କୃଷୀମାନଙ୍କର ଏ ଅଭିଜ୍ଞତା ପୁରୁଷାନୁକ୍ରମେ ଗଢ଼ିଆସିଛି । ଏ ବିଷୟରେ ଆମ କୃଷୀମାନେ ସରକାରୀ ଫାରମମାନଙ୍କରୁ ବିଶେଷ ସାହାଯ୍ୟ ପାଇଛନ୍ତି ବୋଲି ମନେହୁଏ ନାହିଁ । ବେଶି ଉତ୍ପାଦନ କରିପାରୁ-ଥିବା ଯେଉଁସବୁ ବିହନ ସରକାରୀ ଫାରମମାନଙ୍କରେ ବାହାରୁଛି, ତାହା ସହଜରେ କୃଷୀମାନଙ୍କ ମଧ୍ୟରେ ପ୍ରଚଳିତ ହୋଇ ପାରୁ ନାହିଁ ।

(୫) ପରିଶେଷରେ ଧାନଗଛରେ ଯେତେ ପ୍ରକାର ରୋଗ ଏବଂ ପୋକ ପ୍ରଭୃତି ହୁଏ, ତାହା ଦୂର କରିବାର ଭାର ଜାପାନ-ସରକାର ଗ୍ରହଣ କରିଛନ୍ତି । ଗଛରେ ରୋଗ କମ୍ବା ପୋକ ହେଲେ ବ୍ୟାପକ ଭାବରେ ହୁଏ । ବ୍ୟକ୍ତିଗତ ଭାବରେ କୌଣସି କୃଷୀ ତାହା ଦୂର କରିବା ସମ୍ଭବପର ନୁହେ । କୃଷୀମାନଙ୍କର

କୋ-ଅପରେଟିଭ ସମିତିମାନଙ୍କଦ୍ୱାରା କିମ୍ବା ସରକାରଙ୍କଦ୍ୱାରା ଏହାର ଉପଯୁକ୍ତ ପ୍ରତିକାର ହୋଇପାରେ । ସବୁ ଦେଶରେ ସରକାର ଏ ଦିଗରେ ବିଶେଷ ସାହାଯ୍ୟ କରିଥାନ୍ତି ।

ଜାପାନରେ ଏହି ଉପରିଲିଖିତ କାରଣଗୁଡ଼ିକ ହେତୁ ଏକର ପ୍ରତି ଧାନର ଉତ୍ପାଦନ ଆମ ଦେଶ ଅପେକ୍ଷା ଖୁବ୍ ବେଶୀ ହେଉଛି । ଆମ ଦେଶରେ ବର୍ତ୍ତମାନ ଯେତେବେଳେ ଜାପାନୀ ପ୍ରଣାଳୀରେ ଧାନଚାଷ କରିବାକୁ ଚେଷ୍ଟା ଚାଲିଛି, ସେତେବେଳେ ଏସବୁ ବିଷୟପ୍ରତି ଦୃଷ୍ଟି ଦେବା ଉଚିତ । ସବୁଠାରୁ ପ୍ରଧାନ ବିଷୟ ହେଉଛି, ଜଳସେଚନ ଏବଂ ଜଳନିଷ୍କାସନର ବ୍ୟବସ୍ଥା । ଏପରି ବ୍ୟବସ୍ଥା ଦ୍ୱାରା ଚାଷୀମାନେ ଧୋଇ ମରୁଡ଼ିରୁ ରକ୍ଷାପାଇଲେ ସହଜରେ ଭଲ ବିହନ ଗ୍ରହଣ କରିବେ ଏବଂ ଖତସାର ଦେବା ପାଇଁ ଟଙ୍କା ଖର୍ଚ୍ଚ କରିବେ । ତା ହେଲେ ପ୍ରତି ଏକରରେ ଉତ୍ପାଦନ ନିଶ୍ଚୟ ବଢ଼ିବ ।

---

# ରାଜଗୃହ

## ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ

ଭାଗ୍ୟବଶରେ ଆଜ ମୁଁ ରାଜଗୃହରେ ଅଛି । ଏ ରାଜଗୃହ * କିନ୍ତୁ ମଣିମୁକ୍ତାଜଡ଼ିତ ରାଜପ୍ରାସାଦ ନୁହେଁ, ଏହା ପ୍ରାଚୀନ ମଗଧର ଧନ୍ୟା ରାଜଧାନୀ । ଏହା ମହାଭାରତର ବସୁମତୀ, ରାମାୟଣର ବାର୍ହଦ୍ରଥପୁର ଓ ହୁଏନ୍‌ସାଂଙ୍କ ବିବରଣୀର କୁଶାଗ୍ରପୁର । ପାଣ୍ଡବର ବିପୁଳ, ବାରାହକ, ଚୈତ୍ୟକ ଓ ମାତଙ୍ଗ ନାମକ ପଞ୍ଚଗିରିରେ ପରିବେଷ୍ଟିତ ହୋଇଥିବାରୁ ଏ ନଗରୀର ଅନ୍ୟତମ ନାମ ଗିରିବ୍ରଜ । ଏହା ଦୁର୍ଦ୍ଧର୍ଷ ଜରାସନ୍ଧର ଦୁର୍ଜୟ ଗିରିଦୁର୍ଗ, ପରମକାରୁଣିକ ସିଦ୍ଧାର୍ଥଙ୍କ ସାଧନାସ୍ଥଳୀ ଓ ବିଶାଳ ମଗଧ ସାମ୍ରାଜ୍ୟର ଜନ୍ମଭୂମି । ପ୍ରାଚୀନ ରାଜଗୃହର ସୌଧାବଳୀ ଆଜି ନାହିଁ; ମାତ୍ର ବିଧ୍ୱସ୍ତ ନଗରୀର ସ୍ଖଳିତ ଶିଳାରେ ବହୁ ଶତାବ୍ଦୀର ସ୍ମୃତି ଆଜିଯାଏ ଲୁଚି ରହିଛି । ପ୍ରାଚୀରକୃତ ଅନୁଚ ଗିରିରାଜି ଆଜି ଗୁଳ୍ମଲତାରେ ଶ୍ୟାମଳ ହୋଇ ଉଠିଛି, ଆଉ ସେମାନଙ୍କ ମଧ୍ୟସ୍ଥଳରେ, ପଦଦେଶରେ ଓ ଶିରୋଦେଶରେ ରହିଛି ସ୍ମୃତିଶିଳା, ଭଗ୍ନସ୍ତୂପ, ଭଗ୍ନପ୍ରାଚୀର ଇତ୍ୟାଦି । ଉପତ୍ୟକାରେ କ୍ଷୁଦ୍ର ଗିରିନିର୍ଝରଣୀମାନ ବିଖ୍ୟାତ ସରସ୍ୱତୀ, ଗୋଦାବରୀ ଓ ବୈତରଣୀ ନାମ ବହି ବୋହି ଚାଲିଛନ୍ତି । ନଗରୀର ଉତ୍ତର ଉପକଣ୍ଠରେ ଶତଧାର, ତପୋଦା ଓ ବ୍ରହ୍ମକୁଣ୍ଡ ନାମ ବହି ଉଷ୍ଣ ଝରମାନ ମଧ୍ୟ ବୋହିଚାଲିଛନ୍ତି । ଏହି କମନୀୟ ସୁରକ୍ଷିତ ସ୍ଥଳୀରେ ପ୍ରଥମ ମଗଧ ସାମ୍ରାଜ୍ୟର ରାଜଧାନୀ ଗଢ଼ି ଉଠିଥିଲା ।

---

* ପାଟନା ଜିଲ୍ଲାସ୍ଥ ଆଧୁନିକ ରାଜଗିର

ଗିରିବ୍ରଜର ଅତି ପ୍ରାଚୀନ ଇତିହାସ ଜନଶ୍ରୁତିର ସ୍ମୃତି-ଜଡ଼ିତ ଥିଲେ ହେଁ ଆଧୁନିକ ଐତିହାସିକ ତାର କାଳନିର୍ଣ୍ଣୟ କରି ପାରେ ନାହିଁ କିମ୍ବା ପ୍ରତ୍ନତାତ୍ତ୍ୱିକ ତାକୁ ପ୍ରାଚୀନ ବସ୍ତୁଦ୍ୱାରା ପ୍ରମାଣିତ କରିପାରେ ନାହିଁ । ମାତ୍ର ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀଠାରୁ ରାଜଗୃହର ପ୍ରମାଣିତ ଇତିହାସ ରହିଅଛି । ଭାରତର ପ୍ରାଚୀନ ଇତିହାସରେ ଏହି ଶତାବ୍ଦୀଟି ଗୋଟିଏ ଯୁଗସନ୍ଧି । ଯେଉଁ ମଗଧ ସାମ୍ରାଜ୍ୟ ଅଶୋକଙ୍କ ସମୟରେ ସମଗ୍ର ଭାରତ ଅଧିକାର କରି ଗାନ୍ଧାର, ବାହ୍ଲିକ ପ୍ରଭୃତି ଉପାନ୍ତ ଅଞ୍ଚଳରେ ମଧ୍ୟ ବ୍ୟାପ୍ତ ହୋଇ ପାରିଥିଲା, ତା'ର ପ୍ରଥମ ଅଭ୍ୟୁଦୟ ଘଟିଥିଲା ଏହି ଶତାବ୍ଦୀରେ; ଆଉ ଯେଉଁ ବୌଦ୍ଧଧର୍ମ ସମଗ୍ର ଭାରତରେ ବ୍ୟାପ୍ତ ହୋଇ ସୁଦୂର ଚୀନ, ଜାପାନ ପ୍ରଭୃତିକୁ ମଧ୍ୟ ଗତି କରି ଯାଇଥିଲା, ତାହାର ଜନ୍ମ ମଧ୍ୟ ଘଟିଥିଲା ଏହି ଶତାବ୍ଦୀରେ । ଏହି ମହାନ୍ ଯୁଗସନ୍ଧିରେ ପ୍ରାଚୀରବୃତ୍ତ ଗିରିବ୍ରଜକୁ ଉପଯୋଗ କରି ମଗଧସମ୍ରାଟ ବିମ୍ବିସାର (ଖ୍ରୀ: ପୂ ୫୪୩—୪୯୧) ସର୍ବପ୍ରଥମେ ରାଜଗୃହରେ ରାଜଧାନୀ ସ୍ଥାପନ କଲେ । ମାତ୍ର ପରବର୍ତ୍ତୀ ଯୁଗରେ ଖାଲି ମଗଧର ରାଜଧାନୀରୂପେ ନୁହେଁ, ପୂତବୌଦ୍ଧକ୍ଷେତ୍ରରୂପେହିଁ ରାଜଗୃହ ବେଶୀଭାବରେ ପରିଚିତ ହେବାକୁ ଲାଗିଲା । ବୁଦ୍ଧଚରଣରେଣୁରେ ପବିତ୍ର ଏହି ସ୍ଥଳ ଯୁଗେ ଯୁଗେ ଧର୍ମପ୍ରାଣମାନଙ୍କୁ ଆକର୍ଷଣ କଲା; ଆଉ ଏହାର କୀର୍ତ୍ତିଗାନ ବହୁ ବୌଦ୍ଧଗ୍ରନ୍ଥର କଳେବର ମଣ୍ଡନ କରିବାକୁ ଲାଗିଲା ।

ଯୁଗଜନ୍ମା ସିଦ୍ଧାର୍ଥଙ୍କ ରାଜଗୃହ ଆଗମନର ଗାଥା ଅତୀବ ଚିତ୍ତାକର୍ଷକ । କପିଳବାସ୍ତୁର ଅତୁଳ ବିଭବ, ମାତୃସ୍ୱସା ମହା ପ୍ରଜାପତିଙ୍କ ଅପରିସୀମ ସ୍ନେହ; ନବପରିଣୀତା ଯଶୋଧାରାଙ୍କ ପ୍ରେମ-ଫଲ୍‌ଗୁ, ନବଜାତ ନବନୀତପ୍ରତିମା ରାହୁଳ—ଏ ସମସ୍ତଙ୍କୁ

ଚିରଦିନ ପାଇଁ ଛାଡ଼ିଦେଇ ଯୁବରାଜ ସିଦ୍ଧାର୍ଥ ଅନିର୍ଦ୍ଦିଷ୍ଟ ଭାବରେ ଭ୍ରମିବାକୁ ଲାଗିଲେ । ନବୀନ ସନ୍ନ୍ୟାସୀଙ୍କ ମନରେ ଅସୀମ ବୁଭୁକ୍ଷା—ନବ ସତ୍ୟ ଲାଭ କରି ମାନବ ସମାଜକୁ ରୋଗ, ଜରା, ମୃତ୍ୟୁର ପ୍ରତିଷେଧ ବତାଇ ଦେବେ; ଧରଣୀରୁ ଧର୍ମଜନିତ ରକ୍ତପାତ ଲୋପ କରି ନବଧର୍ମ ସ୍ଥାପନ କରିବେ । କିନ୍ତୁ କେଉଁଠାରୁ ଏ ମହାସତ୍ୟ ମିଳିପାରିବ—ଗୂଢ଼ ଶାସ୍ତ୍ରଜ୍ଞାନରୁ; କଷ୍ଟ ଯୋଗସାଧନାରୁ ବା କଠୋର ତପଃ-ସାଧନାରୁ ? ତରୁଣ ସନ୍ନ୍ୟାସୀଙ୍କ ମନ ଚଞ୍ଚଳ; ଅସ୍ଥିର ଚିତ୍ତରେ ଭ୍ରମି ଭ୍ରମି ରାଜଗୃହରେ ଆସି ଉପଗତ ହେଲେ । ରାଜଗୃହର ଉପକଣ୍ଠ ଯଷ୍ଟିବନରେ (ଯେଠିଆନ୍) କିଛିକାଳ ରହି ମହାନଗରୀରେ ପଦାର୍ପଣ କଲେ । ରାଜଗୃହର ରାଜପଥ ସୁନ୍ଦର କରି ନବୀନ ସନ୍ନ୍ୟାସୀ ଭିକ୍ଷାପାତ୍ର ହସ୍ତରେ ଧୀରେ ଧୀରେ ଚାଲିଛନ୍ତି; ଅଙ୍ଗର ଆଭିଜାତ୍ୟ-ଗୌରବ ଗୈରିକ ବସନରୁ ଫୁଟି ବାହାରୁଛି ।

ମହାରାଜ ବିମ୍ବିସାର ମହାର୍ଘ ପ୍ରସ୍ତର ପ୍ରାସାଦରୁ ଏକଦୃଷ୍ଟିରେ କିଛିକ୍ଷଣ ଚାହିଁ ରହି ପଚାରିଲେ—"କିଏ ଏ ତରୁଣ ସନ୍ନ୍ୟାସୀ ? ଏ ତ ଇତର ସନ୍ନ୍ୟାସୀ ପରି ଦେଖାଯାଉ ନାହାନ୍ତି ?" ପାର୍ଶ୍ୱଚର କହିଲା—"ମହାରାଜ, ଏ ସନ୍ନ୍ୟାସୀ କପିଳବାସ୍ତୁର ରାଜପୁତ୍ର ସିଦ୍ଧାର୍ଥ । ଧରଣୀର ଦୁଃଖ ଦୂର କରିବାପାଇଁ ସନ୍ନ୍ୟାସବ୍ରତ ଗ୍ରହଣ କରିଛନ୍ତି ।" ଏହାପରେ ପାର୍ଶ୍ୱଚର ରାଜାଦେଶରେ ତରୁଣ ସନ୍ନ୍ୟାସୀଙ୍କ ରାଜଗୃହର ବାସସ୍ଥାନ ନିରୂପଣ କରି ଆସି ବିମ୍ବିସାରଙ୍କ ସମ୍ମୁଖରେ ଜଣାଇଲା—"ମହାରାଜ, ଏହି ଭିକ୍ଷୁ ପାଣ୍ଡବ ପର୍ବତର ଗୁମ୍ଫା ସମ୍ମୁଖରେ ବ୍ୟାଘ୍ର ବୃଷଭ ବା ସିଂହ ପରି ସମାସୀନ ହୋଇଛନ୍ତି ।"

ଏହାହିଁ ସିଦ୍ଧାର୍ଥଙ୍କ ରାଜଗୃହ ସହିତ ପ୍ରଥମ ପରିଚୟ ବୃତ୍ତାନ୍ତ । ଦୀର୍ଘକାଳ ଅବସ୍ଥାନ ପରେ ସେ ରାଜଗୃହର ନଗର ବନ ପର୍ବତ ସହିତ ସୁଦ୍ଧା ଘନିଷ୍ଠ ଭାବରେ ପରିଚିତ ହୋଇ ପଡ଼ିଥିଲେ ଓ ତାଙ୍କର ଉତ୍ତର ଜୀବନରେ ସେମାନଙ୍କ ରମଣୀୟତା ବାରମ୍ବାର ସ୍ମରଣ କରିଥିଲେ । ବୁଦ୍ଧଙ୍କ ରାଜଗୃହରେ ପୂର୍ବ ସ୍ମୃତି 'ମହାପରିନିବ୍‌ବାଣସୁତ୍ତନ୍ତ' ଓ 'ଦୀର୍ଘନିକାୟ' ଇତ୍ୟାଦି ବୌଦ୍ଧ ଗ୍ରନ୍ଥମାନଙ୍କରେ ବିଶଦ ଭାବରେ ବର୍ଣ୍ଣିତ ଅଛି । କିନ୍ତୁ ବୁଦ୍ଧତ୍ୱ ପ୍ରାପ୍ତି ପୂର୍ବରୁ ତାଙ୍କୁ ରାଜଗୃହ ଛାଡ଼ିବାକୁ ପଡ଼ିଥିଲା ।

ରାଜଗୃହରେ ଅରାଡ଼ କାଲାମ ଓ ଉଦ୍ରକ ରାମପୁତ୍ର ନାମକ ଯୋଗୀଦ୍ୱୟଙ୍କଠାରୁ ବହୁଦିନ ଯୋଗଶିକ୍ଷା କଲାପରେ ଶେଷରେ ସେ ତାକୁ ନିଷ୍ଫଳ ମନେକରି ରାଜଗୃହ ତ୍ୟାଗକଲେ ଓ ନିରଞ୍ଜନାକୂଳସ୍ଥ ଉରୁବିଲ୍ୱଗ୍ରାମରେ ( ଆଧୁନିକ ବୁଦ୍ଧଗୟାରେ ) ଗଭୀର ସମାଧିରେ ନିମଗ୍ନ ହେଲେ । ଅସୀମ କାୟକ୍ଳେଶ ସହିବା ପରେ ସୁଦ୍ଧା ଈପ୍‌ସିତ ମହାସତ୍ୟ ଲବ୍‌ଧ ହୋଇ ପାରିଲା ନାହିଁ । ସମାଧି ତ୍ୟାଗ କରିବେ, ଏହି ଚିନ୍ତାରେ ଦୋଳାଚଳଚିତ୍ତ ହୋଇ ରହିଥିବାବେଳେ ଗୋପକନ୍ୟା ସୁଜାତା ଦୁଗ୍‌ଧପାତ୍ର ହସ୍ତରେତାଙ୍କ ଚରଣ ତଳରେ ଲୁଣ୍ଠିତା ହୋଇ ତା'ର ନୈବେଦ୍ୟ-ଉପହାରକୁ ଗ୍ରହଣ କରିବା ପାଇଁ ମିନତି କଲା । ମହା ସନ୍ନ୍ୟାସୀ ତାହା ଗ୍ରହଣ କରି ଅନଶନ ଭଙ୍ଗକଲେ ।

ବିବିଧ ପରୀକ୍ଷା ପରେ ସିଦ୍ଧାର୍ଥ ସ୍ଥିର କଲେ ଯେ, ଯେଉଁ ମହାସତ୍ୟ ଲାଭପାଇଁ ସେ ବ୍ୟାକୁଳ, ତାହା ଶାସ୍ତ୍ରଜ୍ଞାନରେ, ଯୋଗ ସାଧନାରେ ବା ତପଃସାଧନାରେ ନାହିଁ । ହୃଦୟର ନିଭୃତତମ କନ୍ଦରରେ ହିଁ ତାହା ନିହିତ ଅଛି । ଏହି କଥା ଉପଲବ୍‌ଧି କଲାପରେ ଦିନେ ହଠାତ୍ ତାଙ୍କ ହୃଦୟ ଜ୍ଞାନାଲୋକରେ ଉଦ୍ଭାସିତ

ହୋଇ ଉଠିଲା । ଈପ୍‌ସିତ ସତ୍ୟ ଲାଭ କରି ସେହି ଦିନଠାରୁ ସେ ନିଜକୁ ବୁଦ୍ଧ ନାମରେ ପରିଚୟ ଦେବାକୁ ଲାଗିଲେ । ମୃଗଦାବ-କାନନରେ (ଆଧୁନିକ ସାରନାଥରେ) ନବଲବ୍‌ଧ ସତ୍ୟକୁ ସେ ସର୍ବପ୍ରଥମେ ପଞ୍ଚଶିଷ୍ୟଙ୍କୁ ପ୍ରଦାନ କରି ନବଧର୍ମ ପ୍ରବର୍ତ୍ତନ କଲେ ।

ବୌଦ୍ଧଧର୍ମର ଇତିହାସ ବା ତାର ତତ୍ତ୍ୱ ଏଠାରେ ଆଲୋଚ୍ୟ ବିଷୟ ନୁହେ । ବୁଦ୍ଧତ୍ୱ ଲାଭ କଲା ପରେ ରାଜଗୃହକୁ ଫେରି ଆସି ବୁଦ୍ଧଦେବ ସ୍ୱଧର୍ମ ପ୍ରଚାରରେ କିପରି ଆତ୍ମନିୟୋଗ କରି-ଥିଲେ, ତାହାହିଁ ଏଠାରେ ସାମାନ୍ୟ ଭାବରେ ଆଲୋଚିତ ହେବ । ରାଜଗୃହକୁ ଫେରି ଆସି ବୁଦ୍ଧଦେବ ଗୃଧ୍ରକୂଟରେ ଅବସ୍ଥାନ କଲା ପରେ ସହସ୍ର ସହସ୍ର ନରନାରୀ ତାଙ୍କ ନବଧର୍ମରେ ଦୀକ୍ଷିତ ହେବାକୁ ଲାଗିଲେ । ଉରୁବିଲ୍ୱର ବ୍ରାହ୍ମଣ ତପସ୍ୱୀ ମହାକାଶ୍ୟପ ଶତ ଶତ ଶିଷ୍ୟ ସହିତ ମହାଶ୍ରମଣଙ୍କ ଶରଣାଗତ ହେଲେ । ବିମ୍ବିସାରଙ୍କ ଜୀବକ ନାମକ ଅଭୂତକର୍ମା ରାଜବୈଦ୍ୟ ବୁଦ୍ଧଙ୍କ ପରମଶିଷ୍ୟ ହେଲେ ଓ କମନୀୟ ଆମ୍ରବନ ପ୍ରଦାନ କରି ତହିଁରେ ବୁଦ୍ଧଙ୍କ ପାଇଁ ନବଚୈତ୍ୟ ନିର୍ମାଣ କଲେ । କୌଣସି କୌଣସି ବୌଦ୍ଧଗ୍ରନ୍ଥରେ ବର୍ଣ୍ଣିତ ଅଛି ଯେ, ଶ୍ରାବସ୍ତୀ ନଗରୀର ଅଗାଧସତ୍ତ୍ୱ, ଅନାଥପିଣ୍ଡଦ ଓ ବୈଶାଳୀର ବିଖ୍ୟାତ ଗଣିକା ଅମ୍ବପାଳୀ ମଧ୍ୟ ଏହି ରାଜଗୃହରେ ହିଁ ବୁଦ୍ଧଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ବୁଦ୍ଧଙ୍କର ଲୋକୋତ୍ତର କୀର୍ତ୍ତି ବିମ୍ବିସାରଙ୍କ ଶ୍ରୁତିଗୋଚର ହେବାରୁ ଦିନେ ସେ ମହାସମାରୋହରେ ବୁଦ୍ଧଦର୍ଶନ ପାଇଁ ନଗରରୁ ବହିର୍ଗତ ହେଲେ । ମାତ୍ର ଗୃଧ୍ରକୂଟର ପାଦଦେଶରେ ଉପସ୍ଥିତ ହେବାମାତ୍ରେ ତାଙ୍କର ଭାବାନ୍ତର ଜାତ ହେଲା । ସେଇଠାରୁ ସେ ତାଙ୍କର ଅନୁଚରବର୍ଗଙ୍କୁ ବିଦାୟ ଦେଇ ପଦବ୍ରଜରେ ଗୃଧ୍ରକୂଟରେ ଉପସ୍ଥିତ ହେଲେ, ଆଉ ଶିଷ୍ୟବେଷ୍ଟିତ ପରମକାରୁଣିକଙ୍କ ଚରଣ-

ତଳରେ ଭୂଲୁଣ୍ଠିତ ହୋଇପଡ଼ିଲେ । ଆଜାନୁଲମ୍ବିତ ବାହୁ ତୋଳି ପରମକାରୁଣିକ ବିମ୍ବିସାରଙ୍କ ମୁକୁଟମଣ୍ଡିତ ଶିରରେ ବରାଭୟ ପ୍ରଦାନ କଲେ ।

ଏହାପରେ ମଗଧର ସବୁଠି ବୌଦ୍ଧଧର୍ମର ବୈଜୟନ୍ତୀ ଉଡ଼ିବାକୁ ଲାଗିଲା । ମାତ୍ର ବୌଦ୍ଧବାଦର ବିଷୟରେ କେତେକଙ୍କ ହୃଦୟ ଈର୍ଷାବିଷରେ ଜର୍ଜ୍ଜରିତ ହେବାକୁ ଲାଗିଲା । ଏହି ଈର୍ଷାଳୁମାନଙ୍କ ମଧ୍ୟରେ ବୁଦ୍ଧଙ୍କ ସ୍ୱବଂଶଜ ଦେବଦତ୍ତହିଁ ଅଗ୍ରଣୀ ଥିଲେ । ସେ ରାଜଗୃହରେ ହିଁ ନାଳଗିରି ନାମକ ବଳିଷ୍ଠ ହସ୍ତୀକୁ ମଦ୍ୟପାନଦ୍ୱାରା ଉନ୍ମତ୍ତ କରାଇ ବୁଦ୍ଧଙ୍କ ପ୍ରାଣନାଶ ଉଦ୍ଦେଶ୍ୟରେ ତାକୁ ପ୍ରେରଣ କଲେ । ମାତ୍ର ଉନ୍ମତ୍ତ ପଶୁ ମଧ୍ୟ ବୁଦ୍ଧଙ୍କ ପୁଣ୍ୟ ପ୍ରଭାବରେ ପରାଭୂତ ହୋଇ ତାଙ୍କ ଚରଣତଳେ ପ୍ରଣତି ଜଣାଇଲା । ଦେବଦତ୍ତ ପୁଣି ମଗଧର ଯୁବରାଜ ଅଜାତଶତ୍ରୁଙ୍କ ସହିତ ସନ୍ଧି କରି ତାଙ୍କ ହସ୍ତରେ ବିମ୍ବିସାରଙ୍କୁ ବନ୍ଦୀ କରାଇଲେ ଓ ବୌଦ୍ଧ-ଧର୍ମର ଲୋପ ପାଇଁ ଅଜାତଶତ୍ରୁଙ୍କୁ ପ୍ରରୋଚନା ଦେଲେ । ମାତ୍ର ଯୁଗଜନ୍ମା ମହାଶ୍ରମଣ ଯେଉଁ ସତ୍ୟର ବହ୍ନି ଜାଳିଥିଲେ, ବିରୋଧ-ବାତରେ ତାହା ନିର୍ବାପିତ ନ ହୋଇ ବରଞ୍ଚ ପ୍ରଜ୍ୱଳିତ ହେବାକୁ ଲାଗିଲା । ପିତାଶତ୍ରୁ ଅଜାତଶତ୍ରୁ ଅନୁତପ୍ତ ହୋଇ ବୁଦ୍ଧଙ୍କ ଶରଣା-ପନ୍ନ ହେଲେ ଓ ମଗଧର ରାଜଧାନୀ ରାଜଗୃହରେ ପୁଣି ବୌଦ୍ଧ-ବାଦର ବୈଜୟନ୍ତୀ ଉଡ଼ିବାକୁ ଲାଗିଲା ।

ବୁଦ୍ଧଙ୍କ ଏହି ପୁଣ୍ୟଗାଥା ରାଜଗୃହର ପ୍ରତ୍ୟେକ ଶିଳାରେ ଲାଗି ରହିଛି । ସ୍ତୂପସ୍ଥଳ ଗୁଡ଼ିକରେ ଏକାଧିକ ସ୍ତୂପସୌଧ ନିର୍ମିତ ହୋଇ ଲୋପ ପାଇଥିଲେ ହେଁ ସେମାନଙ୍କ ପୂର୍ବନାମ ଲୋପ ପାଇନାହିଁ । ଦର୍ଶକ ଏହି ପ୍ରାଚୀନ ନଗରୀର ଉତ୍ତର-ଦକ୍ଷିଣ ଆଡ଼କୁ ଗତି କରି ଗଲାବେଳେ ପ୍ରଥମେ ଦେଖନ୍ତି, ନବ ରାଜଗୃହର

ଭଗ୍ନପ୍ରାଚୀର । ଏହା ଅଜାତଶତ୍ରୁଙ୍କଦ୍ୱାରା ନିର୍ମିତ ହୋଇଥିଲା । ଏହାର ପଶ୍ଚିମକୁ ସରସ୍ୱତୀକୂଳରେ ଅଶୋକସ୍ତୂପର ଭଗ୍ନାବଶେଷ ବିଦ୍ୟମାନ ଅଛି । ନବ ରାଜଗୃହର ଦକ୍ଷିଣରେ ରହିଛି ବେଣୁବନ ଓ କରଣ୍ଡସର । ଏହି ରମ୍ୟସ୍ଥଳୀକୁ ମହାମତି ବିମ୍ବିସାର ବୁଦ୍ଧଙ୍କୁ ଉପହାର ଦେଇଥିଲେ । ବେଣୁବନର ଦକ୍ଷିଣକୁ ପ୍ରାଚୀନ ରାଜଗୃହର ଧ୍ୱଂସାବଶେଷ ରହିଛି । ପର୍ବତର ଶୀର୍ଷଦେଶରେ ବହିର୍ପ୍ରାଚୀର ଓ ପର୍ବତବେଷ୍ଟିତ ଉପତ୍ୟକାରେ ଅନ୍ତର୍ପ୍ରାଚୀର ଦ୍ୱାରା ପରିବେଷ୍ଟିତ ଏହି ନଗରୀ ବିମ୍ବିସାରଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା । ଏହି ପ୍ରାଚୀନ ରାଜଗୃହର ପଶ୍ଚିମପର୍ବତରେ ପିପ୍ପଳଗୁମ୍ଫା ଓ ସପ୍ତପର୍ଣ୍ଣୀ ଗୁମ୍ଫା ବିଦ୍ୟମାନ ଅଛି । ପ୍ରଥମଟିରେ ମହାକାଶ୍ୟପ ତପସ୍ୟାରତ ହୋଇଥିଲେ ଓ ଦ୍ୱିତୀୟଟିରେ ତାଙ୍କ ପୌରୋହିତ୍ୟରେ ପ୍ରଥମ ବୌଦ୍ଧ ମହାସଙ୍ଘ ଅନୁଷ୍ଠିତ ହୋଇଥିଲା । ଉପତ୍ୟକାର ଆହୁରି ଦକ୍ଷିଣକୁ ଅଗ୍ରସର ହେଲେ "ମଣିଆରମଠ" ଦେଖିବାକୁ ମିଳେ । ଏହା ମଣିନାଗଙ୍କ ପୀଠସ୍ଥଳୀ ଥିଲା; ମାତ୍ର ପରେ ଜୈନମାନଙ୍କ ଦ୍ୱାରା ଅଧିକୃତ ହୋଇଥିଲା । ଏହାର ଅନତିଦୂରରେ ପର୍ବତ ଦେହରେ ଖୋଦିତ କେତୋଟି ଜୈନ ଗୁମ୍ଫା ବର୍ତ୍ତମାନ "ସୋନଭଣ୍ଡାର" ନାମ ଧାରଣ କରିଛି ! ଉପତ୍ୟକାର ଆହୁରି ଦକ୍ଷିଣକୁ ଗତି କଲେ, 'ବିମ୍ବିସାରଙ୍କ କାରାଗାର' ଓ 'ଜୀବକାମ୍ରବନବିହାର'ର ଧ୍ୱଂସାବଶେଷ ଦେଖିବାକୁ ମିଳେ । ପ୍ରଥମ ସ୍ଥଳୀଟିରେ ସ୍ୱପୁତ୍ର ଅଜାତଶତ୍ରୁଙ୍କ ଦ୍ୱାରା ବିମ୍ବିସାର ବନ୍ଦୀ ହୋଇଥିଲେ । ଦ୍ୱିତୀୟ ସ୍ଥଳୀଟି ଯେଉଁ ଆମ୍ରବନ ଥିଲା, ରାଜବୈଦ୍ୟ ଜୀବକ ତାହା ବୁଦ୍ଧଙ୍କୁ ପ୍ରଦାନ କରି ତହିଁରେ ବନବିହାର ନିର୍ମାଣ କରାଇଥିଲେ । ସର୍ବଶେଷରେ ଦର୍ଶକ ଗୃଧ୍ରକୂଟରେ ଆସି ଉପସ୍ଥିତ ହୁଅନ୍ତି । ଏହା ରାଜଗୃହର ପର୍ବତରାଜିର ସର୍ବୋଚ୍ଚ ଶୃଙ୍ଗ । ଏହି

ଶୃଙ୍ଗର ଗୁହାରେ ଅବସ୍ଥାନ କରି ବୁଦ୍ଧଦେବ ଧର୍ମପ୍ରଚାର କରିଥିଲେ । ସେଠାରେ ବର୍ତ୍ତମାନ କେତେକ ବୌଦ୍ଧମୂର୍ତ୍ତି ଓ ବିହାରର ଭଗ୍ନାବଶେଷ ରହିଛି । ଯେଉଁଠାରୁ ବିମ୍ବିସାର ପଦବ୍ରଜରେ ବୁଦ୍ଧଙ୍କ ପାଖକୁ ଯାଇ ଥିଲେ, ସେଠାରେ ଗୋଟିଏ ସ୍ମାରକସ୍ତୂପର ଭଗ୍ନାବଶେଷ ରହିଛି ।

ରାଜଗୃହରେ ବୌଦ୍ଧପୀଠ ବ୍ୟତୀତ ହିନ୍ଦୁ ଓ ଜୈନ ମନ୍ଦିର-ମାନ ମଧ୍ୟ ବିଦ୍ୟମାନ ରହିଛି । ମାତ୍ର ଏହି ପ୍ରାଚୀନ ନଗରୀରେ ଉପସ୍ଥିତ ହେଲେ ଦର୍ଶକର ମନକୁ ବୌଦ୍ଧସ୍ମୃତିହିଁ ବେଶିଭାବରେ ଆଚ୍ଛନ୍ନ କରିପକାଏ । ଯେଉଁ ପରମକାରୁଣିକଙ୍କ ଏହି ଭୂମି ଲୀଳାସ୍ଥଳୀ ଥିଲା, ତାଙ୍କର ମହାବାଣୀ ଦର୍ଶକ ହୃଦୟରେ ଦୂର ବଂଶୀ-ସ୍ୱନ ପରି ବାଜି ଉଠେ । ଆଜି ଏ ସ୍ଥଳୀକି ଆସି ସେହି ମହାବାଣୀକୁ ସ୍ମରଣ କରିବାର ମୋର ପରମଭାଗ୍ୟ ହୋଇଛି । ଏ ଧରଣୀ ସ୍ୱଭାବତଃ କରୁଣାମୟୀ । କରୁଣାଯୋଗୁଁ ସିନା ସଂଖ୍ୟାତୀତ ପ୍ରାଣୀପାଇଁ ଆକାଶରୁ ଅଯାଚିତ ବାରିଧାର ହୁଏ, ପତ୍ରପୁଷ୍ପଫଳରେ ନିଖିଳ ଅବନୀ ପରିପୂର୍ଣ୍ଣ ହୁଏ, ରୁକ୍ଷ ପାଷାଣରୁ ନିର୍ମଳନୀର ଝରି-ପଡ଼େ, ମାତୃସ୍ତନରୁ ସଞ୍ଚରି ଉଠେ ଶିଶୁପାଇଁ କ୍ଷୀର, ମୂକପ୍ରାଣୀ-ଠାରେ ରହେ ଶାବକ ପ୍ରତି ଅସରନ୍ତି ସ୍ନେହ, ଶୁଷ୍କବୀଜରେ ରହେ ଶିଶୁ ଉଦ୍ଭିଦର ଖାଦ୍ୟ ଓ ଦିବସର ପଦଦଳିତ ତୃଣଦଳ ଉପରେ ସୁଦ୍ଧା କରୁଣାମୟୀ ରଜନୀର ଅଶ୍ରୁବିନ୍ଦୁ ଶିଶିରରୂପେ ଦେଖାଦିଏ । କରୁଣା ପ୍ରଚାର କରି କରୁଣାମୟୀ ଧରଣୀର ସନ୍ତାନ ଧନ୍ୟ ହୁଅନ୍ତି ଓ ତାକୁ ମଧ୍ୟ ଧନ୍ୟା କରନ୍ତି । ପ୍ରାଣୀ ପ୍ରତି କରୁଣା ପ୍ରଚାର କରି ପରମ କାରୁଣିକ ଗୌତମ ବୁଦ୍ଧ ଧନ୍ୟ ହୋଇଛନ୍ତି, ଏ ଧରଣୀକୁ ଧନ୍ୟା କରିଛନ୍ତି । ତାଙ୍କ ପାବନସ୍ପର୍ଶରେ ଆସି ମଗଧର ଏହି ପ୍ରାଚୀନ ରାଜଧାନୀ ମଧ୍ୟ ଧନ୍ୟା ହୋଇଛି ।

---

# ପୁରାଣର ନାରୀ

ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ

କୌଣସି ଦେଶକୁ ବୁଝିବାକୁ ହେଲେ ତାହାର ବର୍ତ୍ତମାନ ଅବସ୍ଥା ଆଲୋଚନା କରିବା ଯେପରି, ସେହିପରି ତାହାର ଅତୀତ ସଙ୍ଗେ ପରିଚିତ ହେବା ମଧ୍ୟ ଆବଶ୍ୟକ । ପ୍ରତି ମନୁଷ୍ୟର ଜୀବନ ତାହାର ବାଲ୍ୟ ଏବଂ ଯୌବନର ଅବସ୍ଥା ଓ କାର୍ଯ୍ୟ ସଙ୍ଗେ ଜଡ଼ିତ; ପ୍ରତି ସମାଜ ମଧ୍ୟ ସେହିପରି ଅତୀତ ଉପରେ ଗଢ଼ା ହୋଇଥାଏ । ଭାରତବର୍ଷର ପୁରାଣ-ଇତିହାସରୁ ଏହି ଅତୀତ ସମାଜର ଚିତ୍ର ଆମ୍ଭେମାନେ ପାଇଥାଉଁ । ପୁରାଣ-ଭାରତରେ ପୁରୁଷ ପରି ନାରୀର ପ୍ରତିଭା ମଧ୍ୟ ନାନା ବିଭାଗରେ ବିକଶିତ ହୋଇଥିବାର ପ୍ରମାଣ ମିଳେ । ଭାରତୀୟ ନାରୀ ଯେ କେବଳ ହାଣ୍ଡିଶାଳ ପାଇଁ ଉପଯୁକ୍ତ ନୁହେ, ଏ ଦେଶର ବହୁ କାବ୍ୟ, ପୁରାଣ ଓ ଇତିହାସ ସେ କଥାର ସାକ୍ଷ୍ୟ ଦେଇଥାଏ ।

ଭାରତର ଇତିହାସ ଯେପରି ରାଜପୁତଲଳନା ପଦ୍ମିନୀଙ୍କର ସାହସ ଓ ପତିଭକ୍ତି ପାଇଁ ଗର୍ବିତ, ସେହିପରି ତାହା ଲୀଳାବତୀଙ୍କର ଅଙ୍କଶାସ୍ତ୍ରରେ ପାଣ୍ଡିତ୍ୟ କିମ୍ବା ମୋଗଲ ସମ୍ରାଟ୍ ବାବରକନ୍ୟା ଗୁଲ୍ ବଦନ ବା ଔରଙ୍ଗଜେବ-ଦୁହିତା ଜେବ୍-ଉନ୍ନିସାଙ୍କର ଗଭୀର ସାହିତ୍ୟାନୁରାଗ ଯୋଗୁଁ ଉଜ୍ଜ୍ୱଳ ହୋଇ ଉଠିଅଛି । ଭାରତୀୟ କାବ୍ୟପୁରାଣ ମଧ୍ୟ ସୀତାଙ୍କର ସତୀତ୍ୱ, ସାବିତ୍ରୀଙ୍କର ପାତିବ୍ରତ୍ୟ, ଉମାଙ୍କର ତପସ୍ୟା, ସୁଜାତାଙ୍କର ଧର୍ମନିଷ୍ଠା କିମ୍ବା ଶକୁନ୍ତଳାଙ୍କ ରୂପଗୁଣ ଆଦି ବହୁ ଉପାଖ୍ୟାନରେ ପୂର୍ଣ୍ଣ । ପାଣ୍ଡିତ୍ୟ ବା ଶାସ୍ତ୍ରଜ୍ଞାନରେ ନାରୀର ଆସନ ଯେ ଅତି ଉଚ୍ଚରେ ପ୍ରତିଷ୍ଠିତ ଥିଲା, ପୌରାଣିକ ଭାରତରେ ସେଭଳି ଉଦା-

ହରଣର ଅଭାବ ନାହିଁ । ମୈତ୍ରେୟୀ, ଗାର୍ଗୀ ବା ମଦାଳସାଙ୍କର ଉପାଖ୍ୟାନ ଏହାର ଯଥେଷ୍ଟ ପରିଚୟ ଦେଇଥାଏ ।

ବିକ୍ରମାଦିତ୍ୟଙ୍କ ସଭାକୁ କାଳିଦାସ ପ୍ରଭୃତି ନବରତ୍ନ ଯେପରି ମଣ୍ଡିତ କରିଥିଲେ, ପୌରାଣିକ ଯୁଗରେ ମଧ୍ୟ ସୁପଣ୍ଡିତ ଅଧ୍ୟାପକ-ମାନଙ୍କୁ ଉତ୍ସାହ ଦେବାପାଇଁ ରାଜଦରବାର ସେହିପରି ଉନ୍ମୁକ୍ତ ଥିଲା । ମହାନୁଭବ ପ୍ରାଚୀନ ରାଜାମାନଙ୍କ ସଭାରେ ପଣ୍ଡିତ ପଣ୍ଡିତ ମଧ୍ୟରେ ଶାସ୍ତ୍ର ବିଷୟରେ ବିଚାର ହୁଏ ଏବଂ ସେଥିରେ ଯେ ଜୟଲାଭ କରନ୍ତି, ରାଜାଙ୍କ ଦ୍ୱାରା ସେ ବିଶେଷ ପୁରସ୍କୃତ ହୁଅନ୍ତି । ରାଜର୍ଷି ଜନକଙ୍କ ସଭାରେ ଏହିପରି ଥରେ ବିଚାର ହୋଇଥିଲା ଏବଂ ମହାପଣ୍ଡିତ ଯାଜ୍ଞବଲ୍କ୍ୟ ସବୁ ପ୍ରଶ୍ନର ଉତ୍ତର ଦେଇ ପୁରସ୍କାର ସ୍ୱରୂପ ଦଶହଜାର ଗାଈ ଜନକଙ୍କଠାରୁ ପାଇଥିଲେ । ଏହି ଗାଈଗୁଡ଼ିକର ପ୍ରତି ଶିଙ୍ଗରେ ଦଶଟି ଲେଖାଏଁ ସୁନା ମୋହର ବନ୍ଧା ହୋଇଥିଲା । ହୋତାଅଶ୍ୱଳ, ଆର୍ତ୍ତଭାଗ, ଭୁଜ୍ୟଲାହ୍ୟାୟନ, ଉଷସ୍ତଚାକ୍ରାୟଣ, କହୋଳ, କୌଶିତକେୟ, ଉଦ୍ଦାଳକ ଏବଂ ଆରୁଣି ପ୍ରଭୃତି ଭାରତର ଶ୍ରେଷ୍ଠ ମନୀଷୀଗଣ ଯାଜ୍ଞବଲ୍କ୍ୟଙ୍କ ଦ୍ୱାରା ପରାସ୍ତ ହୋଇଥିଲେ ।

ଏହି ସମୟରେ ଜଣେ ବିଦୁଷୀ ମହିଳା, ସଭାମଧ୍ୟରେ ଦଣ୍ଡାୟ-ମାନା ହେଲେ । ସେ ଯୁଗରେ ଭାରତୀୟ ନାରୀର ଯେ ଅବରୋଧ ପ୍ରଥା ନ ଥିଲା, ଏହି ଘଟଣାହିଁ ତାହାର ସୁସ୍ପଷ୍ଟ ପ୍ରମାଣ । କାରଣ ସଭା ମଧ୍ୟରେ ଏହି ରମଣୀଙ୍କୁ ଦେଖି କେହି ସଭାସଦ୍ ବିଚଳିତ ବା ଆଶ୍ଚର୍ଯ୍ୟ ହେବା କଥା ପୁରାଣରେ ଉଲ୍ଲେଖ ନାହିଁ । ଏହି ମହୀୟସୀ ମହିଳାଙ୍କର ନାମ ଗାର୍ଗୀ । ସମଗ୍ର ବେଦଶାସ୍ତ୍ରରେ ସେ ସୁପଣ୍ଡିତା ଥିଲେ । ଯାଜ୍ଞବଲ୍କ୍ୟଙ୍କୁ ସେ କହିଲେ, "ମୁଁ ଆପଣଙ୍କ ସଙ୍ଗେ ଶାସ୍ତ୍ରଯୁଦ୍ଧ କରିବାକୁ ଆସିଅଛି । ମୋ ପ୍ରଶ୍ନର ଉତ୍ତର ଦିଅନ୍ତୁ ।"

ତତ୍ପରେ ସେ ଦୁଇଟି ଦୁରୂହ ପ୍ରଶ୍ନ କଲେ ଏବଂ ଯାଜ୍ଞବଲ୍କ୍ୟ ମଧ୍ୟ ଅବଲୀଳାକ୍ରମେ ସେ ପ୍ରଶ୍ନର ମୀମାଂସା କରିଦେଲେ । ଯାଜ୍ଞବଲ୍କ୍ୟଙ୍କ ନିକଟରେ ପରାସ୍ତ ହେଲେ ମଧ୍ୟ ଗାର୍ଗୀ ଜନକସଭାରେ ସମ୍ମାନିତା ହୋଇଥିଲେ ଏବଂ ସ୍ୱୀୟ ଜ୍ଞାନ ଓ ପାଣ୍ଡିତ୍ୟ ବଳରେ ପ୍ରାଚୀନ ଭାରତର ଶ୍ରେଷ୍ଠ ମନୀଷୀମାନଙ୍କ ମଧ୍ୟରେ ତାଙ୍କର ସ୍ଥାନ ସୁପ୍ରତିଷ୍ଠିତ ।

ମହାଯଶା ଯାଜ୍ଞବଲ୍କ୍ୟଙ୍କର ପତ୍ନୀ ମୈତ୍ରେୟୀ ମଧ୍ୟ ପରମ ବିଦୁଷୀ ଥିଲେ । ସେକାଳର ପଣ୍ଡିତମାନେ ଗୃହସ୍ଥାଶ୍ରମ ପରେ ସଂସାର ତ୍ୟାଗ କରି ସନ୍ନ୍ୟାସ ଗ୍ରହଣ କରୁଥିଲେ । ଯାଜ୍ଞବଲ୍କ୍ୟ ଗୃହତ୍ୟାଗ କରି ଯିବା ସମୟରେ ମୈତ୍ରେୟୀଙ୍କୁ କହିଲେ, "ଆର୍ଯ୍ୟେ ! ମୁଁ ବର୍ତ୍ତମାନ ସନ୍ନ୍ୟାସ କରିବାକୁ ବାହାରିଲି । ମୋହର ଉପାର୍ଜିତ ସବୁ ଧନରତ୍ନ ତୁମକୁ ଦେଇଯାଉଛି । ତୁମେ ଏହି ସମସ୍ତ ନେଇ ସୁଖରେ ରହ ।" ପରମ ବିଦୁଷୀ ମୈତ୍ରେୟୀ ସେତେବେଳେ ସ୍ୱାମୀଙ୍କୁ ପ୍ରଶ୍ନ କଲେ, "ଏହି ସବୁ ଧନରତ୍ନ ନେଇ ମୁଁ କ'ଣ ଅମୃତର ସନ୍ଧାନ ପାଇବି ?" ଯାଜ୍ଞବଲ୍କ୍ୟ ଉତ୍ତର ଦେଲେ, "ନା, ସେ ସନ୍ଧାନ ତୁମେ ପାରିବ ନାହିଁ ସତ; କିନ୍ତୁ ସାଧାରଣ ଧନଶାଳୀ ଲୋକେ ଯେପରି ସୁଖ ସ୍ୱାଚ୍ଛନ୍ଦ୍ୟରେ ରହନ୍ତି, ତୁମେ ମଧ୍ୟ ସେହିପରି ରହିପାରିବ ।" ମୈତ୍ରେୟୀ କହିଲେ, "ଯହିଁରେ ମୁଁ ଅମୃତର ସନ୍ଧାନ ପାଇବି ନାହିଁ, ସେ ସବୁ ଧନରତ୍ନ ନେଇ ମୁଁ କରିବି କ'ଣ ? ନା, ନା, ଏ ସମସ୍ତ ମୋର ଲୋଡ଼ା ନାହିଁ । ଯହିଁରେ ସର୍ବଶ୍ରେଷ୍ଠ ଆନନ୍ଦର ଉପଲବ୍ଧି ହୁଏ, ତାହାହିଁ ମୋତେ ଦାନ କର ।" ସେତେବେଳେ ମୈତ୍ରେୟୀ ବ୍ରହ୍ମ ଉପଦେଶ ପାଇବାକୁ ଯୋଗ୍ୟତା ଅର୍ଜନ କରିଥିବାର ବୁଝିପାରି ଯାଜ୍ଞବଲ୍କ୍ୟ ପତ୍ନୀଙ୍କ ନିକଟରେ ତାହା ବ୍ୟାଖ୍ୟାନ କଲେ । ଯାଜ୍ଞବଲ୍କ୍ୟଙ୍କର ଏହିସବୁ ଉପଦେଶ ବୃହଦାରଣ୍ୟକ ଉପନିଷଦରେ ଲିପିବଦ୍ଧ

ହୋଇଅଛି । ଏହି ଉପଦେଶ ଗୁଡ଼ିକୁ ଆବୃତ୍ତି କରି ମୈତ୍ରେୟୀ ସ୍ୱୀୟ ଜ୍ଞାନ ଏବଂ ପାଣ୍ଡିତ୍ୟର ପରାକାଷ୍ଠା ଦେଖାଇଅଛନ୍ତି ।

ମାର୍କଣ୍ଡେୟ ପୁରାଣର ମଦାଳସା ମଧ୍ୟ ଜଣେ ମହୀୟସୀ ଲଳନା ଥିଲେ । ତାଙ୍କ ପରି ବିଦୁଷୀ ଓ ମନସ୍ୱିନୀ ନାରୀର ତୁଳନା ଅଳ୍ପ ଦେଖାଯାଏ । ଗନ୍ଧର୍ବରାଜ ବିଶ୍ୱକେତୁଙ୍କର କନ୍ୟା ମଦାଳସା ବାଲ୍ୟବୟସରୁ ହିଁ ଉପଯୁକ୍ତ ଶିକ୍ଷା ଲାଭ କରି ସକଳ ଶାସ୍ତ୍ରରେ ପଣ୍ଡିତା ଥିଲେ । ତାଙ୍କ ସହିତ ଶତ୍ରୁଜିତ୍ ରାଜାଙ୍କର ପୁତ୍ର ଋତୁଧ୍ୱଜଙ୍କର ବିବାହ ହୋଇଥିଲା । ମଦାଳସାଙ୍କର ପ୍ରଥମ ସନ୍ତାନଟି ପୁତ୍ର ହେବାର ଦେଖି ରାଜା ଋତୁଧ୍ୱଜଙ୍କର ଆନନ୍ଦର ସୀମା ରହିଲା ନାହିଁ । ରାଜବଂଶର ଭାବୀ ଉତ୍ତରାଧିକାରୀଙ୍କର ଅଭ୍ୟର୍ଥନା ପାଇଁ ରାଜନଗରରେ ଏବଂ ରାଜ୍ୟମୟ ମହାସମାରୋହରେ ଉତ୍ସବ ପାଳିତ ହେଲା । ବୀରତ୍ୱ ହିଁ କ୍ଷତ୍ରିୟ ରାଜାମାନଙ୍କର ଏକାନ୍ତ ଆଦର୍ଶ । ତେଣୁ ରାଜା ପୁତ୍ରର ନାମ ଦେଲେ ବିକ୍ରାନ୍ତ; କିନ୍ତୁ ସ୍ୱାମୀଙ୍କ ମୁଖରୁ ପୁତ୍ରର ଏହି ନାମ ଶୁଣି ମଦାଳସା ହସି ଉଠିଲେ । ସେ କାଳରେ ଜନନୀଠାରେ ହିଁ ଶିଶୁର ପ୍ରଥମ ଶିକ୍ଷାଭାର ନ୍ୟସ୍ତ ଥିଲା । ପୁତ୍ରର ଜ୍ଞାନୋଦୟ ପୂର୍ବରୁ ହିଁ ମଦାଳସା ତାକୁ ଶିକ୍ଷା ଦେବାକୁ ଲାଗିଲେ, "ତୋହର ନାମ ବିକ୍ରାନ୍ତ ରଖାଯାଇଅଛି, କିନ୍ତୁ ଅନ୍ୟଦ୍ୱାରା ପ୍ରଦତ୍ତ ନାମର କୌଣସି ସାର୍ଥକତା ନାହିଁ । ଆତ୍ମା ହିଁ ଯଥାର୍ଥ ସତ୍ୟ ବସ୍ତୁ; ଦେହ ଏବଂ ନାମ କଳ୍ପିତ ଓ ମିଥ୍ୟା । ମନୁଷ୍ୟ ଶୁଭ ଓ ଅଶୁଭ ନାନା କର୍ମ କରେ ବୋଲି ତାହାକୁ ଜନ୍ମଗ୍ରହଣ କରିବାକୁ ହୁଏ । ପିତା, ମାତା, ଆତ୍ମୀୟ; ଅନାତ୍ମୀୟ କାହାର ପ୍ରତି ଆସକ୍ତ ହୁଅ ନାହିଁ । ସୁଖ ଦୁଃଖ ଆଦି କୌଣସି ଅବସ୍ଥାରେ ଅଭିଭୂତ ହେବା ଉଚିତ ନୁହେ ।"

ବିଦୁଷୀ ମାଙ୍କଠାରୁ ସବୁବେଳେ ଏହିପରି ଉପଦେଶ ପାଇ ପୁତ୍ରର ମନ ସଂସାରରେ ଲାଗିଲା ନାହିଁ । ରାଜସିଂହାସନଠାରୁ ବୈରାଗ୍ୟକୁ ନିଶ୍ଚାନ୍ତ ବଡ଼ ମନେକଲେ । ତାହା ପରେ ମଦାଳସା-ଙ୍କର ଦ୍ୱିତୀୟ ପୁତ୍ର ଜାତ ହେଲାରୁ ରାଜା ଋତୁଧ୍ୱଜ ତାହାର ନାମ ସୁବାହୁ ଏବଂ ତୃତୀୟ ପୁତ୍ରର ନାମ ଶତ୍ରୁମର୍ଦ୍ଦନ ରଖିଥିଲେ । ସେମାନଙ୍କର ନାମକରଣ ଶୁଣି ମଧ୍ୟ ମଦାଳସା ଉପହାସ କଲେ । ବାଲ୍ୟ ବୟସରୁ ସେମାନେ ଜନନୀଙ୍କଠାରୁ ଆତ୍ମଜ୍ଞାନ ପାଇ ସଂସାରକୁ ମାୟାମୟ ଓ ମିଥ୍ୟା ଜ୍ଞାନ କଲେ ଏବଂ ରାଜଭବନ ଛାଡ଼ି ତପସ୍ୟା କରିବା ପାଇଁ ବନକୁ ପ୍ରସ୍ଥାନ କଲେ ।

ଏହା ଦେଖି ରାଜାଙ୍କ ମନରେ ବଡ଼ ବିଷାଦ ଜାତ ହେଲା । ତାଙ୍କର ସବୁ ସନ୍ତାନ ଯଦି ଏହିପରି ବନବାସୀ ହୁଅନ୍ତି, ତାହା-ହେଲେ ରାଜଗାଦିରେ ବସିବ କିଏ ଏବଂ ରାଜ୍ୟରକ୍ଷା ହେବ କିପରି ? ନାରୀର ଜ୍ଞାନ ଓ ପାଣ୍ଡିତ୍ୟ ନିକଟରେ ପୁରୁଷର ଶୌର୍ଯ୍ୟ, ବୀର୍ଯ୍ୟ, ଦମ୍ଭ ଏବଂ ଅଭିମାନ ପରାଜିତ ହେଲା । ତେଣୁ ଚତୁର୍ଥ ପୁତ୍ରର ଜନ୍ମ ହେବାପରେ ରାଜା ମଦାଳସାଙ୍କୁ ମିନତି କଲେ, ମୁଁ ସବୁ ପୁଅଙ୍କର ବାଛି ବାଛି ଯେତେ ନାମ ଦେଲି, ସବୁ ନାମକୁ ତୁମେ ଉପହାସ କଲ । ଏଥର ମୁଁ ଆଉ ନାମ ଦେବି ନାହିଁ, ତୁମେ ନିଜେ ଦିଅ ।”

ମଦାଳସା ପୁଅର ନାମ ରଖିଲେ 'ଅଳର୍କ' ଅର୍ଥାତ୍ ବାୟା କୁକ୍କୁର ! ରାଜା ନିଜ ସନ୍ତାନର ଏପରି ନୀଚ ନାମ ଦେଖି ବଡ଼ ବିଚଳିତ ହୋଇପଡ଼ିଲେ ଏବଂ ମହାଦୁଃଖରେ ମଦାଳସାଙ୍କୁ କହିଲେ, “ରାଣି, ଏହାକୁହିଁ ତୁମେ ମୋର ବଂଶଧରର ଉପଯୁକ୍ତ ନାମ ବୋଲି ବାଛିଲ ?”

ହସି ହସି ମଦାଳସା ଉତ୍ତର ଦେଲେ, "ମହାରାଜ । ତୁମର ବଂଶମର୍ଯ୍ୟାଦା ଓ ଉପାଧି ପାଇଁ ତୁମେ ବିବାଦୀ କୁକ୍କୁରଠାରୁ ମଧ୍ୟ ବେଶି ବାଧ୍ୟ ହୋଇ ଦେଉଛ । ସଂସାରରେ ଅଧିକାଂଶ ବ୍ୟକ୍ତି ଏହି ନାମ ଏବଂ ଉପାଧି ଲାଳସାରେ ପାଗଳା କୁକ୍କୁରଠାରୁ ଅଧିକ ହୀନ ହୋଇ ପଡ଼ୁଛନ୍ତି । ମୋ ସନ୍ତାନର ନାମକରଣ ଜଗତର ଉପାଧିପ୍ରିୟ, ଅସତ୍ୟ, କୁଟିଳପ୍ରକୃତି ଲୋକଙ୍କ ବିରୁଦ୍ଧରେ ଗୋଟାଏ ଜବାବ । ନାମ ବା ଉପାଧି ମନୁଷ୍ୟର ସତ୍ୟ ପ୍ରକୃତିକୁ ଗୋପନ କରେ । ଚଣ୍ଡାଳ ନରପିଶାଚକୁ ମଧ୍ୟ ଉଚ୍ଚ ଉପାଧିରେ ଭୂଷିତ ହେବାର ଦେଖାଯାଏ । ସୁତରାଂ ନାମ ଯାହା ହେଉ ପଛକେ, ସେଥିରେ ଯାଏ ଆସେ କେତେ ? ବରଂ ଖରାପ ନାମଟିଏ ହେଲେ 'ପୁତ୍ରର ସେହି ନାମ ପ୍ରତି କୌଣସି ମମତା ରହିବ ନାହିଁ । ସେ ଅଳ୍ପ ଅହଙ୍କାରୀ ହେବ ଏବଂ ପ୍ରକୃତ ଜ୍ଞାନଲାଭ କରିବା ତାହା ପକ୍ଷରେ ସହଜ ହୋଇ ପାରିବ ।"

ରାଣୀଙ୍କର କଥାଗୁଡ଼ିକ ହୃଦୟଙ୍ଗମ କରି ଋତୁଧ୍ୱଜ କହିଲେ, "ତୁମେ ଯାହା କହୁଛ, ତାହା ଯଥାର୍ଥ ସତ୍ୟ; କିନ୍ତୁ ରାଜା ଯଦି ସମ୍ପୂର୍ଣ୍ଣ ନିରହଙ୍କାର ହୁଏ, ତାହାହେଲେ ରାଜ୍ୟରକ୍ଷା ଅସମ୍ଭବ । ମୋର ଜଣେ ମାତ୍ର ପୁତ୍ର ରାଜ୍ୟପାଳନ କରିବାକୁ ଉପଯୁକ୍ତ ହେବା ତ ଦରକାର । ସେଥିପାଇଁ ମୋହର ଅନୁରୋଧ, ରାଣି, ତୁମେ ଆଉ ଏ ସନ୍ତାନଟିକୁ ସନ୍ନ୍ୟାସୀ କରିଦିଅ ନାହିଁ । ବରଂ ଏହାକୁ ଏପରି ଭାବରେ ଲେଖାପଢ଼ା ଶିଖାଅ, ଯହିଁରେ ସେ ପରାକ୍ରମଶାଳୀ ଆଦର୍ଶ ରାଜା ହୋଇପାରେ ।"

ମଦାଳସା ସ୍ୱାମୀଙ୍କ ଅନୁରୋଧର ଔଚିତ୍ୟ ସ୍ୱୀକାର କଲେ । ସକଳ ବିଦ୍ୟାରେ ସେ ସୁପଣ୍ଡିତା ଥିଲେ, ସୁତରାଂ ପୁତ୍ର ଅଳର୍କକୁ

ତତ୍ତ୍ୱ ଜ୍ଞାନ ନ ଦେଇ ଶାସ୍ତ୍ରାନୁଶାସ୍ତ୍ରୋକ୍ତ ଚାରିଗୋଟି ଆଶ୍ରମ ମଧ୍ୟରୁ ପ୍ରଥମେ ବ୍ରହ୍ମଚର୍ଯ୍ୟ ଓ ପରେ ଗାର୍ହସ୍ଥ୍ୟଧର୍ମ ଶିକ୍ଷା ଦେଲେ । ରାଜପୁତ୍ର ଅଳର୍କଙ୍କୁ ବ୍ରହ୍ମଚର୍ଯ୍ୟର କଠୋର ଅନୁଶାସନଗୁଡ଼ିକ ପାଳିବାକୁ ହେଲା । ରାଜପ୍ରାସାଦର ବିଳାସ ଏବଂ ଐଶ୍ୱର୍ଯ୍ୟ ମଧ୍ୟରେ ରହି ମଧ୍ୟ ତହିଁରେ ଅନାସକ୍ତ ହୋଇ ତାଙ୍କର ଜୀବନ ଗଠିତ ହେଲା । ଆଦର୍ଶ ଗୃହସ୍ଥ ହେବାପାଇଁ ପରିବାର, ଭୃତ୍ୟ ଓ ପ୍ରଜାମାନଙ୍କୁ କିପରି ଭାବରେ ଦେଖିବାକୁ ହେବ, କିପରି ରାଜ୍ୟର ଶାସନ ଓ ପ୍ରଜାପାଳନ କରିବାକୁ ହେବ, ସେ ସମସ୍ତ ଅଳର୍କ ମାଙ୍କଠାରୁ ହିଁ ଶିଖି ପାରିଥିଲେ ।

ପୁତ୍ର ବଡ଼ ହେବାରୁ ମଦାଳସା ତାଙ୍କୁ ରାଜଧର୍ମ ଓ ରାଜନୀତି ଶିକ୍ଷା ଦେଲେ । ଭାରତର ମହିଳାଙ୍କଠାରୁ ଜଣେ ରାଜପୁତ୍ର ଦିନେ ରାଜନୀତି ଶିକ୍ଷାକରି ଆଦର୍ଶ ରାଜା ହୋଇଥିଲେ, ଏ କଥାରେ ବିଶ୍ୱାସ କରିବା ମଧ୍ୟ ଆଜି କଠିନ ହୋଇ ପଡ଼ୁଅଛି । ପୁରାଣ କଥା ସତ କି ମିଛ, ଏଠାରେ ତାହାର ଆଲୋଚନା କରା ହେଉ ନାହିଁ; କିନ୍ତୁ ପୌରାଣିକ ଯୁଗରେ ନାରୀର ଆଦର୍ଶ ଏତେଦୂର ଉଚ୍ଚ ଉଜ୍ଜ୍ୱଳ ଥିଲା, ସେଥିରେ ତ ସନ୍ଦେହ ପାଇଁ ଅବକାଶ ନାହିଁ ।

---

# ସାବିତ୍ରୀ ଉପବାସ

## ୬ ଦିବ୍ୟସିଂହ ପାଣିଗ୍ରାହୀ

ହରିଶଙ୍କର ମିଶ୍ରେ ଜଣେ ସଚ୍ଚରିତ୍ର କୁଳୀନ ବ୍ରାହ୍ମଣ । ଘର ରାମଚନ୍ଦ୍ରପୁର ଶାସନରେ । ମିଶ୍ରେ ବଡ଼ ଅମାୟିକ । ତାଙ୍କ ପିତା ମଧ୍ୟ ଅମାୟିକ ଥିଲେ । ଗ୍ରାମରେ ଓ ଗ୍ରାମ ନିକଟରେ ଭୂସମ୍ପତ୍ତି ଖୁବ୍ ଥିଲା, ମୟୂରଭଞ୍ଜରେ ମଧ୍ୟ ରାଜଦତ୍ତ ଲାଖରାଜ ବୃତ୍ତି କେତେକ ଥିଲା । ହରିଶଙ୍କରଙ୍କ ପିତା ଭାଇମାନଙ୍କଠାରୁ ପୃଥକ୍ ହେବାବେଳେ ଜମି ବଣ୍ଟାରେ କିଛିମାତ୍ର ଆପତ୍ତି କରି ନ ଥିଲେ । ଭାଇମାନଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭର କରି ରହିଲେ । ଫଳରେ ଏହି ହେଲା ଯେ, ଗ୍ରାମରେ ଘରଡିହ ଖଣ୍ଡ ଛଡ଼ା ଅନ୍ୟ କୌଣସି ଭୂସମ୍ପତ୍ତି ହରିଶଙ୍କରଙ୍କ ପିତାଙ୍କ ଭାଗ୍ୟରେ ପଡ଼ି ନ ଥିଲା । ତାଙ୍କ ଅଂଶରେ ମୟୂରଭଞ୍ଜ ଜମିତକ ପଡ଼ିଥିଲା । ଏହାପରେ ବଣ୍ଟାପତ୍ର ରେଜେଷ୍ଟ୍ରୀ ହୋଇଗଲା । ବର୍ତ୍ତମାନ ହରିଶଙ୍କରଙ୍କ ଭାଗ୍ୟରେ ଜମି ମଧ୍ୟରେ କେବଳ ମୟୂରଭଞ୍ଜ ଜମିତକ । ମନୁଷ୍ୟ ଅନ୍ୟର ଅନିଷ୍ଟ କରିବାକୁ ଯାଇ ଯାହା କରେ, ଅନେକ ସମୟରେ ତାହା ମଙ୍ଗଳକର ହୋଇଥାଏ । ହରିଶଙ୍କରଙ୍କ ପ୍ରକୃତିକୁ ଗ୍ରାମରେ ବା ଗ୍ରାମ ନିକଟରେ ଜମି ନ ଥିବା ସୁଖକର ହୋଇଅଛି । ବର୍ଷକେ ଥରେ ମାତ୍ର ଜ୍ୟେଷ୍ଠମାସରେ ମୟୂରଭଞ୍ଜ ଯାଇ ରୟତମାନଙ୍କଠାରୁ ଫସଲ ଆଦାୟ ଓ ତାହା ବିକ୍ରୟ କରି ଟଙ୍କା ନେଇ ଆସନ୍ତି । ତହିଁରେ ଯଥାତଥା ବର୍ଷକ ଏକପ୍ରକାର ସୁଖରେ ଚାଲିଯାଏ ।

ହରିଶଙ୍କରଙ୍କୁ କଳଷଠା ଷାଠିଏ ପାଖ ଛୁଇଁଲାଣି । ଏ ମଧ୍ୟରେ ତିନିଗୋଟି ପୁତ୍ର-ସନ୍ତାନ ହୋଇ ନଷ୍ଟ ହୋଇଅଛନ୍ତି । ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ଅଭେଦ୍ୟ ପ୍ରୀତି; ପ୍ରାୟ ସର୍ବଦା ଘର ମଧ୍ୟରେ ବସି ରହି-ଥାଆନ୍ତି । ପୁତ୍ର ଶୋକର ଅସହ୍ୟ ବେଦନା ସେମାନଙ୍କୁ ବ୍ୟତିବ୍ୟସ୍ତ କରିପାରେ ନାହିଁ । ଭବିଷ୍ୟତ ସନ୍ତାନ ଆଶା ପରିତ୍ୟାଗ କରି ଦିଓଟି ପ୍ରାଣୀ ସୁଖ ଦୁଃଖ ବାଣ୍ଟାକୁଣ୍ଟା କରି ନେଇ ବସି ରହିଥାନ୍ତି । ମିଶ୍ରେ ମୟୂରଭଞ୍ଜ ଯିବା ଛଡ଼ା ଅନ୍ୟ ସମୟରେ ଘର ଛାଡ଼ି କୁଣିଆ ଘର ପର୍ଯ୍ୟନ୍ତ ଯାଆନ୍ତି ନାହିଁ ।

କେଉଁ ଭାଗ୍ୟରୁ ଏତେ ବୟସରେ ତାଙ୍କର ଗୋଟିଏ ଅପୂର୍ବ ସୁନ୍ଦରୀ କନ୍ୟା ଜନ୍ମ ହୋଇଅଛି । ବାଛି ବାଛି ନାମ ଦେଲେ ନଳିନୀ । କନ୍ୟାଟିକୁ ଦୁଇବର୍ଷ ସମୟରେ ମିଶ୍ରଙ୍କ ସହଧର୍ମିଣୀ ଇହସଂସାର ଛାଡ଼ି ଚାଲିଗଲେ । ହରିଶଙ୍କରଙ୍କୁ ଦଶଦିଗ ଅନ୍ଧକାର ଦେଖାଗଲା । ସଂସାରର ସମସ୍ତ ଦୁଶ୍ଚିନ୍ତା, ଅତୀତ ପୁତ୍ରଶୋକ ଯାତନା ଘନୀଭୂତ ହୋଇ ହୃଦୟ ମନ ଦଗ୍ଧ କଲା । ଝିଅଟିକୁ ଦେଖିଲେ ନିଜ ସ୍ତ୍ରୀଙ୍କ ମୂର୍ତ୍ତି ଯେପରି ଆଗରେ ଠିଆ ହୋଇ ଯାଉଅଛି ।

ସ୍ତ୍ରୀ ଥିବାବେଳେ ନଳିନୀକୁ ମିଶ୍ରେ ମୋଟେ ଲକ୍ଷ୍ୟ କରି ନଥିଲେ । ବିଶେଷତଃ ଏତେଗୁଡ଼ିଏ ସନ୍ତାନ ମୃତ ହୋଇଥିବାରୁ ଏ କନ୍ୟାଟି ଯେ ବଞ୍ଚିବ, ତାହା ସେ ମନରେ ସ୍ଥାନ ଦେଇ ନ ଥିଲେ । ସ୍ତ୍ରୀ ମରିଯିବାରୁ କନ୍ୟାଠାରେ ସ୍ତ୍ରୀଙ୍କ ମୂର୍ତ୍ତିର ବିଶେଷ ସାମଞ୍ଜସ୍ୟ ଦେଖି, ତାଙ୍କ ସ୍ମୃତିରକ୍ଷାର ଏକମାତ୍ର ଉପଯୁକ୍ତ ଉପାଦାନ ଦେଖାଗଲା ସେହି କନ୍ୟାଟି । ମିଶ୍ରଙ୍କ ହୃଦୟର ସମସ୍ତ ସ୍ନେହ ଏହି ବାଳିକାଟି ଉପରେ ଯେପରି ଢାଳି ହୋଇଗଲା । ଶୋକ ପରିତ୍ୟାଗ କରି କନ୍ୟାଟିର ଲାଳନପାଳନ ବିଷୟରେ ମନ ଲଗାଇଲେ ।

ପିଲ୍ଲଟିର ସମସ୍ତ କାର୍ଯ୍ୟ ନିଜ ହସ୍ତରେ ଅତି ଆନନ୍ଦରେ ନିର୍ବାହ କରିବାକୁ ଲାଗିଲେ । ମୟୂରଭଞ୍ଜ ଯିବା ସମୟରେ ମଧ୍ୟ କନ୍ୟାଟିକୁ ସଙ୍ଗରେ ନେଇଯାନ୍ତି । କେତେବେଳେ ପାଖଛଡ଼ା କରନ୍ତି ନାହିଁ ।

ଏହିପରି କନ୍ୟାଟି ଅତି ଆଦରରେ ବଢ଼ିବାକୁ ଲାଗିଲା । ହରିଶଙ୍କର ଆଜିକାଲି ସମସ୍ତ ଦୁଃଖ ଭୁଲି ଅଛନ୍ତି । ସ୍ତ୍ରୀ ବିଦ୍ୟମାନ ଥିଲେ ଏତେବେଳେ କନ୍ୟାଟିକୁ ଦେଖି କେତେ ଖୁସି ହୋଇ ନ ଥାନ୍ତେ, ଏହି କଥା ମନେ ପଡ଼ିଲା ବେଳେ ମନଟା ଟିକିଏ ଖାଣ୍ଡି ହୁଏ । ଏହିପରି ଦିନ ଯିବାକୁ ଲାଗିଲା । ନଳମଣିର ବିବାହ ବୟସ ଆସି ହେଲା । ହରିଶଙ୍କର ଇଚ୍ଛାନୁସାରେ ଜ୍ୱାଇଁଟିଏ କିପରି ପାଇବେ । ଏହି ଅଭିପ୍ରାୟରେ ଦୁଇତିନିଜଣ ମଧ୍ୟସ୍ଥଙ୍କୁ ନିଯୁକ୍ତ କଲେ । ଅନେକ ଜାଗାରୁ ସମ୍ବନ୍ଧ ଆସିଲା । ମିଶ୍ରଙ୍କ ମନକୁ ନ ପାଇବାରୁ ଓ କୋଷ୍ଠି ନ ଶୁଝିବାରୁ କେତେ ଜାଗା ଭାଙ୍ଗିଗଲା ।

ଗୋଟିଏ ଜାଗାରେ ମିଶ୍ରଙ୍କ ମନ ମାନିଅଛି । ମେଳକ ବୁଝାଗଲା—କିଛି ଦୋଷ ନାହିଁ । ମିଶ୍ରଙ୍କ ଗ୍ରାମଠାରୁ ପ୍ରାୟ ପାଞ୍ଚକୋଶ ଦୂର ଗୋବିନ୍ଦପୁରରେ ସମ୍ବନ୍ଧ ସ୍ଥିର ହୋଇଅଛି । ଜ୍ୱାଇଁଟି ଶିକ୍ଷିତ । ଏଣ୍ଟ୍ରାନ୍ସ ପାସ କରି ଏଫ୍. ଏ. ପଢ଼ୁଥିଲା; ଦେହ ଅସୁସ୍ଥ ହେବାରୁ ପଢ଼ା ଛାଡ଼ି ଘରେ ଅଛି । ସମ୍ପତ୍ତି ବାଡ଼ି ଯଥେଷ୍ଟ, ଦୁଇ ତିନିଖଣ୍ଡ ଗ୍ରାମରେ ଜମିଦାରୀ ଅଛି, ଧାନ ଓ ଟଙ୍କା ମହାଜନୀ କାରବାର ମଧ୍ୟ ବେଶ । ତାଙ୍କ ପିତାମାତାଙ୍କ ଇଚ୍ଛା ଗୋଟିଏ ବୋଲି ପୁଅ, ଦୂର ଦେଶାନ୍ତରରେ ରହି ଆଉ କଣ ପଢ଼ିବ ? ଘରେ ସାତପୁରୁଷ ବସି ଖାଇଲେ ତ ସରିବ ନାହିଁ । ସେହି ହେତୁରୁ ଗଙ୍ଗା ଗୋବିନ୍ଦକୁ ଅନିଚ୍ଛାସତ୍ତ୍ୱେ ପାଠପଢ଼ା ଛାଡ଼ି ଘରେ ରହିବାକୁ ହୋଇଅଛି । ପିଲାଟି ଯେପରି ରୂପବାନ୍, ଗୁଣବାନ୍ ମଧ୍ୟ ସେହିପରି । ହରିଶଙ୍କର ଏପରି ପାତ୍ର ସଙ୍ଗରେ ନଳମଣିର ବିବାହ ଦେବେ, ଏହାଠାରୁ ବଳି ଆଉ ସୁଖର କଥା କଣ ଅଛି ?

ରାମେଶ୍ୱର ତଥ ହରିଶଙ୍କରଙ୍କ ଭାବୀ ସମ୍ବନ୍ଧୀ । ହେଲେ କଣ ହେବ, ଅର୍ଥ ତାଙ୍କର ଜୀବନରୁ ଏକମାତ୍ର ଲକ୍ଷ୍ୟ । ମାନ, ମହତ୍ତ୍ୱ ମୋହବତ ସବୁ ଜଳାଞ୍ଜଳି ଦେଇ ଯଦି ଅର୍ଥ ମିଳି ପାରିଲା, କିଛି ଚିନ୍ତା ନାହିଁ । ମିଶ୍ରଙ୍କ ଆଗ୍ରହ ଦେଖି ରାମେଶ୍ୱର ଧରିବସିଲେଣି, ପୁଅ ବୋହୂଙ୍କ ପାଇଁ ଅଳଙ୍କାର କରିବାକୁ ହେବ, ସବୁ ସୁନା ହେବା ନିତାନ୍ତ ଆବଶ୍ୟକ । ଏହାପରେ ହ'ପିଠ ଲଗାଇ ବିବାହ ଦେବାକୁ ହେବ, ତାଙ୍କୁ ଯେପରି କିଛି ଖର୍ଚ୍ଚ କରିବାକୁ ନ ପଡ଼େ । ସର୍ବଶେଷରେ ହଜାରେଟି ଟଙ୍କା ନଗଦ ଜ୍ୱାଇଁ ଦକ୍ଷିଣା, ତା' ନ ହେଲେ ବି ନୁହେଁ । ମିଶ୍ରେ ବଡ଼ ବେପାରବାଏ ଲୋକ, ସବୁଥିରେ ହଁ ଭରି ଦେଇଅଛନ୍ତି—ନଳିନୀ ଯେ ତାଙ୍କର ସୁଖରେ ରହିବ, ଏହା ହିଁ ତାଙ୍କ ପକ୍ଷରେ ଯଥେଷ୍ଟ ।

ନିର୍ବନ୍ଧ ହୋଇଗଲା; ବୋଝିଭାର ଚଳାଚଳ ହୋଇଗଲା । ବିଭାଘର ଆଉ ଗୋଟିଏ ମାସ ବାକି । ହରିଶଙ୍କର ଅଚଳ ଅଟଳ ଭାବରେ ବସି ରହିଥାନ୍ତି । ବିଭାଘରର ଏଡ଼େ ଆଡ଼ମ୍ବର ଆୟୋଜନ ଶୁଣି ତାଙ୍କର କେତେଜଣ ସହୃଦୟ ବନ୍ଧୁ ଅବାକ୍ ହୋଇଗଲେଣି । ସେମାନେ ବାରମ୍ବାର ମିଶ୍ରଙ୍କୁ ବିବାହ ନିମିତ୍ତ ଟଙ୍କାର ଯୋଗାଡ଼ କରିବାକୁ କହିଲେଣି । ମାତ୍ର ତାଙ୍କର ତହିଁ ପ୍ରତି ଭ୍ରୂକ୍ଷେପ ନାହିଁ । ବିବାହ କ୍ରମେ ନିକଟ ହେବାକୁ ଲାଗିଲା । ଗତ କେତେକ ବର୍ଷର ଆୟରୁ ମିଶ୍ରେ କିଛି ସଞ୍ଚୟ କରି ପାରିଥିଲେ, ଆଉ ପ୍ରାୟ ଦୁଇ ହଜାର ଟଙ୍କା ନିଅଣ୍ଟ । କେତେ ଉପାୟ କରି ନ ମିଳିବାରୁ ଅଗତ୍ୟା ବିବାହ ୭ ଦିନ ଥାଉଁ ତାଙ୍କୁ ମୟୂରଭଞ୍ଜର ସମସ୍ତ ଜମିବାଡ଼ି ଆବନ୍ଧ ଦେଇ ଦୁଇହଜାର ଟଙ୍କା କରଜ କରିବାକୁ ପଡ଼ିଲା । ଯଥା ସମାରୋହରେ ବିବାହ ଶେଷ ହୋଇଗଲା । ଜ୍ୱାଇଁ ଦକ୍ଷିଣାରୁ ତିନି ଶହ ଟଙ୍କା ନିଅଣ୍ଟ ହେବାରୁ ରାମେଶ୍ୱର ତତ୍‌କ୍ଷଣାତ୍

ମିଶ୍ରଙ୍କଠାରୁ ହ୍ୟାଣ୍ଡନୋଟ୍ ଲେଖାଇ ନେଇ ବରକୁ ବେଧା ଉପରକୁ ପଠାଇଲେ ।

ବିଭାଘର ଶେଷ ହୋଇଗଲା । ସମସ୍ତେ ଖୁସି ବାସିରେ ବିଦାୟ ହେଲେ । ଏ ବିଭାଘରରେ ଏତକ ବିଶେଷତ୍ୱ ଥିଲା ଯେ, ବାଜାବାଲାଙ୍କଠାରୁ ଆରମ୍ଭ କରି ବ୍ରାହ୍ମଣଙ୍କ ପର୍ଯ୍ୟନ୍ତ ସମସ୍ତେ ଏକ ଜିନିଷ ଖାଇବାକୁ ପାଇଥିଲେ । ଜାତି ଭେଦରେ ବା ବଡ଼ଲୋକ ଗ୍ରେଟ୍‌ଲୋକ ଭେଦରେ ଖାଦ୍ୟପଦାର୍ଥ ପରିବେଷଣ କରା ହୋଇ ନ ଥିଲା । ବିବାହ ପରେ ମିଶ୍ରେ ସେ ବର୍ଷ ବାର ପୂର୍ଣ୍ଣିମାକୁ ଜ୍ୱାଇଁ ନିମିତ୍ତ ଲୁଗା ଓ ଅନ୍ୟାନ୍ୟ ଉପହାର ପଠାଇଲେ । ରାମେଶ୍ୱରଙ୍କ ମୁହଁରେ ହରିଶଙ୍କରଙ୍କ ପ୍ରଶଂସା ଉଛୁଳି ପଡ଼ୁଛି । ଯେତେ ବନ୍ଧୁ ହୋଇଛନ୍ତି, ତାଙ୍କି ନୂଆ ସମୁଧି ପରି କେହି ନୁହନ୍ତି । ଏତେ ଶ୍ରଦ୍ଧା କାହାରିଠାରେ ନାହିଁ ।

ସମସ୍ତ ଅତିବାହିତ ହେବାକୁ ଲାଗିଲା । ନଳିନୀକୁ ଶାଶୁଘରକୁ ଯିବାକୁ ହେବ । ହରିବା ସଙ୍ଖୁଲା ବୋଝ ଚାଲିଗଲାଣି; ଯିବାର ଦିନ ମଧ୍ୟ ସ୍ଥିର ହୋଇଗଲାଣି । ମିଶ୍ରେ ଝିଅ ପଠାଇବା ଯୋଗାଡ଼ରେ ବ୍ୟସ୍ତ ଅଛନ୍ତି, ରାତି ଦିବା ଚରି ନାହିଁ । ଟଙ୍କା ପଇସା ଯୋଗାଡ଼ କରିବାକୁ ହେବ; ତା'ପରେ ପ୍ରୟୋଜନ ଅନୁସାରେ ଜିନିଷପତ୍ର ଯୋଗାଡ଼ କରି ରଖିବାକୁ ହେବ । ବହୁ କଷ୍ଟରେ ସମସ୍ତ ଯୋଗାଡ଼ ଠିକ୍ ହୋଇଗଲା । ସାଙ୍ଗପଡ଼ିଶା ଆଖପାଖ ଝିଅ ବୋହୂମାନେ ଆସି ନଳିନୀକୁ ନିଜ ନିଜ ଘରକୁ ନିମନ୍ତ୍ରଣ କରି ନେଇଗଲେ । କେତେ ଦିନ ଉପରୁ ନିମନ୍ତ୍ରଣରେ ଚାଲିଗଲା । ଲେଖାଯୋଖା ଭାଇ ଭଉଣୀ ଖୁଡ଼ୀ ଖୁଡ଼ୁତାଙ୍କୁ ଧରି ନଳିନୀ କାନ୍ଦିବାକୁ ଲାଗିଲା । କାନ୍ଦ ଶୁଣିଲେ, ବିଶେଷତଃ କାନ୍ଦ ଭିତରେ ନିଜ ସ୍ତ୍ରୀଙ୍କ ନାମ ଶୁଣି ହରିଶଙ୍କର ଘର ଗୁଡ଼ ଦାଣ୍ଡକୁ ପଳାଇ ଆସନ୍ତି । ଗୁଡ଼ି ଘନ ଘନ ଫୁଲ ଉଡ଼ି

ପଡ଼ୁଥାଏ । ଦୁଇ ଆଖିରୁ ଲୋତକଧାର ଗଡ଼ି-ପଡ଼ୁଥାଏ । ନଳମା ଶାଶୁଘରକୁ ଗଲା । ମିଶ୍ରେ ଝିଅ ସଙ୍ଗରେ ଗୋବନ୍ଦପୁର ଯାଇ ସେଠାରେ ଦୁଇ ଚାରି ଦିନ ରହି ନଳମାକୁ ବହୁତ ପ୍ରବୋଧ ଦେଇ କାନ୍ଦି କାନ୍ଦି ଘରକୁ ଆସିଲେ । ବାଟରେ ଆସୁ ଆସୁ ଯେ ପର୍ଯ୍ୟନ୍ତ ଗୋବନ୍ଦପୁରର କୌଣସି ଚିହ୍ନ ଦେଖାଯାଉଥାଏ; ସେ ପର୍ଯ୍ୟନ୍ତ ଘନ ଘନ ଫେରିପଡ଼ି ପଛକୁ ଚାହୁଁଥାନ୍ତି, ଯେପରି କି ତାଙ୍କ ଜୀବନର ସର୍ବଶ୍ରେଷ୍ଠ ଆକର୍ଷଣ ଗୋବନ୍ଦପୁରରେ ରହିଗଲା । ତାଙ୍କୁ ଶୂନ୍ୟ ହୃଦୟରେ ଘରକୁ ଫେରିବାକୁ ହେଲା; ଘର ଭିତରକୁ ଆସି ଯେଉଁ ଘରକୁ ଚାହିଁଲେ ନଳମା ମନେ ପଡ଼ୁଅଛି । ଏହିବାଟେ ସେ କେତେ ଚାଲି ଯାଉଥିଲା; କେତେ ସ୍ନେହାର୍ଦ୍ର ସ୍ୱରରେ କଥାବାର୍ତ୍ତା କରୁଥିଲା । ହରିଶଙ୍କରଙ୍କର ଘର ମଧ୍ୟରେ ରହିବାର ପ୍ରବୃତ୍ତି ହେଲାନାହିଁ । ବାହାରକୁ ବାହାରି ଆସିଲେ । ଦୁଇ ତିନି ଦିନ ପର୍ଯ୍ୟନ୍ତ ରନ୍ଧାବଢ଼ା ଖିଆପିଆ ହେଲା ନାହିଁ ।

ନଳମା ଗୋବର୍ଦ୍ଧନପୁର ଯିବା ଠିକ୍ ପାଞ୍ଚଦିନ ପରେ ମିଶ୍ରେ ପୁନର୍ବାର କିଛି ଜିନିଷ ସଜିଲ କରି ଗୋଟିଏ ଲୋକ ସଙ୍ଗରେ ନେଇ ଝିଅ ଘରକୁ ବାହାରିଲେ । ଏତେ ଚଞ୍ଚଳ ପୁଣି ଆସିବାର ଦେଖି ଗ୍ରାମଲୋକେ ଆଶ୍ଚର୍ଯ୍ୟ ହେଲେ । ରାମେଶ୍ୱରଙ୍କ ଘରର ଅନ୍ୟାନ୍ୟ ସ୍ତ୍ରୀମାନେ ମନେ ମନେ ଭୟ କଲେ; କିନ୍ତୁ ଖୁସିହେଲେ ଦୁଇ ଜଣ—ଜଣେ ରାମେଶ୍ୱର ନିଜେ ଓ ଆଉ ଜଣେ ନଳମା । ରାମେଶ୍ୱରଙ୍କର ଆନନ୍ଦିତ ହେବାର କାରଣ—ପୁଣି କିଛି ରୋଜଗାର ହୋଇଗଲା । ଗତ ପାଞ୍ଚ ଦିନ ପିତାଙ୍କୁ ନ ଦେଖି ନଳମା ବ୍ୟଥିତ ଥିଲା, ତାଙ୍କୁ ଦେଖି ଆଜ ତାକୁ ଯେପରି କୋଟିନିଧି ମିଳିଗଲା ।

ହିଶ୍ରୀଣଙ୍କର ଘରକୁ ଫେରି ଆସିଲେ । ଦୁଇ ଚାରି ଦିନ ଗଲେ ପୁଣି ମନ ବ୍ୟସ୍ତ ହୁଏ । କିନ୍ତୁ ଘରକୁ ନ ଯାଇ ରହିପାରନ୍ତି ନାହିଁ । ଘରେ ଚାରି .ଦିନ ରହିଲେ, କିଅସରେ ଦୁଇଦିନ ରହିବାକୁ ପଡ଼ୁଥିଲା । ଘନ ଘନ ଗୋବିନ୍ଦପୁର ଯିବାରେ ସେ ଗ୍ରାମର ପ୍ରାୟ ପ୍ରତ୍ୟେକଙ୍କ ସଙ୍ଗେ ମିଶ୍ରଙ୍କର ବେଶ୍ ଆଳାପ ପରିଚୟ ହେବାର ସୁଯୋଗ ଯୁଟିଗଲା । ମିଶ୍ରଙ୍କ ସ୍ନେହଶୀଳତା, ସରଳତା ଓ ମଧୁର ଆଳାପରେ ମୁଗ୍ଧ ହୋଇ ଗୋବିନ୍ଦପୁରର ଅନେକ ତାଙ୍କର ଭକ୍ତ ହୋଇ ଯାଇଥିଲେ । ମିଶ୍ରେ ଆସିବାର ଶୁଣିଲେ ସେମାନେ ଆସି ତାଙ୍କୁ ଜଗି ବସନ୍ତି, କେତେ ଖୁସିବାସି ଗପସପ ହୋଇଯାଏ ।

ଜ୍ୟେଷ୍ଠମାସ ଆସିଲା । ମିଶ୍ରଙ୍କୁ ମୟୁରଭଞ୍ଜ ଯିବାକୁ ହେବ । ଏ ମଧ୍ୟରେ ତାଙ୍କର ଅନେକ କରଜ ହୋଇ ଯାଇଅଛି । ସମସ୍ତ ଶୁଝିବାକୁ ବସିଲେ ସମୁଦାୟ ସମ୍ପତ୍ତିରୁ ପ୍ରାପ୍ୟ ବାରପଣ ବିକ୍ରି ହୋଇଯିବ । ମାତ୍ର ତାଙ୍କୁ କେହି କୌଣସି ସମୟରେ ଚିନ୍ତିତ ହେବାର ଦେଖି ନାହିଁ । ମୟୁରଭଞ୍ଜ ଯିବାର ଦୁଇଦିନ ପୂର୍ବରୁ ଗୋବିନ୍ଦପୁର ଯାଇ ନଳିନୀକୁ ଦେଖି ଆସିଲେ । ମୟୁରଭଞ୍ଜ ଯିବା କଥା ଶୁଣି ଆସନ୍ତା ସାବିତ୍ରୀ ଅମାବାସ୍ୟା ଉପବାସକୁ ତା'ପାଇଁ ଖଣ୍ଡିଏ ମୟୁରଭଞ୍ଜୀ ସୁନ୍ଦର ମଠାଶାଢ଼ୀ ଆଣିବାକୁ ନଳିନୀ କହିଲା ।

ଗୋବିନ୍ଦପୁରରୁ ଆସି ମିଶ୍ରେ ତରତର ହୋଇ ମୟୁରଭଞ୍ଜ ବାହାରି ଅଛନ୍ତି । ଶୀଘ୍ର ସମସ୍ତକାର୍ଯ୍ୟ ଶେଷ କରି ସାବିତ୍ରୀ ଉପବାସ ପୂର୍ବରୁ ତାଙ୍କୁ ଯେପରି ଫେରି ଆସିବାକୁ ହେବ । ନ ଆସିଲେ ନ ହୁଏ, କିଅର ସେ ଉପବାସ, ବର ବୋଝ ଦେବାକୁ ହେବ, ଶାଢ଼ୀ ମଧ୍ୟ ଆଣିବାକୁ ହେବ ।

ହରିଶଙ୍କର ମୟୂରଭଞ୍ଜରେ ପହଞ୍ଚି ତାଙ୍କ ଭାଗ ଓ ସଞ୍ଚା ଫସଲ ସଂଗ୍ରହ କରିବାକୁ ଲାଗିଲେ । ସମସ୍ତ ଫସଲ ସଂଗ୍ରହ ହେବା ସମୟକୁ ଅମାବାସ୍ୟା ଆଉ ପାଞ୍ଚ ଦିନ ମାତ୍ର ବାକି । ହଠାତ୍ ଗ୍ରାହକ ନ ମିଳିବାରୁ ଯଥେଷ୍ଟ ଲୋକସାନ ସହ୍ୟ କରି ସମସ୍ତ ଫସଲ ବିକ୍ରୀ କରିଦେଲେ—ବିଳମ୍ବ ହେଲେ ଯେ ନଳିମା ପାଇଁ ଶାଢ଼ୀ ଓ ଅଳଙ୍କାର କିଣା ହୋଇ ପାରିବ ନାହିଁ । ସାବିତ୍ରୀ ଉପବାସକୁ ପହଞ୍ଚି ନ ପାରିଲେ ଝିଅ କଣ ଭାବିବ, ଗ୍ରାମବାସୀ ଓ ରାମେଶ୍ୱର ମଧ୍ୟ କଣ ଭାବିବେ ।

ସମସ୍ତ ଫସଲ ବିକ୍ରୀ ହୋଇ ଟଙ୍କା ସଂଗ୍ରହ ହେଲା । ମୟୂର-ଭଞ୍ଜୀ ମଠାଶାଢ଼ୀ ଦେଖି ମନ ମାନିଲା ନାହିଁ । କଟକ ଯାଇ ନଳିମା ପାଇଁ ସୁନାର ଅଳଙ୍କାର ଓ ପାଟଶାଢ଼ୀ ଏବଂ ଗଙ୍ଗାଗୋବିନ୍ଦଙ୍କ ପାଇଁ ପାଟଯୋଥା କିଣିନେବାର ସ୍ଥିର ହେଲା । ଯଥା ସମୟରେ ସମସ୍ତ ଜିନିଷ କ୍ରୟ କରି ସାବିତ୍ରୀ ଉପବାସ ଦିନେ ଆଉଁ ସେ ଆସି ଗ୍ରାମରେ ପହଞ୍ଚିଲେ । ଗ୍ରାମର ଅନେକ ପାଇପଡ଼ଶା ସ୍ତ୍ରୀ ପୁରୁଷ ଝିଅ ଜ୍ୱାଇଁଙ୍କ ପାଟଲୁଗା ଓ ନଳିମାର ସୁନା ଅଳଙ୍କାର ଦେଖି ବିସ୍ମିତ ହୋଇଗଲେ । ଅନ୍ୟାନ୍ୟ ସମସ୍ତ ଜିନିଷ ଗ୍ରାମଠାରୁ ସେହି ଦିନ ଠିକ୍‌ଠାକ ହୋଇଗଲା ।

ମିଶ୍ରେ ସାବିତ୍ରୀ ଉପବାସ ଦିନ ବଡ଼ ସକାଳେ ଗାଧୋଇ ପାଧୋଇ ଭାରୁଆ ଓ ଭଣ୍ଡାରିଙ୍କୁ ଠିକ୍ କରି ଗୋବିନ୍ଦପୁର ଅଭିମୁଖରେ ବାହାରି ଅଛନ୍ତି । ସୁନା ଅଳଙ୍କାରତକ ଗୋଟିଏ କାଗଜରେ ମୋଡ଼ି ନିଜ ହାତରେ ଧରିଲେ; ମନ ଆଜି ଭାରି ଉତ୍‌ଫୁଲ୍ଲ—କେଁପରି ଯାଇ ଗୋବିନ୍ଦପୁରରେ ପହଞ୍ଚିବେ । ତାଙ୍କ ଦେହରେ ଆଜି ଯୁବକର ବଳ ଆସିଅଛି । ଭାରୁଆ ଓ ଭଣ୍ଡାରି ଆଜି ତାଙ୍କ ସାଙ୍ଗରେ ଚାଲି ପାରୁ ନାହାନ୍ତି, ପଛକୁ ପଡ଼ି ଯାଉଅଛନ୍ତି । ବାଟ ଦେଖାଯାଉ ନାହିଁ ।

ଏକମାତ୍ର ଲକ୍ଷ୍ୟ ରଖି ବୃଦ୍ଧ ଆଜ ଅତି ଆନନ୍ଦରେ ଧାଇଁ ଅଛନ୍ତି । ମୁଣ୍ଡଠାରୁ ଗୋଡ଼ ପର୍ଯ୍ୟନ୍ତ ଅନବରତ ଝାଳ ବହି ଯାଉଅଛି । ତଥାପି ବାଟରେ କେଉଁଠାରେ ବସିବାର, ବିଶ୍ରାମ ନେବାର ଇଚ୍ଛା ନାହିଁ । ବସିଗଲେ ବେଳ ଉଚ୍ଛୁର ହୋଇଯିବ । ଚାଲୁ ଚାଲୁ ବାଟରେ ବସିଗଲେ ପୁଣି ଉଠି ଚାଲିବା କଷ୍ଟକର ହେବ । ଏକାଦମରେ ଚାଲିବା ଭଲ । ଏ ବିଷୟରେ ଚାକରମାନଙ୍କର ଅନୁରୋଧ ଏକାଧିକ ଥର ବ୍ୟର୍ଥ ହୋଇଅଛି । ବୃଦ୍ଧଙ୍କୁ ଏପରି ଚାଲିବାର ଦେଖି ସେମାନେ ମଧ୍ୟ ଆଉ ବସି ପାରନ୍ତି ନାହିଁ ।

ଆସି ଗୋବିନ୍ଦପୁର ଗାଁମୁଣ୍ଡ ହେଲଣି । ବୃଦ୍ଧ ଭାରି ଆହ୍ଲାଦିତ—ଏହିକ୍ଷଣି ସେ ତାଙ୍କର ପ୍ରାଣର ନଳିମାକୁ ଦେଖିବେ । ଅନେକ ଦିନୁ ଦେଖି ନାହାନ୍ତି—ଯେପରି ଗୋଟିଏ ଯୁଗ ଏଥି-ମଧ୍ୟରେ ବିତିଗଲାଣି । ଗାଁ ବାହାରେ ବିଲୁଆ କୁକୁରଗୁଡ଼ାକ ବଡ଼ ସ୍ୱାଧୀନଭାବରେ ଯିବା ଆସିବା କରୁଅଛନ୍ତି, ଘନ ଘନ ଭୟଙ୍କର ଚିତ୍କାର କରୁଅଛନ୍ତି । ଗାଁମୁଣ୍ଡରେ ଅନେକଗୁଡ଼ାଏ ହାଣ୍ଡି ଏଣେ ତେଣେ ଗଡ଼ୁଅଛି । ଗୁଡ଼ାଏ ଖଣ୍ଡିଆ ଅଗିଣୁଅ ମଧ୍ୟ ପଡ଼ି ରହିଅଛି । କେତେଟା ପାଣି ହାଣ୍ଡି ଭଙ୍ଗା ପଇଡ଼ ଖୋଳ ପଡ଼ି ଗଡ଼ୁଅଛି । ଏସବୁ ଦେଖି ଚାକରଗୁଡ଼ାକ ତ୍ରସ୍ତ ହୋଇ ପରସ୍ପର ପରସ୍ପରକୁ ଚାହିଁ ଅଛନ୍ତି । ହରିଶଙ୍କରଙ୍କୁ ଏ ସବୁ କିଛି ଜଣା ପଡ଼ୁନାହିଁ, ସେ ଏକମୁହାଁ ଚାଲିଅଛନ୍ତି । ସେ ଗ୍ରାମର ଅନେକ ଏତେ ଭାରି ସହିତ ତାଙ୍କୁ ଆସୁଥିବାର ଦେଖି କାବା ହୋଇ ଠିଆ ହୋଇ ରହୁଥାନ୍ତି । ହରିଶଙ୍କରଙ୍କର ବିଶେଷ ପରିଚିତମାନେ ମଧ୍ୟ ତାଙ୍କୁ ଏପରିଭାବରେ ଆସିବାର ଦେଖି କପରି ବଡ଼ ମନ ଦୁଃଖରେ ମୁହଁ ଶୁଖାଇ କେବଳ ନମସ୍କାର କରି ଠିଆ ହୋଇ ରହୁଅଛନ୍ତି । ସମସ୍ତେ ଯେପରି ନିର୍ବାକ, ନିସ୍ପନ୍ଦ । ମିଶ୍ରଙ୍କ ମନକୁ ଏସବୁ ଲେଶମାତ୍ର ସ୍ପର୍ଶ କରି

ପାରୁନାହାନ୍ତି । ଶରୀର ଦୁର୍ବଳ, କାନ ଭଁ ଭଁ ହେଉଅଛି, ତାଳୁ ଶୁଷ୍କ ହୋଇଗଲାଣି, ତଥାପି ସେ ଚାଲୁଛନ୍ତି । କପରି ନଳମାକୁ ଦେଖିବେ—ଦେଖିଲାକ୍ଷଣି ହଠାତ୍ ଅଳଙ୍କାର ପୁଡ଼ାଟି ତା' ହାତକୁ କେଡ଼େ ଆନନ୍ଦରେ ବଢ଼ାଇ ଦେବେ । ସେ କେଡ଼େ ଖୁସି ହୋଇ ଗ୍ରହଣ କରିବ । ଘରଦ୍ୱାର ଓ ଲୁଗାପଟା ଦେଖି ରାମେଶ୍ୱର ଓ ତାଙ୍କ ଘରର ସମସ୍ତେ କପରି ଆନନ୍ଦ ପ୍ରକାଶ କରିବେ । ଜ୍ୱାଇଁ ପାଟଯୋଡ଼ ଓ ଝିଅ ପାଟଶାଢ଼ୀ ଓ ସୁନା ଅଳଙ୍କାରତକ ପିନ୍ଧିଲେ କପରି ମାନିବ । ସାବିତ୍ରୀ ଉପବାସ କରି ଝିଅଟି ତାଙ୍କର ଶୁଖି ଯିବଣି, ପୂଜା ବେଳ ଆସି ହୋଇଗଲାଣି । ଏପରି ଭାବ ଭାବ ସେ କେବଳ ଦଉଡ଼ୁଅଛନ୍ତି —କପରି ପହଞ୍ଚିବେ—ଦାଣ୍ଡଦୁଆରେ ଭଣ୍ଡାରି ଗୋଡ଼ ଧୋଇବାକୁ ବଳାଉଥିବ, ତା' କଥା ନ ଶୁଣି ଏକାତାନେ ଘର ଭିତରକୁ ଚାଲିଯିବେ, —ଏ ସବୁ ଭାବନା ତାଙ୍କ ମନକୁ ଗୋଟିଏ ଅପୂର୍ବ ଆନନ୍ଦରସରେ ବୁଡ଼ାଇ ରଖିଅଛି, ବାହାରର କୌଣସି କଥା ପ୍ରତି ତାଙ୍କର ଦୃଷ୍ଟି ଯାଉନାହିଁ ।

ରାମେଶ୍ୱରଙ୍କ ଘର ଆସି ହେଲାଣି । ଘର ମଧ୍ୟରେ କିଏ ଏଡ଼େ କରୁଣ ସ୍ୱରରେ କାନ୍ଦୁଅଛି । ଏକ ସ୍ୱରରୁ ବହୁସ୍ୱର ମଧ୍ୟ ଶୁଣାଗଲା । ହରିଶଙ୍କର କିନ୍ତୁ ଏକାଗ୍ର ମନରେ ଚାଲିଅଛନ୍ତି, କିଛି ଶୁଣି ପାରୁନାହାନ୍ତି । ଦାଣ୍ଡଦୁଆର ଶୂନ୍ୟ । ଭଣ୍ଡାରିଟିଏ ମଧ୍ୟ ଗୋଡ଼ ଧୋଇ ଦେବାକୁ ନାହିଁ । ଭଣ୍ଡାରିର ଅନୁରୋଧ ନ ମାନିବା ଆବଶ୍ୟକ ହେଲାନାହିଁ । ସିଧା ସିଧା ଘର ଭିତରକୁ ଗଲେ । ଦାଣ୍ଡ ଅଗଣାରେ କେହି ନାହିଁ—ଶୂନ୍ୟ । ମଝି ଅଗଣା ମଧ୍ୟ ସେହିପରି ପାର ହେବାକୁ ପଡ଼ିଲା । କେହି ନାହିଁ । ଗରୁଆଗୁଡ଼ାକ ଓ ଭଣ୍ଡାରି ଦାଣ୍ଡ ଅଗଣାରେ ନିଜ ନିଜ ଘର ବୋଝ ଓହ୍ଲାଇ ଦେଇ ପିଣ୍ଡାରେ କାନ୍ଥକୁ ଆଉଜି ବସି ଦୁଇ ଆଣ୍ଠୁ ଉପରେ ଦୁଇ ହାତ ଥୋଇ ବିଶ୍ରାମ କରି ବସିଲେ ।

ହରିଣଙ୍କର ଏଆଡ଼କୁ ସିଆଡ଼କୁ ଚାହିଁ ଚାହିଁ ତଳ ଅଗଣାରେ ପହଞ୍ଚିଲେ । ନ ଖାଇ ନ ପିଇ ସହସ୍ର ବାଧାବିଘ୍ନ ଅତିକ୍ରମ କରି ଏକାଗ୍ରମନରେ ବୃଦ୍ଧ ଦଉଡ଼ି ଆସିଛନ୍ତି, ଶରୀର ପ୍ରତି ଆଦୌ ଲକ୍ଷ୍ୟ କରି ନାହାନ୍ତି । ଲକ୍ଷ୍ୟ କରିଥିଲେ ଜାଣିପାରିଥାନ୍ତେ ତାଙ୍କର କେତେ ବଳ କ୍ଷୟ ହୋଇ ଆସିଛି । ବର୍ତ୍ତମାନ ପର୍ଯ୍ୟନ୍ତ ସେ ଏକଲକ୍ଷ୍ୟରେ ଏକ ଅଦମ୍ୟ ସାହସରେ ଦଉଡ଼ୁଥିଲେ । ଲକ୍ଷ୍ୟ ସ୍ଥାନରେ ପହଞ୍ଚି ଗଲାରୁ ତାଙ୍କ ଶରୀର ମନ ବଡ଼ ଅବସନ୍ନ ଜଣାଗଲାଣି ।

ସେ ଏହିପରି ଅବଶ ଅବସନ୍ନ ଅବସ୍ଥାରେ ଠିଆ ହୋଇ ରହିଅଛନ୍ତି । ସେହି ଅଗଣାରେ କ୍ରନ୍ଦନରୋଳ ଶୁଣି ଅବାକ୍ ହୋଇ ଗଲେଣି । ଏପରି ସମୟରେ ଜଣେ କିଏ କାନ୍ଦି କାନ୍ଦି ଆସି କହିଲା—"ଭାରିତୋର ଆଜି କାହାଁ ପାଇଁ? ଝିଅ, ଜ୍ୱାଇଁ କାଲି ରାତିରୁ ଆଉ ନାହାନ୍ତି, ଆହା—"ସେ ଆଉ କିଛି ଶୁଣି ପାରିଲେ ନାହିଁ, କର୍ଣ୍ଣଦ୍ୱୟ ସମ୍ପୂର୍ଣ୍ଣ ନିସ୍ତବ୍ଧ ହୋଇଗଲା; ଚକ୍ଷୁ ଆଉ ଦେଖି ପାରିଲା ନାହିଁ; ଦେଖି ନ ପାରି ଊର୍ଦ୍ଧ୍ୱଗାମୀ ହେବାକୁ ଲାଗିଲା । ଅଙ୍ଗପ୍ରତ୍ୟଙ୍ଗ ସମ୍ପୂର୍ଣ୍ଣ ଶିଥିଳ ଓ ଅବଶ ହୋଇଆସିଲା । ଅଳଙ୍କାର ପୁଡ଼ାଟି ଝିଣ କରି ହାତରୁ ଆସ୍ତେ ଆସ୍ତେ ଖସି ପଡ଼ି ଛିନ୍ନ ହୋଇଗଲା ।

---

# ବୁଧବାର

## ଶ୍ରୀମତୀ ନନ୍ଦିନୀ ଶତପଥୀ

ଏ ଛତରଖାଇ ଅଲକ୍ଷଣୀ ଘରେ ଗୋଡ଼ ଦେଲାରୁ ସୁନା-ଘରଟା ମୋର ଚୂନା ହେଲା—ତାରପରବ ପୁଅଟା ଘରଛାଡ଼ି ଯୋଗୀ ହୋଇଗଲା ତେବେ ହେଲେ କଣ ପୋଡ଼ାମୁହାଁଟା ଟିକଏ ହେଜୁଛି...?'

ବୁଢ଼ୀର ପାଟିରେ ପାରର ନଦ ଭାଙ୍ଗିଗଲା । ହେଁସ ଉପରୁ ମୁଣ୍ଡଟେକ ବାହାରକୁ ଗୃହିଁଲା । ଅଗଣାରେ ଆସି ଅଧଅଗଣାଏ ଖରା ହେଲାଣି । ବାସିପାଇଟି ସାରିଦେଇ ବୁଢ଼ୀ ପିଣ୍ଡା ଉପରେ ବସି ଗରଗର ହେଉଛି । ପାର ପାଇଁ ଏଇ କିଛି ନୂଆ କଥା ନୁହେଁ । ସକାଳୁ ଦ'ଅଧ୍ୟାୟ ଭଗବତ ପାର ଉପରେ ନହେଲେ ବୁଢ଼ୀ ମନ ବୋଧ ହୁଏ ନା—ପାରକୁ ବ କେମିତି ଖାଲି ଖାଲି ଲାଗେ ଦିନଟା ! ପୁଣି ଏ କାଲ ମହରଗ ପଡ଼ିଲା ଦିନୁଁ ବୁଢ଼ୀର ପାଟିଟା ପଞ୍ଚମକୁ ଉଠିଛି । ତା ସାଙ୍ଗକୁ ଫେର ପାର କପାଳକୁ କୁଶୁନିଆ ଘର ଛାଡ଼ି କୁଆଡ଼େ ପଳେଇଛି ଆଜକୁ ଦ'ମାସ ହେଲା ।

କୁଶୁନିଆ—ହଁ ତା'ର ସ୍ୱାମୀ କୁଶୁନିଆ ! ହଠାତ୍ ସକାଳଟାରୁ କୁଶୁନିଆ କଥା ମନେପଡ଼ି ତାର ଦେହ ହାତ ଅବଶ ହୋଇ ଆସିଲା । ପଞ୍ଜର ଥରାଇ ବାହାରେ ଆସିଲା ଗୋଟାଏ ଦୀର୍ଘଶ୍ୱାସ । ସତେ, କଣ କଲା ସେ ! ତିନ ତିନଟା ଛୁଆ—ଟିକଏ ହେଲେ

ଆଉ ଆଖିରେ ଶୁଝୁଁ ନ ଥାନ୍ତି । କ ମୋହୃମା ମାସ୍ତା ଲଗାଇ ଦେଲା ସେ ପୋଡ଼ାମୁହାଁ ବାବାଜୀଟା—ଦିନ ଦଶ କ ପନ୍ଦରଟାରେ ଏତେ ବଡ଼ ଭେଣ୍ଡାଟାକୁ ମେଣ୍ଢା କରିଦେଲା । କୋଉ କଥାକୁ ଅପାରଗ ବା କୁଶୁନଆ । ଘର ଉପରେ ଯେବେ ଚଢ଼ିଥିବ ଛୁଆଣି କରିବାକୁ ତେବେ ତଳ ମଣିଷ ନଡ଼ା ଯୋଗେଇ ପାରନ୍ତି ନାହିଁ । ତାଙ୍କ ହାତ ରହିଯାଏ । କୁଶୁନଆ କିନ୍ତୁ ଅଟକେ ନାହିଁ । ବିଲ ଭିତରେ ଦା' ଖଣ୍ଡେ ଧରି ପଶିଗଲେ ସବୁ ଧାନ କଟାଳୀ ଆଡ଼େଇ ଯାଆନ୍ତି । ପାଚିଲା ଧାନଗଛଗୁଡ଼ାକ ଆତଙ୍କରେ ମୁଣ୍ଡ ନୁଆଁଇ ପକାନ୍ତି । ସଭିଙ୍କର ସବୁ କାମରେ ଆଗ କୁଶୁନଆକୁ ଡକରା ପଡ଼େ । ସେ ଯାହା ଆଜ ରୋଜଗାର କରୁଥାନ୍ତା ପାଞ୍ଚପ୍ରାଣୀ କଅଁ ଦଶପ୍ରାଣୀ କୁଟୁମ୍ବ ଖାଇ ବଳି ପଡ଼ନ୍ତା । କାହାକୁ ଦୋଷ ଦେବ ପାରି ? ଏତେ ମାଇପେ ତ ସ୍ୱାମୀ ପିଲା ଘିନ ଘର କରୁଛନ୍ତି—ତା'ଭଳି ପୋଡ଼ା କରମ କାହାର ଅଛି ? ଜାଣନ୍ତା ଭଲା କୁଶୁନଆଟା ମରିଗଲା—ଆଉ ଆଉ ଖଣ୍ଡିଖଣ୍ଡିଙ୍କ ଭଳି ହେଲେ । ଆଖି ବୁଜି ହୋଇ ଆସିଲା ପାରର । ସାଙ୍ଗେ ସାଙ୍ଗେ ଦୁଇ ହାତ ଯୋଡ଼ିହୋଇ କପାଳ ଉପରକୁ ଉଠିଗଲା । 'ହେ ଠାକୁରେ' ମୋ ଅପ୍ରାଧ କ୍ଷମାକର ଯୁଆଡ଼େ ଯାଆନ୍ତୁ ପଛେ ସେ ଜାଇଁ ଜାଇଁ ରହନ୍ତୁ । ଗୁଣୁ ଗୁଣୁ ହୋଇ ପୁଣି ଥରେ କାଚ ମୁଠାକୁ ମୁଣ୍ଡରେ ଲଗାଇଲା ପାରି ।

ହେଁସ ଉପରେ ପାରି ପାଖକୁ ଲାଗି ଶୋଇ ରହିଛନ୍ତି ତା'ର ତିନିଟଯାକ ପିଲା । ଘଡ଼ିଏ ସେଇମାନଙ୍କ ଆଡ଼କୁ ଚାହିଁ ରହିଲା ପାରି—ତିନି ତିନିଟା ମଣିଷ କଙ୍କାଳ, ପେଟ ପିଠି ମିଶି ଯାଇଛି । ପଞ୍ଜରା ହାଡ଼ଗୁଡ଼ା ଗଣି ହେଇଯାଉଛି । ଖାଲୁଆ ଆଖି ତଳେ କଳା କଳା ଦାଗ । ପାରି ପେଟର 'ଛୁଆ—ଦଶମାସ ଗର୍ଭରେ

ଧରି କେତେ କଷ୍ଟ ନ ପାଇଛି । ପୁଣି କେତେ ଦୁଃଖରେ ଆଜଯାଏଁ ପେଜ ପାଣି ଖୁଆଇ ବଡ଼ାଇ ଆଣିଲି ! ଆଉ ସମ୍ଭାଳ ହେଉ ନ, ପେଜ ଟୋପାଏ ମିଳିବା ଏବେ ମୀଠ ସପନ । ଗୁଳ ଡ ଆଖିରେ ପକାଇବାକୁ ଟିକିଏ କେଉଁଠି ନାହିଁ । ବାପଟା ଥିଲେ ଅବା କୋଉ ଉପାୟ କରନ୍ତା ! ହାଇରେ କପାଳ ! ପାରର ଠାକୁରି ଗାଲ ଉପରେ ବୋହି ପଡ଼ିଲା ଦ'ଧାର ଉଷୁମ ଲୁହ !

ବୁଢ଼ୀର ପାଟି ଏଣେ ସପ୍ତମକୁ ଉଠିଛି । ମଲି ଲୋ ମା ! ଘିଣୀଙ୍କର ଫେର ଏତେବେଳଯାଏଁ ପହଡ଼ ଭାଙ୍ଗୁନ ! ସବାଖାଣ ପଡ଼ର ଗୋଟେଇକ ଏ ଘରୁ ନ ନିକାଲିଲେ ମୁଁ ଯଦ ଆଜ ପାଣି ଛୁଇଁବ ତେବେ ମୁଁ ସଇତା ହାଡ଼ିହିଅ ।

ଉପାସିଆ ଦେହଟାକୁ ଦୁଆର ବନ୍ଧ ଉପରେ ଲଦ ଦେଇ ପାର ପାଳି ଧରିଲା—'କିଏ ମୁ ସେ ମତେ ଘରୁ କାଢ଼ିବ ? ମୋ ଘରେ ରହି, ଗ୍ଲେରେଇ ଲୁଚେଇ ସବୁ ଖାଇ ଫେର୍ ମୋ ଉପରେ ଢମାକ୍ !"

କଥାଟା ବୁଢ଼ୀର ମରମରେ ବାଜିଗଲା । କେତେ କଥାଟାଏ ନ କହି ଦେଲା ବୋହୂଟା ! ପାଞ୍ଚଦିନ ହେଲା ପାଣି ଛଡ଼ା ପେଟରେ ଆଉ କିଛି ପଡ଼ି ନ ଥିଲା—କାଲି ସକାଳୁ ଗାଧୋଇ ଆସି ପେଟ ବିକଳରେ ବୁଢ଼ୀ ସବୁ ଧୂମ ମାଠିଆଗୁଡ଼ାକ ଅଣ୍ଡାଳୁ ଅଣ୍ଡାଳୁ ଦ'-ମୁଠା ଗୁଡ଼ଜଳ ଭଜା ପାଇଗଲା । କାହାକୁ କିଛି ନ କହି ସେତକ ଗିଳି ଦେଇ ପାଣି ଅଧ ନୋଟାଏ ପିଇ ବୁଢ଼ୀ ସାଷ୍ଟାମ ହୋଇଛି, ସେତକ ବେଳକୁ ସାନ ଝିଅଟାକୁ ବୁଝାଇବାକୁ ଯାଇ ମାଠିଆରେ କିଛି ନ ଦେଖି ପାର ମହାଭାରତ ଆରମ୍ଭ କରିଦେଲା । ତାଁ ସାଙ୍ଗକୁ ବି ପିଲାଏ ପାଳି ଧରିବାକୁ ଶିଖିଗଲେଣି ।

କେତେ ଭାବେ ନ ପାଉଥିଲେ ଏ ନାତ ନାତୁଣୀ ପଞ୍ଚକ ବୁଢ଼ୀକୁ । ଦନ ରାତ ବୁଢ଼ୀର ପାଖ ଛଡ଼ା ହୁଅନ୍ତ ନାହିଁ । ବୁଢ଼ୀ ଶୋଇଲେ ତା'ର ପାଖେ ମୁହଁ ଗୁଞ୍ଜି ଶୁଅନ୍ତ । କାହାଣୀ ଶୁଣିବାକୁ ତା କାନ ଧର ଗୋଡ଼େଇ ଥାଆନ୍ତ । ବୁଢ଼ୀ ହାତରେ ପଇସେ ଅଧଲେ କେବେ ପଡ଼ଗଲେ କୋଉ ଖଇ କଣି ଛୁଆଙ୍କ ହାତରେ ନ ଦେବାଯାଏଁ ତା'ର ତର ସହେ ନାହିଁ । ସେହି ପିଲାଏ ଆଜ ବୁଢ଼ୀର ପାଖ ମାଡ଼ୁ ନାହାନ୍ତ । ମା ସାଙ୍ଗରେ ମିଶି ଗାଳ ଦେଉଛନ୍ତ —'ଏ ବୁଢ଼ୀଟା ନ ମର ଆମକୁ ଦହଗଞ୍ଜ କରୁଛୁ । ଆମର ଭାଗରୁ ଖାଇବ ବୋଲି ତା ପେଟ ପୋଡ଼ ଯାଉଛୁ !' ମିଛ ସତ ଲଗାଇ ମା ଆଗରେ ଗୁହାର କରୁଛନ୍ତ—ବୁଢ଼ୀମା ସବୁ ଲୁଚେଇ ଚୋରେଇ ଖାଇ ଯାଉଛୁ । କୋଉଠୁ କେମିତ ମାଗି ଯାଚ ପଇସା ଆଣି ରଖିଚ । କୋଉ ଖଇ ବକଗଲେ ଦାଣ୍ଡରୁ କଣି ଆଣି ଖାଉଚ । ତାଙ୍କୁ ଟିକଏ ହେଲେ ଦେଉନ କ ତାଙ୍କ ଆଡ଼େ ଚାହୁଁ ନ । ଛି, କେତେ ନକୁଛୁଆ କଥା ଶିଖିଲେଣି ଏ ପିଲାଗୁଡ଼ାକ । ହେ ଭଗବାନ ! ଏତେ ଗୁଣର ପୁଅ ଜନ୍ମ କର ଶେଷକୁ ଏଇ ଦଶା ତାକୁ ଭୋଗିବାକୁ ଥିଲା ।

ବୁଢ଼ୀର ସବୁ ପାଟି ଭୁଣ୍ଡ କଆଁରେ ପାଣି ପଡ଼ଲା ପର ଥମ୍ଭିଗଲା । ଆଖିରେ ଲୁହ ଡବ ଡବ କର ସେ ଉଠି ଚାଲିଗଲା ପଡ଼ଶା ଘର ରଘୁଆ ମା ପାଖକୁ । ରଘୁଆ ମା ତାର ଲେଖାପୋଖା ଯା' । ଘରେ ଲୋକ ବୋଲ ମା ପୁଅ ହଓଟି । ପୁଅ ରଘୁ ବ୍ରହ୍ମପୁରର କୋଉ ଅନାଥାଶ୍ରମରେ ଚପରାଶୀ । ଏ ମହରଗ ସେଥିପାଇଁ ତାଙ୍କୁ ହେତ ବାଧେ ନାହିଁ । ବେଳ ଅବେଳରେ ରଘୁଆ ମା ଫୁଲଟାଏ ଫଳ ଟାଏ ବୁଢ଼ୀକୁ ଦେଇଥାଏ ।

'କଉ ଅପା, ଏତେ ସକାଳଟାରୁ କୁଆଡେ ଗଡ଼ ପଡ଼ଲ ?
ବୁଢ଼ୀ ପେଟରୁ କୋହ ଉଠୁଛି । କଛି ଉତ୍ତର ସେ ଦେଇ ପାରିଲାନି । ଘଡ଼ିଏ କାଳ ଖାଲି ଫୁଲି ଫୁଲି କାନ୍ଦିଲା ସେ । ବୁଢ଼ୀର କାନ୍ଦକୁ ଅପେକ୍ଷା କରିବାକୁ ରଘୁଆ ମାର ବେଳ ନାହିଁ । ଏମିତି ତ ସେ କେତେଥର ଆସି କାନ୍ଦେ । ଖୁଲି ଯାଉଁ ଯାଉଁ ସେ କହିଲା—କାଲି ରାତିରେ ରଘୁ ଘରକୁ ଆସିଛି—ଯାଉଚି, ବଡ଼ ଦ'ଟା ବେସର ପାଣି କଲେ ପଖାଳ ଗଣ୍ଡେ ତାକୁ ଦେବ ।

'ସତେ ! କୁଆଡେ ଗଲାମ ପୁଅ ।' କାନ୍ଦ ବନ୍ଦ କରି ବୁଢ଼ୀ ପଚାରିଲା । ସାଙ୍ଗେ ସାଙ୍ଗେ ବ ନଜର ଅଣଲେଉଟିଆ ପୁଅ କୁସୁନିଆ ପାଇଁ ଗୁଏଁ ଗୁଏଁ ବାହାରି ଆସିଲା ଗୋଟାଏ ଦୀର୍ଘନିଃଶ୍ୱାସ ! ରଘୁଆ ମା ପୁଅକୁ ପଠେଇ ଦେଲା ବୁଢ଼ୀ ପାଖକୁ । ଦଣ୍ଡବତ ପକାଇ ରଘୁ ପଚାରିଲା,' କଣ ସବୁ ହାଲ୍‌ଚାଲ ବଡ଼ମା ?'

କଣ ଆଉ ପଚାରୁଚୁ ରେ ପୁଅ ! ପେଜ ମୁନ୍ଦେ ବନାତ ପାଞ୍ଚ ପା'ଞ୍ଚଟା ପରାଣୀ କଲବଲ ହେଇ ଯାଉଚୁ । ତୋର କାମ ଜାଗା ଆଡେ ମତେ ହେଲେ କୁ'ଠି ରଖେଇ ଦିଅନ୍ତୁ । ଏ ଗାଁରେ ଆଉ ଦଣ୍ଡେ ରହିବାକୁ ମୋର ମନ ହେଉନାହିଁ ।

ରଘୁ ଟିକଏ ହସିଲା—ମାମଲତକାରିଆ ହସ । 'ତମେ କୁ' କାମକୁ ପାରିବ ବଡ଼ ମା ? ଗୋଟେ କାମ ଅଛି—ହେଲେ ଭଉଜ ଯେବେ କରନ୍ତା ତେବେ ଅବା ହୁଅନ୍ତା, ତାକୁ ପଚାର ।'

'ସେଇଟା କୁଆଡେ ଯିବ ? ଟଙ୍ଗଡ଼ ବାଛୁରୀ ହେଇ ଛନ ଛନଟା—ଟସଗୁଡ଼ାଙ୍କୁ କାନରେ ବାନ୍ଧ କ କାମ ସେ କରିବ ?' ରଘୁ ବୁଝେଇଲା । ସେଇ ଅନାଥାଶ୍ରମରେ କାମଦାମ ବୁଝାଶୁଝା କରିବାକୁ ଜଣେ ଲୋକ ଦରକାର । ପିଲାମାନଙ୍କୁ ସେ ସେଇଠି ଗୁଡ଼ ଦେବ । ଖାଇବା ପିଇବା ବାଦ୍ କୋଡ଼ଏ ଟଙ୍କା ଦରମା ହେଲେ ... ବୁଢ଼ୀ

ମନକୁ କଥାଟା ପାଉ଼ନ । କହୁଲା, 'ଯେତେ ହେଲେ ସଭ୍ୟର ବୋହୂଟା ପରା ।

ରଘୁ ହସିଲା, କହିଲା – ତମ ଇଚ୍ଛା !

ବାଟ ମୁହଁରେ କାନ୍ଥକୁ ଆଉଜ କେତେବେଳୁ ପାର ଠିଆ ହେଇଚ । ବୁଢ଼ୀକୁ କଥାଟା କହିଦେଇ ତା ମନରେ ବ ସୁଖ ନାହିଁ । ଆଜ ସିନା ଅଡ଼େଲା ପଡ଼ୁଛୁ ବୋଲ ! ନଇଲେ ଏଇ ଶାଶୁ ତ କେତେ କରଛୁ ତା ପାଇଁ ! ବଡ଼ ପୁଅ ବେଳକୁ ତନଦନ ଦୁଃଖ ପାଇଲା ସେ ! ଘଷା ଆଇଁଷାଠାରୁ ଆରମ୍ଭ କର କେତେ ଦଅଁ ଦେବତା କରଛୁ ବୁଢ଼ୀ । ଜରବାଧକରେ ପଡ଼ଗଲେ ବୁଢ଼ୀ ଆଖି କଣା କରବ ନ । ସାନ ପୁଅଟାକୁ ଗଲା ସନ ମା ହେଲେ । ଦେହରେ ସୋରଷ ପକାଇବାକୁ ବାହା ରହିଲା ନ । କବରାଜ ବଇଦ ସମସ୍ତେ ଆଶା ଛାଡ଼ଦେଲେ । ବୁଢ଼ୀ ନାତକୁ କୋଡ଼ରେ ପୂରେଇ ନ ଖାଇ ନ ପିଇ ଚ୍ଚର ଦନ ଚ୍ଚର ରାତ ବସି ରହିଲା; ଗୁଣୁ ଗୁଣୁ କର କଣ ସବୁ ଗାଇଲା । ପାଞ୍ଚଦନକୁ ମା' ମହାଲନ ପଡ଼ଲେ ।

ବୁଢ଼ୀକୁ ଖୋଜ ଖୋଜ ପାର ଧାଇ ଆସିଛୁ ଏଠିକ । ସବୁ କଥାବାର୍ତ୍ତା ତ କାନରେ ବାଜଛୁ । ଓଢ଼ଣାଟାକୁ ଆଉ ଟିକଏ ଟାଣି ଦେଇ ପାର, କହିଲା, 'ମୁଁ ଯିବ, ରଘୁ ! ପିଲାଗୁଡ଼ାଙ୍କୁ ଉପାସରେ ମାର ମୁଁ ଆଉ କଣ ବୋହୂ ହୋଇ ବସିଥିବ ?' ତା' କଥାର ପ୍ରତିବାଦ କରିବାକୁ ବୁଢ଼ୀର ଆଉ ସାହସ ନ ଥିଲା ।

ଦ'ଦନ ପରେ ପିଲା ତନଟାଙ୍କୁ ଧର ପାର ଯେତେବେଳେ ବୁଢ଼ୀକୁ ଟେଙ୍ଗି ହୋଇ ଦାଣ୍ଡକୁ ଓହ୍ଲାଇଲା, ଶାଶୁ ବୋହୂଙ୍କ ଲୁହ ଅଧ୍... ବନ୍ଧ ମାନଲାନ । ପିଲାଗୁଡ଼ାଙ୍କୁ କୁଣ୍ଢେଇ ପକେଇ ବୁଢ଼ୀ ଭୋ ଭୋ ହୋଇ ଡାକ ପାରଲା ।

ରଘୁଆ ବଡ଼ମାକୁ ଦଣ୍ଡବତ କରି ଦଶଟି ଟଙ୍କା ବଢ଼ାଇ ଦେଲା । ବୁଢ଼ୀ ଜଳକା ହୋଇ ଅନାଇ ରହିଲା ରଘୁଆ ଆଡ଼କୁ । "ବୁଝିଲ ବଡ଼ ମା"—ରଘୁଆ ସମଝେଇ କହିଲା—"କମିତ ଚଳବ ତମେ ! ନଅ, ରଖିଥା ଏତକ ।" ବୁଢ଼ୀ ଟଙ୍କା ଦଶଟି ଧରିଲା—ଆଖିରେ ଡବ ଡବ ଲୁହ ।

ହଠାତ୍ ସେଦିନ ଦି'ପହରେ ଡାକବାଲା ଆସି ବୁଢ଼ୀକୁ ଡାକ ପକାଇଲା । ତରତରରେ ଦାଣ୍ଡ ଦୁଆରକୁ ଆସି ଦେଖିଲା ତା' ନାଁରେ ଟଙ୍କା ଆସିଛି—୫ଟଙ୍କା ! ଟିପଚିହ୍ନ ଦେଇ ସାରି ରସିଦ ଖଣ୍ଡିକ ଆଉ ଦି'ଅଣା ପଇସା ଡାକବାଲା ହାତରେ ଗୁଞ୍ଜିଦେଇ ବୁଢ଼ୀ କହିଲା—ବାପା ଏ ଖଣ୍ଡିକ ଟିକଏ ପଢ଼ି ଦିଅନ୍ତୁ । ଟିକଏ ଚଢ଼ି ଚଢ଼ି ହୋଇ ଡାକବାଲା ପଢ଼ିଲା—'ବୁଢ଼ୀମାଙ୍କୁ ବନ, ଶୁକ, ଟିମିର ଦଣ୍ଡବତ । ମା ଜାଣିବ—ଆମେ ଏଠି ଭଲରେ ରହିଛୁ । ତମପାଇଁ ବୋଉ ପାଞ୍ଚଟଙ୍କା ପଠାଇଲା । ତମ ଦିହ ମୁଣ୍ଡ କଥା ଲେଖି ଆମ ପାଖକୁ ଚିଠି ଦେବ । ବୋଉର ଓଳଗି ଜାଣିବ । ବୋଉ କହୁଛି—ତମେ କିଛି ଚିନ୍ତା କରିବନି, ଭଲ ବେଳ ପଡ଼ିଲେ ଆମେ ପୁଣି ଗାଁକୁ ଲେଉଟି ଯିବୁଁ ।'

ବୁଢ଼ୀର ଲୁହରେ ଓଦା ହୋଇଯାଇଥିଲା ଟଙ୍କିକିଆ ନୋଟଗୁଡ଼ାକ !



# ଝଡ଼

## ଭଗବତୀ ଚରଣ ପାଣିଗ୍ରାହୀ

ଗଙ୍ଗାର ତୀରଭୂମିରେ କ୍ଷୁଦ୍ର ଧୀବରର ପଲ୍ଲୀଟି । କୃଷକ-ପଲ୍ଲୀମାନଙ୍କରେ ଯେପରି ଗୋରୁ ମେଷ ଆଦି ଗୃହଦ୍ୱାରରେ ବନ୍ଧା ହୋଇଥାନ୍ତି, ଏମାନଙ୍କର ଗୃହ ନିକଟରେ ସେହିପରି ଗୋଟିଏ ଗୋଟିଏ କ୍ଷୁଦ୍ର ନୌକା ଖୁଣ୍ଟରେ ବନ୍ଧାହୋଇ ଗଙ୍ଗାତୀରରେ ଭାସୁଥାଏ । ଏହିସବୁ ନୌକା ଯୋଗେ ସେମାନେ ନିଜ ନିଜର ଅନ୍ନସଂସ୍ଥାନ କରନ୍ତି ।

ସେ ଗୋଟିଏ ଯୁବକ ଧୀବର । କୁଟୀରଟି ତାର ଏହାରି ମଧ୍ୟରେ ଆତ୍ମଗୋପନ କରିଥାଏ । ଆଉ ସେହି ଅର୍ଦ୍ଧଭଗ୍ନ କୁଟୀର ମଧ୍ୟରେ ଆତ୍ମଗୋପନ କରିଥାଏ ଗୋଟିଏ ସୁନ୍ଦରୀ ଲଳନା—ଧୀବରର ସ୍ତ୍ରୀ ।

ଧୀବରଟି କେଣି ସମସ୍ତ ଗୃହରେ ରହିପାରେ ନାହିଁ । ଜୀବିକା ଅର୍ଜନ ପାଇଁ ତାକୁ ବହୁସମୟ ଗଙ୍ଗାବକ୍ଷରେ କଟାଇବାକୁ ହୁଏ । ଯଦି କେବେ ଦିନେ ଓଳିଏ ଘରେ ବସିଯାଏ, ତେବେ ତାର କର୍ମତତ୍ପର ମନ ବ୍ୟାକୁଳ ହୋଇଉଠେ—ଅନ୍ନ ସଂସ୍ଥାନର ସନ୍ଧାନ ପାଇଁ । ସେ କ୍ଷୁଦ୍ର ନୌକାଟି ଗଙ୍ଗାର ସୁଗଭୀର ଜଳରାଶି ଉପରେ ଭସାଇଦେଇ ବାହାରି ପଡ଼େ । ଗଙ୍ଗା ଉପରେ ସେ ଯେତେ ସମୟ ଥାଏ, ମନ ତାର ଥାଏ ଘରକୁ ଫେରିବା ଆଶାରେ ।

ମାତ୍ର ଧରିବାରେ ସେ ସମ୍ପୂର୍ଣ୍ଣରୂପେ ମନୋନିବେଶ କରିପାରେ ନାହିଁ ।

ଗୃହରେ ତାର ତରୁଣୀ ପତ୍ନୀ ସନ୍ଧ୍ୟାରେ କ୍ଷୀଣ ଦୀପଟି ଜାଳିଦେଇ ସ୍ୱାମୀର ଆଗମନକୁ ଅପେକ୍ଷା କରି ରହେ । ଗଙ୍ଗାନଦୀର ବକ୍ଷ ଉପରେ ଖଣ୍ଡି ଖଣ୍ଡି ଆଲୋକ ସହିତ ତାର ସେହି ପ୍ରଦୀପ ରେଖାଟି ପ୍ରତିଫଳିତ ହୁଏ । ପ୍ରଦୀପଟି ଉଜ୍ଜ୍ୱଳ ହୋଇ ଜଳି ଉଠିଲେ, ସେ ବଡ଼ ସନ୍ତୋଷ ଲାଭ କରେ—ସ୍ୱାମୀ ତାର ନୌକା ଉପରୁ ଦେଖିପାରୁଥିବ ଅବା । ଯେଉଁଦିନ ସ୍ୱାମୀର ଫେରିବା ବିଳମ୍ବ ହୁଏ, ସେଦିନ ସେ ପ୍ରଦୀପକୁ ଉଜ୍ଜ୍ୱଳକରି ଜାଳେ—ସ୍ୱାମୀ ଦେଖିଲେ ଚଞ୍ଚଳ ଫେରିଆସିବ ଭାବି ।

ସେଦିନ ଭାଦ୍ରବର ପୂର୍ଣ୍ଣିମା । ଧୀବର ବାହାରିଲା ମତ୍ସ୍ୟ ଶିକାରରେ । ତାକୁ ବାହାରିବାର ଦେଖି ସ୍ତ୍ରୀ ମହାବ୍ୟସ୍ତ । ଏତେ ସୁନ୍ଦର ରାତିଟା ସେ କିପରି ଏକା ଏକା କଟାଇବ ? କିନ୍ତୁ ଧୀବର ଆଜି ଯିବ ନିଶ୍ଚୟ । ଦିନତମାମ ସେ ଘରେ ବସିଥିଲା । ଅନ୍ୟ ଧୀବରମାନେ ସେଦିନ ବହୁତ ରୋଜଗାର କରିଛନ୍ତି । ତଥାପି ସ୍ତ୍ରୀକୁ ରାତିଟାରେ ଏକା ଛାଡ଼ି ଯାଉଛି କିପରି ?

ଉଦର ଏବଂ ହୃଦୟରେ ଏପରି ଲଢ଼େଇ ଭିଡ଼େଇ ଦେଖି ଧୀବର କାହାର ପକ୍ଷ ସମର୍ଥନ କରିବ ସ୍ଥିର କରିପାରିଲା ନାହିଁ । ହୃଦୟ ଶଙ୍କିତା ତରୁଣୀ ପରି କହିଲା, "ମୋ କଥା ଶୁଣିବନି ଆଜି ? ଉଗ୍ରଚଣ୍ଡ ଉଦର ଧୀବରକୁ ଜବରଦସ୍ତି ଟାଣି ନେବାକୁ ଚେଷ୍ଟା କଲା । ଜଣକର ଛଳ ଛଳ କରୁଣ ଗୁହାରୀର ଏବଂ ଅନ୍ୟର ବାହୁବଳର ଆକର୍ଷଣ । ଧୀବର "ନ ଯଯୌ ନ ତସ୍ଥୌ" ହୋଇ ରହିଲା ।

ସ୍ୱାମୀର ବ୍ୟସ୍ତତା ଦେଖି ସ୍ତ୍ରୀ କହିଲା, "ମୁଁ ବି ପିହ ମାଛ ଧରିବାକୁ ତୁମ ସାଙ୍ଗେ ।"

ବାଃ, ଏତେବଡ଼ ଜଟିଳ ସମସ୍ୟାର କି ସହଜ ସମାଧାନ ! ଧୀବର ଆନନ୍ଦରେ ନାଚିଉଠିଲା । ଜୀବିକା ଉପାର୍ଜନ ସାଙ୍ଗେ ସାଙ୍ଗେ ସ୍ତ୍ରୀର ସାନ୍ନିଧ୍ୟ ଲାଭ । ନୌକାରେ ଫାଲ ଆଦି ବାନ୍ଧି, ଜାଲ ନେଇ ସେ ସ୍ତ୍ରୀ ସହିତ ବାହାରିପଡ଼ିଲା । ନାଆ ଧରିଲା ମଙ୍ଗ, ପୁରୁଷ ଚଳାଇଲା ଆହୁଲା । ଦୁହେଁ ପରସ୍ପରର ସମ୍ମୁଖରେ ନୌକାର ଦୁଇ ପ୍ରାନ୍ତରେ ବସି ରହିଲେ ।

ନୌକା ଅଗ୍ରସର ହେବାକୁ ଲାଗିଲା । ପୂର୍ଣ୍ଣିମା ଚନ୍ଦ୍ର ପୂର୍ବ ଆକାଶରେ ଘଣି ଘଣି ଶୁଭ୍ର ମେଘ ଭେଦ କରି ନୌକାର ଅନୁଗମନ କଲା । ଚନ୍ଦ୍ର ମେଘର ଅନ୍ତରାଳରୁ ବାହାରିପଡ଼େ ତରୁଣୀର ମୁଖମଣ୍ଡଳର ସମସ୍ତ ଶୋଭା ଢାଳିଦିଏ । ସ୍ୱାମୀ ସମ୍ମୁଖରେ ବସି ମୁଗ୍ଧ ହୋଇଉଠେ । ସ୍ତ୍ରୀର ଗଣ୍ଡ କର୍ଣ୍ଣ ଲଜ୍ଜାରେ ଲାଲ ପଡ଼ିଯାଏ । ଚନ୍ଦ୍ର ମେଘ ଭିତରେ ସଙ୍ଗେ ସଙ୍ଗେ ଲୁଚିଯାଏ, ତରୁଣୀ ନିଃଶ୍ୱାସ ମାରି ଆଶ୍ୱସ୍ତ ହୁଏ । ଚନ୍ଦ୍ର ପୁଣି ମେଘର ଆବରଣରୁ ବାହାରିପଡ଼େ; ଆଉ ସହଜରେ ଲୁଚେ ନାହିଁ । ତରୁଣୀ ବ୍ୟସ୍ତ ବିରକ୍ତ ହୋଇ ଆସ୍ତେ ଆସ୍ତେ ଅବଗୁଣ୍ଠନ ଟାଣିଦିଏ । ନହେଲେ ଅନ୍ୟ ଦିଗକୁ ମୁଖ ଫେରାଇ ବସେ । ଧୀବର ସମ୍ମୁଖରେ ବସି ମନେ ମନେ ହସେ ।

ମଝି ଗଙ୍ଗାରେ ନୌକାଟି ପାଣିକାଟି ଚାଲିଥାଏ । ଆହୁଲାର କେବଳ ଝପ ଝପ ଶବ୍ଦ ଶୁଣାଯାଉଥାଏ । ମଝିରେ ମଝିରେ ଦୂର ତଳରୁ ପହରିକିଆ ଡାକଉଠେ ! ଚଷାପୁଅର ଗୀତ ମଧ୍ୟ ତାହାର ଅନ୍ତରାଳରେ ଶୁଣାଯାଏ । ଏହାର ଭିତରେ ନୌକାଟି ଚାଲିଥାଏ ଝପ୍ ଝପ୍ ଶବ୍ଦ କରି ।

ଧୀବର ସ୍ତ୍ରୀକୁ ଡାକଲା ମଙ୍ଗ ଛାଡ଼ିଦେଇ ତା ପାଖରେ ଆସି ବସିବାକୁ । "ଏଇଠି ତ ବସିଛୁ," କହି ସ୍ତ୍ରୀ ସେଇପରି ବସି ରହିଲା । ନାବିକଟି କେତେ ଅନୁନୟ କଲା, କେତେ ପ୍ରକାରେ ବୁଝେଇଲା, କାହିଁରେ ହେଲାନି । ଶେଷରେ ଭୂତ, ପ୍ରେତ, ଜଳଜନ୍ତୁଙ୍କର ଭୟ ଦେଖାଇଲା । ପାଷାଣୀ ସେଇଭଳି ବସି ରହିଲା ।

ଅଭିମାନର କୌଣସି କାରଣ ବୁଝି ନ ପାରି ଧୀବର ଶେଷରେ ଆହୁଲା ଛାଡ଼ି ସ୍ତ୍ରୀ ନିକଟକୁ ଉଠିଆସିଲା । ମଙ୍ଗକୁ ସିଧା ରଖି ବାନ୍ଧିଦେଲା ଯେପରି ଆଉ କୁଆଡ଼େ ବାଙ୍କେଇ ନଯାଏ । ଶେଷରେ ସ୍ତ୍ରୀକୁ ନିଜପାଖକୁ ନେବାକୁ ଚେଷ୍ଟା କଲା; ସ୍ତ୍ରୀ ମଧ୍ୟ ନ ଯିବାଲାଗି ଦୃଢ଼ପ୍ରତିଜ୍ଞ ।

କୌଣସି ଉପାୟ ନ ଦେଖି ଧୀବର ସ୍ତ୍ରୀ ନିକଟରେ ବସିଲା । ଏଥର ଗୋଟାଏ ମୀମାଂସା ନ କଲେ ଆହୁଲାମରା ହେବନି କି ଜାଲଟଣା ହେବନି । ସ୍ୱାମୀକୁ ନିକଟରେ ବସିବାର ଦେଖି ସେ ଅନ୍ୟଦିଗକୁ ମୁଖ ଫେରାଇଲା । ତାର ମନୋଭାବ ବୁଝିବା ଲାଗି ଧୀବର ଯେତେ ପ୍ରଶ୍ନ ପଚାରିଲା, କୌଣସି ଉତ୍ତର ପାଇଲା ନାହିଁ । ଆଜି ସେ କେତେ ସୁଖ କଳ୍ପନା କରି ଆସିଥିଲା । ସବୁ ନିରର୍ଥକ । ମନ ତାର ପିତା ହୋଇଗଲା ।

ଆକାଶର ଗୋଟିଏ କୋଣରୁ ମେଘଖଣ୍ଡେ ଉଠାଇ ଯେ ଶେଷରେ ସମସ୍ତ ଆକାଶ ବ୍ୟାପିବାକୁ ବସିଲାଣି ସେ ଆଡ଼କୁ କାହାରି ଲକ୍ଷ୍ୟ ନାହିଁ । ହଠାତ୍ ବିଦ୍ୟୁତର ଆଲୋକ ଝଲସି ଉଠିବା ସଙ୍ଗେ ଘଡ଼ ଘଡ଼ ଶବ୍ଦ—ବୃଷ୍ଟି ଦେବତାର କମାଣ ଫୁଟିଲା । ଭୟତ୍ରସ୍ତା ରମଣୀ ସ୍ୱାମୀର ବକ୍ଷସ୍ଥଳରେ ମିଶିଯିବାର ଚେଷ୍ଟାକଲା । ଧୀବର ପ୍ରଥମେ ଚମକି ପଡ଼ିଥିଲା । କିନ୍ତୁ ପରେ ସେ ସ୍ତ୍ରୀକୁ ନିଜର କୋଳରେ ଏପରି ଭାବରେ ଦେଖି ବଜ୍ରକୁ ଦେଲା ଅଶେଷ

ଧନ୍ୟବାଦ । ବକ୍ର ଉଜ୍ଜୟିନୀର ପ୍ରଣୟୀମାନଙ୍କ ଅପେକ୍ଷା ଧୀବରକୁ ଅଳ୍ପ ସନ୍ତୋଷ ଦେଇ ନାହିଁ ।

ପବନର ଗତି କ୍ରମେ ବଢ଼ିଲା । ନୌକାର ପାଲ ଉପରରେ ଯଥେଷ୍ଟ ପବନ ଭରି ନୌକାଟିକୁ ପ୍ରବଳବେଗରେ ଘୁଞ୍ଚାଇ ନେଲା । ଧୀବର ଦେଖିଲା ଚାରିଆଡ଼େ ଅନ୍ଧକାର ହୋଇ ଆସିଲାଣି । ଚନ୍ଦ୍ର ମେଘ ଭିତରେ ଆତ୍ମଗୋପନ କରିସାରିଛି । ପବନ ବେଗରେ ଗଙ୍ଗାର ଢେଉ ଉଚ୍ଚାଣି ଉଠୁଛି ।

ସେ ପାଲଟାକୁ ନୁଆଇଁ ଆଣିଲା । ସଙ୍ଗେ ସଙ୍ଗେ ନୌକାର ଗତି ଶିଥିଳ ହୋଇଗଲା ସତ; କିନ୍ତୁ ପବନର ବେଗ ବଢ଼ିବା ସଙ୍ଗେ ସଙ୍ଗେ ଗଙ୍ଗା ଊର୍ଦ୍ଧ୍ୱଦେଶକୁ ବଡ଼ ବଡ଼ ଢେଉ ଟେକିଲା । ନୌକାଟି ତା ମଧ୍ୟରେ ନାଚିବାକୁ ଲାଗିଲା । ଧୀବର ନୌକାର ମଙ୍ଗକୁ ଖୋଲି କୂଳଆଡ଼କୁ ଫେରାଇ ପୁଣି ଶକ୍ତକରି ବାନ୍ଧିଲା । କାରଣ ସ୍ତ୍ରୀ ତାର ଏକାକୀ ମଙ୍ଗଧରି ବସିବାକୁ ଭୟାକୁଳ । ସେ ଏସବୁ କାମସାରି ଆସି ଆହୁଲା ମାରିବାକୁ ଲାଗିଲା । ସ୍ତ୍ରୀ ତାର ନିକଟରେ ଜଡ଼ୀଭୂତ ହୋଇ ବସିଥାଏ । ନଦୀର ସ୍ରୋତ ଓ ପବନର ବେଗ ମଧ୍ୟରେ ତାର ଆହୁଲା ମାରିବାର କୌଣସି ଫଳ ହେଲାନାହିଁ । ସେମାନେ ନିଜ ଇଚ୍ଛାରେ ନୌକାଟିକୁ ଚଳାଇ ଘୁଞ୍ଚିଲେ । ଧୀବର ଆହୁଲା ଛାଡ଼ି ଚୂପ୍‌କରି ବସିରହିଲା କେବଳ !

ନୌକାଟିର ଦୁଇପାଖରେ ଲହରୀ ବାଡ଼େଇ ହେବାକୁ ଲାଗିଲା । ପାଣି ଛିଟ୍‌କି ଆସ୍ତେ ଆସ୍ତେ ତାହା ଭିତରକୁ ପଶିବାକୁ ଆରମ୍ଭ କଲା । ଧୀବର ପ୍ରମାଦ ଗଣିଲା । ଘଟଘଟ ଅନ୍ଧକାର ! ନୌକାର ଚତୁଃପାର୍ଶ୍ୱରେ କେବଳ କ୍ଷୁବ୍ଧିତ ଜଳରାଶିର କେଳିହାନ କନ୍ଦା !

କିଛି ସମୟ ପରେ ଧୀବର ଦେଖିଲା ଜଳସ୍ରୋତର ବେଗ ସହସ୍ର ଗୁଣରେ ବୃଦ୍ଧି ପାଉଛି । ମୁହୂର୍ତ୍ତକରେ ସେ ବୁଝି ପାରିଲା, ନୌକାଟି ତାର ଗଣ୍ଡକୀ ମୁହାଣ ମୁଖରେ ପଡ଼ୁଛି । କ୍ଷୁଦ୍ଧ ଲହରୀମାଳା ମଧ୍ୟରେ ନୌକାର ଏପରି ପ୍ରଖର ଗତି ଦେଖି ଭୟବ୍ୟାକୁଳ ଧୀବର-ପତ୍ନୀ ସ୍ୱାମୀର ଅଙ୍ଗକୁ ଲାଗି ଲାଗି ବସିଲା । ସ୍ୱାମୀ କେବଳ ପୃଷ୍ଠରେ ହାତ ମାରି ସାନ୍ତ୍ୱନା ଦେବାକୁ ଲାଗିଲା ।

ସାଇଁ ସାଇଁ କରି ଝଡ଼ ମାଡ଼ି ଆସିଲା । ବିଦ୍ୟୁତ୍‌ରେଖା ସହ ଯେତେବେଳେ ବାରମ୍ବାର ବଜ୍ରର ଭୀଷଣ ଗର୍ଜ୍ଜନ ଶୁଣାଗଲା, ତରୁଣୀ ସ୍ୱାମୀର ଅଙ୍ଗକୁ ଦୁଇ ବାହୁରେ ନିବିଡ଼ ଭାବରେ ବାନ୍ଧି ପକାଇଲା । ଆଉ ନିଜର ସ୍ପନ୍ଦିତ ବକ୍ଷସ୍ଥଳକୁ ସ୍ୱାମୀର ଅଙ୍ଗରେ ଚାପିଦେଇ ହୃତ୍‌ପିଣ୍ଡର ଦାରୁଣ ନର୍ତ୍ତନ ଦମନ କରିବା ଲାଗି ଚେଷ୍ଟା କଲା ।

ଝଲକାଏ ପାଣି ନୌକା ମଧ୍ୟରେ ପ୍ରବେଶ କଲା । ନୌକାଟି ଟଳମଳ ହୋଇଗଲା । ଧୀବର ସ୍ତ୍ରୀର ନିବିଡ଼ ଆଶ୍ଲେଷରେ ସବୁ ଭୁଲିଯାଇ ବସି ରହିଥିଲା । ନୌକାର ଏ ଅବସ୍ଥାରେ ତାର ଚେତନା ଆସିଲା । ସେ ସଙ୍ଗେ ସଙ୍ଗେ ସ୍ତ୍ରୀକୁ ଜଳ ମଧ୍ୟକୁ ପ୍ରବେଶ କରିବା ଲାଗି ଆଦେଶ କଲା । ନ ହେଲେ ଦୁହେଁ ନୌକା ସହିତ ଜଳସାତ୍ ହୋଇଯିବେ । ସ୍ତ୍ରୀ ଯନ୍ତ୍ରଚାଳିତା ପରି ଲମ୍ଫ ଦେବାକୁ ପ୍ରସ୍ତୁତ ହେଲା; କିନ୍ତୁ ଜଳର ଭୀଷଣ ଆକାର ଦେଖି ସଙ୍କୁଚିତା ହୋଇ ଉଠିଲା । ଧୀବରର ବିଳମ୍ବ ସହ୍ୟ ହେବ କିପରି ? ନୌକା ଏକାବେଳେକେ ବୁଡ଼ିବା ଉପରେ । ସାମାନ୍ୟ ବିଳମ୍ବରେ ଦୁହେଁ ନୌକା ସହ ଆବର୍ତ୍ତରେ ପଡ଼ିଯିବେ, ଆଉ ରକ୍ଷା ନାହିଁ । ସେ ସ୍ତ୍ରୀର ପଶ୍ଚାଦ୍‌ରୁ ଧକ୍‌କା ଦେଇ ନିଜେ ସଙ୍ଗେ ସଙ୍ଗେ ଲମ୍ଫ ପ୍ରଦାନ କଲା । ଅର୍ଦ୍ଧମଗ୍ନା ବାଳିକାକୁ ଧରି ଧୀବର କହିଲା,

"ଭୟ କଣ ? ମୁଁ ପହଁର ପହଁର ଏଇଲାଗେ କୂଳରେ ପହଞ୍ଚାଇ ଦେବ ।" ଶୁଣୁ ଧୀବର ପତ୍ନୀ ସ୍ୱାମୀର ଅଙ୍ଗକୁ ଦୁଇ ବାହୁରେ କୁଣ୍ଢେଇ ଧରିଲା । ଲହରୀ ପରେ ଲହରୀ ଆସି ଧୀବରର ମୁଖରେ ଭେଟିଲା । ପୃଷ୍ଠ ଦେଶରେ ତାର ସ୍ତ୍ରୀ ହତଜ୍ଞାନ ପ୍ରାପ୍ତ ଲାଗି ରହିଲା । ଏହାର ମଧ୍ୟରେ ଧୀବରଟି ଦୁରନ୍ତ ଉଦ୍ୟମ କରିବାକୁ ଲାଗିଲା । ସ୍ତ୍ରୀ କନ୍ତୁ କଛୁ ଜାଣି ପାରିଲା ନାହିଁ ।

କଛୁ ସମୟ ପରେ ସ୍ୱାମୀର କଠିଣ ମାଂସପେଶୀ ସବୁ ତାର ବାହୁ ବନ୍ଧନ ମଧ୍ୟରେ ଫୁଲି ଉଠୁଥିବାର ବାଳକା ଅନୁଭବ କଲା । ପର ମୁହୂର୍ତ୍ତରେ ଜଳ ମଧ୍ୟରୁ ଅର୍ଦ୍ଧ-ସ୍ପଷ୍ଟ ସ୍ୱରରେ ସ୍ୱାମୀ ତାର ଗର୍ଜି ଉଠିଲା, "ଛାଡ଼, ତୋ ସାଙ୍ଗେ ମତେ ବ ମାରିବୁ ?" ଭୟ ଚକିତା ବାଳକା ତତ୍‌କ୍ଷଣାତ୍ ନଜର ବାହୁ ବନ୍ଧନରୁ ସ୍ୱାମୀକୁ ମୁକ୍ତ ଦେଲା ।

ଧୀବର ହସି ଉଠିଲା—ଯେପରି ଶୁଖିଲା ସୋଲ ! କ ଉଶ୍ୱାସ ! ସେ ଆଖି ଖୋଲି ଦେଖିଲା । ସବୁଆଡ଼େ କେବଳ ପାଗଳ ତରଙ୍ଗ ଜଳରାଶିର ନୃତ୍ୟ । ହଠାତ୍ ତାର ମନେ ପଡ଼ିଲା, ସ୍ତ୍ରୀ ତାର ପୃଷ୍ଠରେ ଥିଲା । କୁଆଡ଼େ ଗଲା ? ବାରିରାଶି ଉପରେ ସେ ନଜର କାତର ଦୃଷ୍ଟି ପକାଇଲା । କେବଳ ଲହରୀ ଓ ପବନର ତାଣ୍ଡବ-ନୃତ୍ୟ ! ସେ ଚିତ୍କାର କରି ଉଠିଲା, "ତାରା, ତାରା ।" ପବନ କେବଳ ହୁ ହୁ କରି ତାର କର୍ଣ୍ଣପାର୍ଶ୍ୱରେ କହିଗଲା । ସେ ଏ ପ୍ରଳୟର ବିଭୀଷିକା ମଧ୍ୟରେ ଏପାଖ ସେପାଖ ଖୋଜିବାକୁ ଲାଗିଲା । ସବୁ ଦିଗରୁ ତରଙ୍ଗରାଜ ତାର ସମ୍ମୁଖରେ ଠିଆ ହୋଇ କହିଲେ, "ଖବର୍ଦ୍ଦାର ।"

ତାରାକୁ ଛାଡ଼ ଦେବା ପାଇଁ ସେ ଜଳ ଭିତରୁ ଡାକ ଉଠିଥିଲା । ସେଇ ପତିତ କଥାରେ ଅଭିମାନିନୀ ସେହି କୋମଳ

ବାହୁ-ବନ୍ଧନ ଶିଥିଳ କରି କୁଆଡ଼େ ଉଭେଇ ଗଲା । ପ୍ରତି କଥାରେ ତ ସେ କଦ୍‌ଧରି ବସେ । ତାର ଅନୁନୟ ଗର୍ଜନ ତର୍ଜନ ନ ମାନି ସେ ତାକୁ କେତେବାର ବିରକ୍ତ କରିଥିବ । ଆଜ ସେ ଏବେ କଥାରେ ଛୁଡ଼ିଦେଇ ଚାଲିଗଲା ! କିଲେ ମାତ୍ର ଦ୍ୱିଧା ବୋଧ କଲାନାହିଁ ? ଯାହାର ଅଙ୍ଗ ସ୍ପର୍ଶରେ ତାର ପ୍ରତ୍ୟେକ ଲୋମକୂପ ବ୍ୟାକୁଳ ହୋଇଉଠିଥିଲା, ସେ ଅଙ୍ଗଯଷ୍ଟି ପୁଣି ତାକୁ ଦୁର୍ବହ ବୋଧ ହେଲା । ସେ ଜଳ ମଧ୍ୟରେ ଆତ୍ମ ସମର୍ପଣ କରିବାକୁ ବସିଲା; କିନ୍ତୁ ତାକୁ ଆତ୍ମସମର୍ପଣ ଆସିଲା ନାହିଁ । ତାର ଦାନ ଜଳଦେବତା ଅଗ୍ରାହ୍ୟ କଲା । ତାର ଏଇ ଉତ୍କଟ ମାନସିକ ବୈରାଗ୍ୟ ସତ୍ତ୍ୱେ, ବାହୁଦ୍ୱୟ ନିଶ୍ଚେଷ୍ଟ ରହିଲା ନାହିଁ । ତାହା ସ୍ୱତଃ ତତ୍ପର ରହି ମୁମୂର୍ଷୁ ପ୍ରାଣକୁ ତାର ବଞ୍ଚାଇ ରଖିଲା ।

ଶ୍ୱେତ ପାଲ ଟାଣି ଶତଶତ ନୌକା ଗଙ୍ଗା ବକ୍ଷରେ ଭସିଯାଏ—ଯେପରି ଗୋଟିଏ ଗୋଟିଏ ସୁବୃହତ୍ ପ୍ରଜାପତି । କେଉଁଠି କି ଅଭିପ୍ରାୟ ନେଇ ଚାଲିଥାଏ କିଏ କହିବ ? ତା'ଭିତରେ ପ୍ରତିଦିନ ଗୋଟାଏ କ୍ଷୁଦ୍ର ନୌକା ପାଲଟାଏ ଟାଣି ଭସେ । ଉଦାସ ଲକ୍ଷ୍ୟହୀନ ତାର ଗତି । ଜୀବନର ପୀଡ଼ନ ଅନୁଭବରୁ ଯେପରି ତାହା ଅଚଞ୍ଚଳ ହୋଇ ପଡ଼ିଛି, ସବୁଦିନ ସେଥିରୁ ଗୋଟିଏ କରୁଣ ସଙ୍ଗୀତ ଧ୍ୱନି ଭସିଆସେ, ମନେପଡ଼େ—

'ଏକାକୀ ନାଉରୀ ସଙ୍ଗୀତ ଶୋକେ
ନାବ ବାହୁଥାଏ ନେତ୍ରଜଳେ ।'

———